## ପୁରସ୍କାର ଓ ସମ୍ମାନ

ପ୍ରତିଭାସିକ୍ତ ସମ୍ମାନ, ଭୁବନେଶ୍ୱର-ଶିଶୁ ସାହିତ୍ୟ (୨୦୦୨)
ଶ୍ୱେତ ସଂକେତ ସମ୍ମାନ,
ଭୁବନେଶ୍ୱର - ଗଳ୍ପ (୨୦୦୨)
ନିତ୍ୟନୂତନ, ଭୁବନେଶ୍ୱର -
ଅନୁବାଦ(୨୦୦୭)
ସମାରୋହ, ଭୁବନେଶ୍ୱର -
ବ୍ୟଙ୍ଗଗଳ୍ପ (୨୦୦୮)
ନୂଆ ସକାଳ, ଚରମ୍ପା, ଭଦ୍ରକ -
ସାମଗ୍ରିକ ସାହିତ୍ୟ କୃତି ପାଇଁ
(୨୦୧୩)
କବିସୂର୍ଯ୍ୟ ନଗର - ପ୍ରତିଭା
ସମ୍ମାନ - ସାହିତ୍ୟକୃତି ପାଇଁ (୨୦୧୩)
ସାହିତ୍ୟ ଗୌରବ ସମ୍ମାନ - ବ୍ରହ୍ମଗିରି
(୨୦୧୫)
କୁଞ୍ଜେଶ୍ୱରୀ ସମ୍ମାନ - କଣାସ (୨୦୧୫)
ଉପେନ୍ଦ୍ର ଭଞ୍ଜ ସମ୍ମାନ, ଭୁବନେଶ୍ୱର
(୨୦୧୬)-ସାହିତ୍ୟ କୃତି ପାଇଁ
ପ୍ରଜାତନ୍ତ୍ର ବିଷୁବ ପୁରସ୍କାର, କଟକ
ଲଳିତ ନିବନ୍ଧ (୨୦୧୬)
ଗୋବିନ୍ଦପୁର ମହୋତ୍ସବ ସମ୍ମାନ,
ଯାଜପୁର (୨୦୧୬)
**International Poetry Festival, Guntur** (୨୦୧୬)
ଓଡ଼ିଶା ସାହିତ୍ୟ ଏକାଡେମୀ ବରିଷ୍ଠ
ସାହିତ୍ୟିକ ସଂବର୍ଦ୍ଧନା (୨୦୧୬)
କଳିଙ୍ଗ ପୁସ୍ତକମେଳା
ସମ୍ମାନ - ୨୦୧୬
ଓଡ଼ିଆ ପର୍ବ ସମ୍ମାନ-୨୦୧୮
ସାହିତ୍ୟର ସ୍ୱର (ସମନ୍ୱୟ) ନିଷ୍କିନ୍ତ କୋଇଲି-୨୦୧୯
ସାଂଗଠନିକ ସଂପୃକ୍ତି
ଶ୍ୱେତ ସଂକେତ
ଶତଦ୍ରୁ, ନୂଆଯୁଗର ନୂଆ ସକାଳ
ଆଜୀବନ ସଦସ୍ୟ - କେଦାରନାଥ ଗବେଷଣା
ପ୍ରତିଷ୍ଠାନ, ଭୁବନେଶ୍ୱର-୨

# ଭିନ୍ନ ଦୃଷ୍ଟି

(ପ୍ରଥମ ଭାଗ)

ଲେଖକ :
**ଶଙ୍କର୍ଷଣ ପଣ୍ଡା**

ପ୍ରକାଶକ :
**ସମର୍ଥା ପବ୍ଲିକେଶନ୍**
୨୦, ଲୁଇସ୍ ରୋଡ୍,
ରବି ଟକିଜ୍ ସ୍କୋୟାର
ଭୁବନେଶ୍ୱର - ୧୪
ମୋ : ୯୪୩୭୩୮୯୦୭୦

ପ୍ରଚ୍ଛଦ :
ଦିବ୍ୟ ମୁଦ୍ରଣୀ

ପ୍ରଥମ ସଂସ୍କରଣ :
୨୦୧୯

ପେଜ୍ ଲେଆଉଟ୍
**ପ୍ରଶାନ୍ତ କୁମାର ସେନାପତି**
ଭୁବନେଶ୍ୱର
ଫୋନ : ୮୭୬୩୨୧୬୬୪୯

ମୂଲ୍ୟ : ଟ ୧୬୦/- ଙ୍କା

**BHINNA DRUSTI**
(Part - I)

Author :
**Sankarsana Panda**

Publisher :
**Samartha Publication**
20, Lewis Road,
Ravi Talkies Square
Bhubaneswar - 14
Mobile : 9437389070
E-mail :
chirasamartha@gmail.com

Cover Design :
**Dibya Mudrani**
Samantarapur, BBSR - 2

1st Edition :
2019

Page Layout
P K Senapati
BBSR, Ph. : 8763216649

Price : Rs. 160/-

# ଉତ୍ସର୍ଗ

ପ୍ରିୟ ପାଠକମାନଙ୍କୁ, ଯେଉଁମାନେ ପୁସ୍ତକଟି ପଢି ଆମ ସମାଜ, ଆମ ଦେଶ ଓ ଦେଶବାସୀଙ୍କ ସମ୍ବନ୍ଧରେ ଆହୁରି ସଚେତନ ହେବେ ।

- ଲେଖକ

# ମୁଖବନ୍ଧ

'ଭିନ୍ନଦୃଷ୍ଟି'ର ପାଣ୍ଡୁଲିପିକୁ ନିଷ୍ପକ୍ଷ ଦୃଷ୍ଟିରେପାଠ କଲା ପରେ ବନ୍ଧୁ ଶଙ୍କର୍ଷଣ ପଣ୍ଡାଙ୍କ ଲିଳିତ ନିବନ୍ଧ ସଂକଳନଟି ଉପରେ ମିଶ୍ରିତ କ୍ରିୟା ପ୍ରତିକ୍ରିୟା ସୃଷ୍ଟି ହେଲା ମନ ଗହ୍ୱରରେ । କିଛି ଆତ୍ମଚେତନା ମଧ୍ୟ ସୃଷ୍ଟି ହେଲା ନିଜେ ସମାଲୋଚକ / ପ୍ରାବନ୍ଧିକ ହୋଇଥିବାରୁ । ବର୍ଷ ବର୍ଷ ଧରି ଆମ୍ଭେ ଦୁହେଁ ସ୍ତମ୍ଭମାନଙ୍କରେ ଉପଲବ୍ଧ ଅଛୁ । ସ୍ତମ୍ଭ ପ୍ରକାଶିତ ଲେଖାର ସଂକଳନ ସବୁ ଏତେ ବେଶୀ ଉତ୍କଣ୍ଠା ସୃଷ୍ଟି କରେ ନାହିଁ ପାଠକ ମହଲରେ, ଯଦି ସେଥିରେ ଗଭୀର ଗବେଷଣାତ୍ମକ କିଛି ନଥାଏ । ଏହାର ଆମର ବ୍ୟକ୍ତିଗତ ଅନୁଭୂତି; ଅଥଚ ତାହା ବନ୍ଧୁଙ୍କ ସୃଷ୍ଟି ସମୂହ ଉପରେ ଥାପି ଦେବାର ଇଚ୍ଛା ନାହିଁ ।

ବିଭିନ୍ନ ପତ୍ରପତ୍ରିକାରେ ଭିନ୍ନ ଭିନ୍ନ ସମୟରେ ପ୍ରକାଶିତ ଏହି ସଂକ୍ଷିପ୍ତ ନିବନ୍ଧଗୁଡ଼ିକ ବିଷୟବସ୍ତୁ ଦୃଷ୍ଟିରୁ କେହି କାହା ସହିତ ସଂପୃକ୍ତ ନୁହନ୍ତି । ଭାବ ବା ପ୍ରକାଶକାଳ ଦୃଷ୍ଟିରୁ ପାରସ୍ପରିକ ନିକଟତ୍ୱ ନାହିଁ । ଅବଶ୍ୟ ସଂକଳକ ସ୍ତମ୍ଭକାର ପ୍ରକାଶ କ୍ଷେତ୍ର ସୂଚିତ କରିଥିବା ସତ୍ତ୍ୱେ ସର୍ବତ୍ର ସମୟ ଉଲ୍ଲେଖ କରିନାହାନ୍ତି । ତେବେ ବିଷୟବସ୍ତୁ ଗୁଡ଼ିକ ଜଣାଶୁଣା ହୋଇଥିବାରୁ ସମୟକାଳ ଆକଳନ କରିବା କଷ୍ଟକର ନୁହେଁ । ଏଥିରେ ପାଣ୍ଡିତ୍ୟ ନାହିଁ, ରହିବା ଜରୁରୀ ମଧ୍ୟ ନୁହେଁ । କାରଣ ତାତ୍କାଳିକ ଭାବରେ ସଂପୃକ୍ତ ବିଷୟରେ ସାଧାରଣ ଜନତାଙ୍କ ମନକଥା ଆତ୍ମନେପଦୀରେ ନିବେଦନ କରାଯାଇଛି ।

ତାତ୍କାଳିକ ବିଷୟବସ୍ତୁକୁ ତାତ୍କାଳିକ ପରିପ୍ରେକ୍ଷୀରେ ତୁଳି ଲଳିତ ନିବନ୍ଧ ଲେଖାଯାଏ । ସେ କର୍ତ୍ତବ୍ୟ ଲେଖକ ଯଥାବିଧି ସମାପନ କରିଛନ୍ତି । ଏଣୁ ସେଥିରେ ଥିବା ଅନେକ ନିବନ୍ଧ ପୂର୍ବରୁ ପଢ଼ି ସାରିଥିଲେ ପାଠକ ଦ୍ୱିତୀୟ ପଠନ ପାଇଁ ଆଗ୍ରହୀ ହୋଇ ନପାରେ । ଅନେକ ନିବନ୍ଧର ଶିରୋନାମା ଭବିଷ୍ୟତରେ କୌଣସି ନିବନ୍ଧର ଶିରୋନାମା ହୋଇ ପାରିବନାହିଁ । ଯଥା :ବୀରାସ୍ପାନ ତାମସା, ଚାପେଲ୍‌ଙ୍କୁ ଚାପୁଡ଼ା, ପୁନଶ୍ଚ ହୃଷିକେଶ, ଜାଠ ରାଜନୀତିରେ ଧୂର୍ତ୍ତ କୋକି, ଆନ୍ନା କ'ଣ ସଂସଦ ଉପରେ ଏବଂ ଆଶାର ଆଲୋକ – ଆପ ଇତ୍ୟାଦି ଅନ୍ୟ ଶିରୋନାମାମାନଙ୍କୁ ନେଇ ଭବିଷ୍ୟତରେ

ଅନେକ ନିବନ୍ଧ ଆସିପାରେ ଏବଂ ଭିନ୍ନ ପ୍ରସଙ୍ଗରେ ମଧ୍ୟ ଆସିପାରେ । ବସ୍ତୁତଃ ଗତୁ ଉପଯୋଗୀ ନିବନ୍ଧ ସବୁ ଖବରକାଗଜକୁ ଆସି ଗଲାଣି । ଯଥା - କଂଗ୍ରେସର ରାଜନୀତି, ନୀତି ରାଜନୀତି, କ୍ଷମତା ଖେଳ ଓ ଭାରତବର୍ଷ, ରଣଛାଡ଼ ଭେଳିକି, ତୃତୀୟ ସାମ୍ମୁଖ୍ୟ -ଏକ ଉଭଟ ପରିକଳ୍ପନା ଓ ପ୍ରଧାନ ଓ ପ୍ରଧାନମନ୍ତ୍ରୀ ଇତ୍ୟାଦି । ତେବେ ନୂତନ ସମ-ନାମକରଣ ଯୁକ୍ତ ନିବନ୍ଧ ଗୁଡ଼ିକ ଶ୍ରୀଯୁକ୍ତ ପଣ୍ଡାଙ୍କ ଅତୀତ ପ୍ରତିବେଦନ ଠାରୁ ପୃଥକ, ଦୃଷ୍ଟିକୋଣର ଅମେଳ ଯୋଗେ, ଅନ୍ୟଗୁଡ଼ିକ ମୋଟାମୋଟି ବାରମ୍ବାର ସମ୍ବାଦପତ୍ର ପୃଷ୍ଠାକୁ ଆସିପାରେ ପଣ୍ଡାଙ୍କ ସହ ମେଳ ନଥାଇ ।

କୌଣସି ପ୍ରକାର ବା ବିଷୟରେ ଆବଦ୍ଧ ନରହି ଦ୍ୱରିତ ନିବେଦିତ କ୍ଷୁଦ୍ର ନିବନ୍ଧ ଗୁଡ଼ିକ ଏକ ପୁସ୍ତକାକାରରେ ପ୍ରକାଶନ ଲେଖକ ଦୃଷ୍ଟିକୋଣରୁ ସୁଖକର ନୁହନ୍ତି । ଏହା ମୋର ନିଜ ଅଭିଜ୍ଞତା । ପାଠକ ଭେଦରେ ଏହାର ସୁଖପାଠ୍ୟ ହୋଇପାରେ ଯଦି ନୂତନ ପାଠକଙ୍କ ନିକଟରେ ପହଞ୍ଚେ । କିନ୍ତୁ ପ୍ରାୟତଃ ଏହା ପଢ଼ିସାରିଥିବା ପାଠକଙ୍କୁ ହିଁ ଭେଟେ । ସମ ପର୍ଯ୍ୟାୟର ବା ଏକ ବିଷୟମୁଖୀ ପ୍ରବନ୍ଧ ସଂକଳନମାନଙ୍କର ଗ୍ରହଣୀୟତା ଅଧିକ । ତାହା ମଧ୍ୟ ଏତେ ସୁଲଭ ବା ସୁଗମ ନୁହେଁ ।

ବର୍ତ୍ତମାନ ଶଙ୍କର୍ଷଣ ବାବୁଙ୍କ ପ୍ରବନ୍ଧ ବିଷୟରେ କହିବା ସ୍ୱାଧୀନ ଭାବେ । ତାଙ୍କ ଲେଖାଗୁଡ଼ିକ ସରଳ ଏବଂ ସୁଖପାଠ୍ୟ । ନିଜ ଦୃଷ୍ଟିକୋଣରେ ସେ ଦୃଢ଼ । କୌଣସିଥିରେ ଅନ୍ୟର ବିଚାରବୋଧ ଅନୁପ୍ରବେଶ କରିନାହିଁ; ତୁଳନା ଭାବେ ମଧ୍ୟ । ତୀବ୍ର ଓ ସ୍ୱଷ୍ଟ ସମାଲୋଚନା ପଢ଼ିବାକୁ ଭଲ ଲାଗେ 'ଜୋର ଯାହାର ମୁଲକ ତାହାର' ନିବନ୍ଧଟିରେ । 'ଶିକାର ମୃଗୟା'ର ଦ୍ୱିତୀୟ ପ୍ରସ୍ଥ ଏକ ନିର୍ଭୀକ ଅବତାରଣା ଧାରଣ କରିଛି, ଯାହା ପ୍ରକାଶ କରିବାକୁ ଓଡ଼ିଶାର ମୁଖ୍ୟ ସଂବାଦପତ୍ରମାନେ କେବେ ବି ସାହସ କରି ନଥାନ୍ତେ । ଏ ବିଷୟବସ୍ତୁଟି ବିବାଦୀୟ ବା ଆପତ୍ତିଜନକ ଶ୍ରେଣୀରେ ନିଆଯାଇଛି ଏବଂ ଏହା ଆଉ କେହି ଲେଖିବେ ନାହିଁ ।

ଏଥିରେ ସନ୍ନିବିଷ୍ଟ 'ନିର୍ବାସିତା ବାଗ୍‌ଦେବୀ' ପ୍ରବନ୍ଧଟି ଏକ ଯୁକ୍ତିଯୁକ୍ତ କ୍ଷୋଭ ପରିବହନ କରିଛି । କିନ୍ତୁ କୁଆଡ଼େ ପରିବାହିତ ହୋଇଛି ଏହାର ଉତ୍ତାପ ? ଯେଉଁ ଦେଶର ଜନସମାଜ ଅନ୍ତର୍ନିହିତ ସାହସ ହରାଇ ବସିଛନ୍ତି, ସେଠାରେ ଜଣେ ସ୍ତମ୍ଭକାର କିଭଳି ନିଜକୁ ପ୍ରାସଙ୍ଗିକ ଅନୁଭବ କରିବ ? ଠିକ ସେହି ସ୍ୱର 'କଂଗ୍ରେସର ରାଜନୀତି' ଶୀର୍ଷକ ନିବନ୍ଧରେ । ଏହାର ମୂଳ ପ୍ରକାଶନ ୨୦୦୫ ମସିହାରେ । ଯଦି ୨୦୧୪ ନିର୍ବାଚନ ଫଳାଫଳ ଏହାଦ୍ୱାରା ଏକ ସହସ୍ରାଂଶରେ ପ୍ରଭାବିତ ହୋଇଥାଏ । ତେବେ

ଏହାକୁ ସଫଳ ନିବନ୍ଧ ନିଶ୍ଚୟ କୁହାଯିବ । ଏକ ଚିନ୍ତନୀୟ ନିବନ୍ଧ ହେଲା 'ଗଣତନ୍ତ୍ରର କୂର୍ମାବତାର' । ଏହି ବିଷୟବସ୍ତୁଟି ଭିନ୍ନ ଭିନ୍ନ ଲେଖକଙ୍କ କଲମରୁ ଭିନ୍ନ ଭିନ୍ନ ପ୍ରକାରେ ପଢ଼ିଛୁ । କିନ୍ତୁ ଏଥିରେ ଶ୍ରୀଯୁକ୍ତ ପଣ୍ଡାଙ୍କ ଉପସଂହାର ଗମ୍ଭୀର ତଥା ସମ୍ଭ୍ରମଶୀଳ ।

ସବୁ ପ୍ରବନ୍ଧ ବା ଉପଲକ୍ଷ୍ୟ ଉପରେ ଆଗ୍ରହୀ ମତପ୍ରଦାନ ମୁଖବନ୍ଧର ଉଦ୍ଦେଶ୍ୟ ନୁହେଁ । ପାଣ୍ଡୁଲିପିକୁ ଆଦୌ ପାଠ ନକରି ମଧ୍ୟ ମୁଖବନ୍ଧର ଲେଖାଯାଇ ପାରୁଛି । ତେବେ ଅନ୍ୟ ଗୋଟିଏ ପ୍ରବନ୍ଧ ସଂପର୍କରେ ଅନୁଭବକୁ ଆଚ୍ଛାଦିତ କରିବା ସମ୍ଭବ ନୁହେଁ । ତାହା ହେଲା 'ବିଶ୍ୱାସରେ ସଙ୍କଟ' । ଦୁଇଟି ଭୁଲିଯିବା ଭଳି ଘଟଣାରୁ ଜନମାନସର ବ୍ୟାପକ ପରିବର୍ତ୍ତନ ଆବିଷ୍କାର ହୋଇଛି ସେଥିରେ । ଏହା ଏକ ଲଳିତ ନିବନ୍ଧର ପରିସରଠାରୁ ବ୍ୟାପକ ବିଷୟବସ୍ତୁ । ଅଧିକ ପରିଶ୍ରମ କରି ଏହା ଉପରେ ଏକ ବିଧିବଦ୍ଧ ଗବେଷଣା ପ୍ରବନ୍ଧ ସୃଷ୍ଟି କରାଯାଇପାରେ ।

ଶେଷରେ କହିବି ସମସ୍ତ ବିଷୟ ତାତ୍କାଳିକ ଓ ବିନ୍ଦୁ ନିର୍ଦ୍ଦିଷ୍ଟ । ଲଳିତ ନିବନ୍ଧର ସ୍ୱରୂପ ହିଁ ସେଇୟା । ସେଗୁଡ଼ିକୁ ଏକତ୍ର କରି ଏକ ସର୍ବକାଳୀନ ରୂପ ଦେବାକୁ ଏ ସଂକଳନରେ ପ୍ରଚେଷ୍ଟା ହୋଇଛି । ଏହା ସଫଳ ହେଲେ ମୁଁ ବ୍ୟକ୍ତିଗତ ଭାବେ ଆନନ୍ଦିତ ହେବି । କାରଣ ଏପରି ସଫଳତା ଭାଗ୍ୟବାନ୍‌ମାନଙ୍କୁ ମିଳେ । ସତୀର୍ଥ ଶଙ୍କର୍ଷଣ ବାବୁଙ୍କ କଲମରୁ ଅନେକ ସଫଳ କାହାଣୀ ଓ ଅନୁବାଦ ପଢ଼ିଛି । ତାଙ୍କର ବ୍ୟଙ୍ଗ ମଧ୍ୟ ଏକ ସ୍ୱତନ୍ତ୍ର ଶୈଳୀ । ତେବେ ନିବନ୍ଧ ସଂକଳନ ସହ ପ୍ରଥମ ପରିଚୟ ।

ଆଶାକରେ ଏହାର ପାଠକଙ୍କ ହାତକୁ ଯାଇ ପଢ଼ାଯିବ । ପଢ଼ିବା ଲୋକ ନିଶ୍ଚୟ ଆତ୍ମସନ୍ତୋଷ ପାଇବ ।

**– ଭାଗୀରଥି ମହାସୁଆର**

# ଗ୍ରନ୍ଥ ସଂପର୍କରେ ପଦେ

ମୋର ମନେ ହୁଏ ପ୍ରତ୍ୟେକ ଗ୍ରନ୍ଥର ଆତ୍ମପ୍ରକାଶ କାଳରେ ଗ୍ରନ୍ଥକର୍ତ୍ତାଙ୍କର ନିଶ୍ଚୟ କିଛି ସେହି ସଂପର୍କରେ କହିବାର ଥାଏ । କାରଣ ଲେଖକଟିଏ ପୁସ୍ତକଟିର ପିତା ଓ ମାତା ଉଭୟ । ଆମ ଚାରିପାଖକୁ ଖୋଲା ଆଖିରେ ଚାହିଁଲେ ସର୍ବଦା କିଛି ନା କିଛି ଘଟଣା ଘଟି ଚାଲିଥିବାର ଦେଖାଯାଏ । ସେମିତି ଗୋଟିଏ ଦେଶର ଜୀବନରେ ମଧ୍ୟ ପ୍ରତିମୁହୂର୍ତ୍ତରେ ବହୁ ଘଟଣା ଘଟି ଚାଲିଥାଏ । ସେଥି ମଧ୍ୟରୁ ଅନେକ ଘଟଣା ତାତ୍କାଳିକ ହୋଇଥିବା ସ୍ଥଳେ କେତେକ ଘଟଣା ପ୍ରଭାବୀ ହୋଇଥାଏ ଯାହା ଆଗକୁ ଜନଜୀବନକୁ ଜାତୀୟ ଜୀବନକୁ ପ୍ରଭାବିତ କରିଥାଏ ।

ଜଣେ ଲେଖକ, ସମାଲୋଚକ, ସମାଜ-ଚିନ୍ତକ ସେହି ସମସ୍ତ ଘଟଣାବଳୀକୁ ଦେଖେ, ଅନୁଭବ କରେ ଓ ତାର ଭଲମନ୍ଦ ବିଚାର କରି ଜନସାଧାରଣଙ୍କ ଅବଗତି ନିମନ୍ତେ ଜଣାଏ । କାଳକ୍ରମେ ତାତ୍କାଳିକ ଘଟଣାବଳୀ ଜନମାନସରୁ ଲୋପ ପାଇଯାଏ ମାତ୍ର କେତେକ ଘଟଣାର ପ୍ରଭାବ ଆଗାମୀ ବହୁ କାଳ ଧରି ଜନଜୀବନକୁ ପ୍ରଭାବିତ କରିଥାଏ । ତା'ର ଏକ ନିଷ୍ପକ୍ଷ ଆଲୋଚନା ହିଁ ଗ୍ରନ୍ଥଟିର ବିଷୟବସ୍ତୁ ।

ଏହି ଗ୍ରନ୍ଥଟିର ବିଷୟବସ୍ତୁ ୧୯୯୯ରୁ ଆରମ୍ଭ ହୋଇଛି ଓ ସମୟକ୍ରମେ ବିଭିନ୍ନ ସମ୍ବାଦପତ୍ରରେ ପ୍ରକାଶିତ ହୋଇସାରିଛି । ସେ ସଂପର୍କରେ ବହୁ ପାଠକଙ୍କଠାରୁ ଚିଠିପତ୍ର ଓ ଟେଲିଫୋନ ମାଧ୍ୟମରେ ସକରାତ୍ମକ ମତାମତ ମିଳିଛି । ମୋର ବ୍ୟକ୍ତିଗତ ଭାବରେ କାହାରି ପ୍ରତି ଅସୂୟା ବା ବିଦ୍ୱେଷ ନାହିଁ କିମ୍ବା ଆନୁଗତ୍ୟ ମଧ୍ୟ ନାହିଁ । କେବଳ ଘଟଣାବଳୀର ଅନୁଶୀଳନ ହିଁ ମୁଖ୍ୟ ସ୍ଥାନ ଲାଭ କରିଛି । ପୁନଶ୍ଚ ଏହି ଅନୁଶୀଳନ ବ୍ୟକ୍ତିବିଶେଷ ପରସ୍ପରଠାରୁ କେତେକାଂଶରେ ମେଳ ଥିବାବେଳେ ଆଉ କେତେକାଂଶରେ ଅମେଳ ଥାଏ । ଏହା ଏକ ସ୍ୱାଭାବିକ ଘଟଣା ତେଣୁ ପାଠକ ଓ ବିଶ୍ଳେଷକମାନେ ଯେ ସବୁବେଳେ ସବୁକଥାରେ ଏକମତ ହେବେ, ଏପରି ଭାବିବା ନିରର୍ଥକ । ମତାନ୍ତର ତାହା ହିଁ 'ସମାଲୋଚନା' । ମାତ୍ର ଜନଜୀବନରେ ଏହି ସମାଲୋଚନା ସର୍ବଦା ଗଠନମୂଳକ ହେବା ଉଚିତ୍ ।

ବ୍ୟକ୍ତିଗତ ଜୀବନ ଭଳି ଜାତୀୟ ଜୀବନରେ ମଧ୍ୟ ବହୁ ରୋଚକ ଏବଂ ଅରୁଚିକର ଘଟଣା ପ୍ରବାହ ଅନବରତ ଘଟି ଚାଲିଥାଏ । ତାହାର ବିଚାର ମଧ୍ୟ ଜଣେ ବ୍ୟକ୍ତିର ବିଚାର ଧାରାଠାରୁ ଆଉ ଜଣେ ବ୍ୟକ୍ତିର ବିଚାରଧାରା ସ୍ୱ-ଇଚ୍ଛାରେ ହେଉ କିମ୍ବା ଦଳର ବାଧ୍ୟବାଧକତାରେ ହେଉ ଅଲଗା ହୋଇଥାଏ । ମାତ୍ର ସର୍ବଶେଷ ବିଚାରକ ଗଣତନ୍ତ୍ରରେ ଜନସାଧାରଣ । ସେହି ଜନସାଧାରଣଙ୍କର ମତକୁ ମଧ୍ୟ ବିଭିନ୍ନ ଉପାୟ ପ୍ରୟୋଗ କରି କେତେକାଂଶରେ ବିଭ୍ରାନ୍ତ କରାଯାଇ ପାରେ; ମାତ୍ର ସମସ୍ତଙ୍କୁ ନୁହେଁ । ପୁଣି ବୁଦ୍ଧିଜୀବୀମାନେ ତ ନିଜ ସିଦ୍ଧାନ୍ତରେ ଅଟଳ । ଏହିମାନେ ଦେଶର ଜାତୀୟ ଜୀବନର ମେରୁଦଣ୍ଡ । ସେ ମେରୁଦଣ୍ଡ ଅଟଳ ରହୁ, ଗଣତନ୍ତ୍ର ଆମ ଦେଶର ଚିରଞ୍ଜିବୀ ହେଉ । ଦେଶ ବଞ୍ଚିଲେ ଆମେ ବଞ୍ଚିବା, ଏହା ସମସ୍ତେ ମନେ ରଖିବା ସର୍ବାଦୌ ବାଞ୍ଛନୀୟ ।

ମୋର ଏହି ଲେଖାଗୁଡ଼ିକ ସମାଜ, ଧରିତ୍ରୀ, ସମ୍ବାଦ, ଅନୁପମ ଭାରତ, ସାହାଣମେଲା, ନିତ୍ୟନୂତନ ଆଦି ପତ୍ରପତ୍ରିକାରେ ସ୍ଥାନିତ କରିଥିବାରୁ ମୁଁ ସଂପୃକ୍ତ ସଂପାଦକମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଛି । କୃତଜ୍ଞତା ଜ୍ଞାପନ କରୁଛି ଆମ ଭାଷାର ଜଣେ ବିଶିଷ୍ଟ ସ୍ତମ୍ଭକାର ତଥା ବୁଦ୍ଧିଜୀବୀ ଶ୍ରୀ ଭାଗୀରଥି ମହାସୁଆରଙ୍କୁ ଯେ କି ଅକୁଣ୍ଠିତ ଭାବରେ ତାଙ୍କର ବହୁମୂଲ୍ୟ ସମୟ ବ୍ୟୟ କରି ମୋର ଏହି ଗ୍ରନ୍ଥଟିକୁ ଆମୂଳଚୂଳ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ତାଙ୍କର ମୂଲ୍ୟବାନ ଲିଖିତ ମତାମତ ପ୍ରଦାନ କରିଥିବାରୁ । କୃତଜ୍ଞତା ଜଣାଉଛି ପ୍ରିୟ ପାଠକମାନଙ୍କୁ ଯେଉଁମାନେ ସମ୍ବାଦପତ୍ର ପୃଷ୍ଠାରେ ଲେକାଗୁଡ଼ିକ ପାଠ କରି ସେମାନଙ୍କର ମୂଲ୍ୟବାନ ମତାମତ ଲିଖିତ ଆକାରରେ ଓ ଟେଲିଫୋନ୍ ମାଧ୍ୟମରେ ପ୍ରଦାନ କରିଥିଲେ । ବର୍ତ୍ତମାନ ଗ୍ରନ୍ଥଟିର ପ୍ରଥମଭାଗ ପ୍ରକାଶ ପାଉଛି । ପରବର୍ତ୍ତୀ ଭାଗ ସମୟକ୍ରମେ ପ୍ରକାଶିତ ହେବ ।

ବିନୀତ

ଲେଖକ

# ସୂଚୀପତ୍ର

# ବୀରାପ୍ପାନ ତାମସା

ଗୋଟାଏ ଦସ୍ୟୁ ଦୁଇଟି ରାଜ୍ୟର ଶାସନକୁ କିଭଳି ଲଣ୍ଡ ଭଣ୍ଡ କରିଦେଉଛି, ସେ କଥା ସମଗ୍ର ଭାରତରେ ଆଉ କାହାକୁ ଅଜଣା ନାହିଁ । ଭାରତର ଶତ୍ରୁମାନେ ନାକରେ କାଠି ପୂରେଇ ହସୁଛନ୍ତି, ତାମସା ଦେଖୁଛନ୍ତି ।

କନ୍ନଡ଼ ଚଳଚିତ୍ର ଅଭିନେତା ରାଜକୁମାରଙ୍କୁ ମୁଣ୍ଡ ଯାମିନି ରଖି ବୀରାପ୍ପାନ ନାହିଁ ନଥିବା ସର୍ତ୍ତ ଦେଉଛି ଏବଂ ତାକୁ ଦୁଇଟି ରାଜ୍ୟର ରାଜଶକ୍ତି ନିର୍ଲଜ୍ଜ ଭାବରେ ବିନୟ ପୂର୍ବକ ଗ୍ରହଣ କରି ମଧ୍ୟସ୍ଥ ଦ୍ୱାରା କଥାବାର୍ତ୍ତା କରୁଛନ୍ତି । ବୀରାପ୍ପାନ ଜଣେ ଦୁର୍ଦ୍ଧାନ୍ତ ଅପରାଧୀ । ଶତାଧିକ ଲୋକଙ୍କୁ, ପୋଲିସ୍ ଓ ଜଙ୍ଗଲ ବିଭାଗ ଅଫିସରଙ୍କୁ ହତ୍ୟା କରିବା ସଙ୍ଗେ ସଙ୍ଗେ ପ୍ରାୟ ୨୦୦୦ ହାତୀଙ୍କୁ ସେ ହତ୍ୟା କରିଛି । କୋଟି କୋଟି ଟଙ୍କାର ଚନ୍ଦନ କାଠ ଦେଶ ବିଦେଶକୁ ଅବୈଧ ଭାବରେ ଚୋରା ଚାଲାଣ କରିଛି । ତା'ର ପ୍ରତ୍ୟେକଟି କ୍ରିୟାକଳାପ ଧର୍ତ୍ତବ୍ୟ ଅପରାଧର ଶୀର୍ଷକୁ ସ୍ପର୍ଶ କରିଛି । ସେଭଳି ଅପରାଧୀ ସହିତ କଥାବାର୍ତ୍ତା ଆଦୌ କରିବା ଉଚିତ୍ ନଥିଲା । ଦୁଇ ଦୁଇଟା ମୁଖ୍ୟମନ୍ତ୍ରୀ ଯେପରି ଜୋକର ଭଳି ହେଉଛନ୍ତି ଏ ତାମସା ଯେମିତି ବିରକ୍ତିକର ଲାଗୁଛି, ସେମିତି ମନକୁ ପ୍ରଶ୍ନ ଆସୁଛି - ଆମର ପୋଲିସ୍, ଅର୍ଦ୍ଧ ସାମରିକ ତଥା ସାମରିକ ବାହିନୀ କ'ଣ ଏତେ ଅପାରଗ ?

ଜଣେ ସାମ୍ବାଦିକ ଯାହାକୁ ବାରମ୍ବାର ଦେଖା କରି କଥାବାର୍ତ୍ତା, ଆଲୋଚନା କରି ପାରୁଛି - ଆମର ଗୁପ୍ତଚର ବିଭାଗ ତା'ର ଟେର୍ ପାଉନାହିଁ କିପରି ? ବୋଧହୁଏ, ଗୁପ୍ତଚରର ଗୁପ୍ତ ସମ୍ବାଦ କେବଳ ବ୍ୟକ୍ତିଗତ ସ୍ୱାର୍ଥରେ ଉପଯୋଗ କରାଯାଉଛି ।

ଏହି ସଂପୃକ୍ତ ରାଜନୈତିକ ନେତାମାନେ ବୀରାପ୍ପାନର ଅବୈଧ ଆୟରୁ ଭାଗ ନେଇ ନିଜ ନିଜର ସମ୍ପତ୍ତି ବଢ଼ାଇବା ସଙ୍ଗେ ସଙ୍ଗେ ଭୋଟ ଅକ୍ତିଆର କରି ଗାଦି ମାଡ଼ି ବସିଛନ୍ତି । ସେମାନଙ୍କୁ ପୁଷ୍କଳ ଭେଟି ଦେଇ ବୀରାପ୍ପାନ ମଧ୍ୟ ମୂଷାରୁ ବାଘ ପାଲଟିଛି । ମାତ୍ର ଶହୀଦ ହୋଇଛନ୍ତି ଶତାଧିକ ସରକାରୀ କର୍ମଚାରୀ ଓ ସେମାନଙ୍କୁ ବୀରାପ୍ପାନ ବିଷୟରେ ସମ୍ବାଦ ଦେଉଥିବା କିଛି ନିରୀହ ଗ୍ରାମବାସୀ ।

ଆଜି ବୀରାପ୍ପାନ ସର୍ତ୍ତରେ ଟାଡାବନ୍ଦିମାନଙ୍କୁ, ଦୁର୍ଦ୍ଦାନ୍ତ ଡକାୟତଙ୍କୁ ଛାଡି ଦେବାର ନିଷ୍ପତ୍ତି ନେଲାବେଳେ ଥରେ କେହି ଚିନ୍ତା କରିଛନ୍ତି କି ପ୍ରାଣବଳୀ ଦେଇଥିବା ଲୋକଙ୍କର ବିଧବାମାନଙ୍କ ବିଷୟରେ ? ପିତୃହୀନ ହୋଇଯାଇଥିବା ଅସଂଖ୍ୟ ଟିକି ଟିକି ପୁଅଝିଅଙ୍କ ବିଷୟରେ ? ସନ୍ତାନ ହରାଇଥିବା ଦୁଃଖରେ ମ୍ରିୟମାଣ ପିତାମାତାଙ୍କ ବିଷୟରେ ? ସେମାନେ ନ୍ୟାୟ ଚାହାନ୍ତି, ବୀରାପ୍ପାନ ଓ ତା' ଡକାୟତି ଦଳଙ୍କର ଫାଶି ଚାହାନ୍ତି- ତୋଷଣନୀତି ନୁହେଁ କି ତୋଷାମଦ ନୁହେଁ ।

ତତ୍କାଳୀନ କେନ୍ଦ୍ରମନ୍ତ୍ରୀ ମୁଫତି ମହମ୍ମଦ ସୟିଦଙ୍କର କନ୍ୟା ରୁବିଆକୁ ଅପହରଣ କରି ଯେଉଁ ଦୁର୍ଦ୍ଦାନ୍ତ ଉଗ୍ରପନ୍ଥୀମାନେ ଖଲାସ ହେଲେ ସେଇଠୁ କାଶ୍ମିରରେ ଯେଉଁ ନାଟକର ଆରମ୍ଭ ହୋଇଛି ତା'ର ଶେଷ କେଉଁଠି କିଏ କହିପାରିବ ? ଉଗ୍ରପନ୍ଥୀ ଖଲାସ ହେବେ, ପୁଣି ସାମରିକ ବାହିନୀର ଜବାନ, ପୋଲିସ ଓ ନିରୀହ ଜନସାଧାରଣ ସେମାନଙ୍କର ଗୁଳିର ଶିକାର ହେବେ । ସେମାନେ ଧରାପଡ଼ିଲେ ଜେଲରେ ବିଚାରାଧୀନ ବନ୍ଦି ଭାବେ ରହିବେ । ପୁଣି ଆରମ୍ଭ ହେବ ମୁଣ୍ଡ ଜାମିନ ଓ ଖଲାସ ପାଲା ।

ତାରି ପରିଣତି ବର୍ତ୍ତମାନ ସୁପରଷ୍ଟାର ଅମିତାଭ ବଚ୍ଚନ, ହେମାମାଳିନୀ ଇତ୍ୟାଦିଙ୍କୁ କଳେବଳେ ଅପହରଣ କରି ମୁଣ୍ଡଜାମିନି ରଖି ଉଗ୍ରପନ୍ଥୀଙ୍କୁ ଖଲାସ କରାଇନେବାରେ ଶେଷ ହେବନାହିଁ ତ ?

କିନ୍ତୁ ରାଜନୀତି କରୁଥିବା ନେତାମାନେ ତ ଅଙ୍ଗରକ୍ଷୀ ଗହଣରେ ସବୁବେଳେ ନିରାପଦ । ଆଉ ଦେଶରେ ଯିଏ ମରୁ ବଞ୍ଚୁ ସେମାନଙ୍କର ଯାଏ ଆସେ କେତେ ?

ସେମାନଙ୍କୁ ଦରକାର ଟଙ୍କା, କିଛି ସୁନାମ ( ? ) କିଛି ଭୋଟ, ଦେଶର ଶାସନ ଅକ୍ତିଆର କରିବାକୁ, ବୀରାପ୍ପାନ ଉପାଖ୍ୟାନର ଆରମ୍ଭ ଏଇଠୁ ଶେଷ ବି ଏଇଠି ।

୧୦.୯.୨୦୦୦, ଧରିତ୍ରୀ

# ଭଗବାନ କେତେ ଦୂରରେ

ଶୀର୍ଷକଟି ପଢୁ ପଢୁ ବହୁତ ଲୋକ ଆଶ୍ଚର୍ଯ୍ୟ ହେବେଣି ଯେ ଭଗବାନଙ୍କର ଅବସ୍ଥିତି, ଦୂରତା ଯା ଭିତରେ ଆକଳନ କରାଯାଇ ସାରିଲାଣି ।

ମଙ୍ଗଳ ଗ୍ରହ ପୃଥିବୀର ଖୁବ୍ ପାଖକୁ ଆସୁଥିବାର ଶୁଣି ଘରେ ଶ୍ରୀମତୀ ପ୍ରଶ୍ନକଲେ - ଏ ଖବରଟା କ'ଣ କହିଲ ? ସତରେ କ'ଣ ମଙ୍ଗଳ ଗ୍ରହ ଆମ ପାଖକୁ ଆସୁଛି ? ମୁଁ ତାଙ୍କ ହାତ ଧରି ଛାତ ଉପରକୁ ଡାକି ନେଇ ଦକ୍ଷିଣ-ପୂର୍ବ ଆକାଶକୁ ଆଙ୍ଗୁଠି ବଢ଼େଇ ଦେଖାଦେଇ କହିଲି-ଦେଖ ମଙ୍ଗଳଗ୍ରହ ଆମର ଖୁବ୍ ପାଖରେ ବୋଲି ୫ ହଜାର କୋଟି କିଲୋମିଟର ଦୂରରେ ଅଛି । ଜହ୍ନମାମୁଁଠାରୁ କାହିଁ କେତେ ଦୂର ଶୁଣିଲେ ତୁମ ମୁଣ୍ଡ ବୁଲାଇବ ।

ତେବେ ଭଗବାନଙ୍କର ଦୂରତ୍ୱ ବିଷୟରେ ମତେ ଯଦି କେହି ପ୍ରଶ୍ନ ପଚାରେ ମୁଁ ତାକୁ ଗୋଟିଏ ମସଜିଦ୍ ଦେଖାଇ ଦେଇ କହିବି-ଭୋର ପାଞ୍ଚଟାରେ ଉଠି ଯେଉଁ ମୁଲ୍ଲା ଆଲ୍ଲା ହୋ ଆକବର ଡାକୁଛନ୍ତି ଆଉ ସେହି ଡାକ ଆଲ୍ଲାଙ୍କ ପାଖରେ ନିଶ୍ଚୟ ପହଞ୍ଚି ଯାଉଥିବ ବିଚାରିଛ - ତାଙ୍କୁ ଯାଇ ପଚାର ଆଲ୍ଲା ପ୍ରକୃତରେ କେତେ ଦୂରରେ ଅଛନ୍ତି ? ଯଦି ଖାଲି ପାଟିରେ ଡାକିଲେ ତାଙ୍କୁ ଶୁଭେ ନାହିଁ ମାତ୍ର ମାଇକ୍‌ରେ ଡାକିଲେ ଶୁଭେ, ତା' ହେଲେ ସେ ମାତ୍ର ଏଇ ଗୋଟିଏ କିଲୋମିଟର ଭିତରେ ଅଥଚ ଖାଲି ପାଟିରେ ନ ଶୁଭିବା ଭଳି ଦୂରତ୍ୱରେ ଥିବେ ।

ଘରେ ଯଦି କିଛି ପୂଜା ଅନୁଷ୍ଠାନାଦି ହୁଏ କିମ୍ବା ମନ୍ଦିରରେ କୌଣସି ବିଶେଷ ପୂଜାନୁଷ୍ଠାନ ଥାଏ ସେଠାରେ ମଧ୍ୟ ମାଇକ୍ ଲାଗିଥାଏ । କାରଣ ସମ୍ଭବତଃ ଠାକୁରଙ୍କ ନାମ ବା ତାଙ୍କ ନାମରେ ବୋଲାଯାଉଥିବା ଭଜନ ଆସ୍ତେ ବୋଲିଲେ ଠାକୁର ଶୁଣି ପାରୁନାହାନ୍ତି-ତେଣୁ ତାଙ୍କ କାନରେ ପଡ଼ିବା ପାଇଁ ମାଇକ୍ ଲଗାଇ ଭଜନ ବୋଲାଯାଉଛି । ଏ କ୍ଷେତ୍ରରେ ମଧ୍ୟ ଠାକୁରଙ୍କ ସ୍ଥିତି ନିଶ୍ଚୟ ଖାଲିପାଟିରେ ବୋଲିଲେ ଶୁଣିବା ବାହାରେ ମାତ୍ର ମାଇକରେ ବୋଲିଲେ ସେ ଶବ୍ଦ ତାଙ୍କ କାନରେ ପଡୁଥିବା ଦୂରତ୍ୱର ଭିତରେ ବିଦ୍ୟମାନ ।

ଯଦି ଏହା ସତ୍ୟ ନୁହେଁ, ତେବେ ପାହାନ୍ତାରୁ ରଡ଼ିକରି କିମ୍ବା ରାତ୍ରିର ବିଳମ୍ବିତ ପ୍ରହରଯାଏ ମାଇକ୍‌ରେ ଚିତ୍କାର କରି ପାଖଆଖରେ ବିଶ୍ରାମ କରୁଥିବା ହୃଦରୋଗୀମାନଙ୍କୁ ଅଥବା କୌଣସି ପ୍ରକାରର ଶାରୀରିକ ଯନ୍ତ୍ରଣାରୁ ସାମୟିକ ମୁକ୍ତି ପାଇଁ ନିଦ୍ରାଦେବୀଙ୍କ କୋଳରେ ଆଶ୍ରିତ ଆର୍ତ୍ତୀମାନଙ୍କୁ ଉଠାଇବାର କାରଣ କ'ଣ ?

ଖାଲି ସେତିକି ନୁହେଁ । ବର୍ତ୍ତମାନ ସହରମାନଙ୍କରେ ବିବାହ ବ୍ରତାଦି ଅନୁଷ୍ଠାନ ପାଇଁ କଲ୍ୟାଣମଣ୍ଡପମାନ ଛତୁଫୁଟିବା ଭଳି ଗଢ଼ି ଉଠିଲାଣି । ସେହି କଲ୍ୟାଣମଣ୍ଡପର ମାଲିକ ଧନିକ ଗୋଷ୍ଠୀଙ୍କ ଠାରୁ ଉଚ୍ଚହାରରେ ଉତ୍କୋଚ ଗ୍ରହଣ କରି ବି.ଡି.ଏ ତଥା ଅନ୍ୟାନ୍ୟ ସଂପୃକ୍ତ ବିଭାଗମାନେ ପ୍ରକୃତ କ୍ଷେତ୍ରରେ ସରଜମିନ୍ ତଦନ୍ତ ନକରି ଅଫିସ୍‌ରେ ବସି ଓ.କେ କରି ଦେଉଛନ୍ତି । ଫଳତଃ କଲ୍ୟାଣମଣ୍ଡପର ଆଇଁଷ, ଅଇଁଠା, ଧୂଆପାଣି କେଉଁଠି ରାସ୍ତା ଉପରେ ଲହଡିମାରିଲାଣି ତ କେଉଁଠି ଗାଡ଼ି ସବୁ ରାସ୍ତାବନ୍ଦ କରି ଏଭଳି ଭାବରେ ରଖାଯାଉଛି ଯାହା କି ବର୍ଣ୍ଣନାତୀତ ଯନ୍ତ୍ରଣାଦାୟକ । ସାରାରାତି ବାଜା ଓ ମାଇକ୍ ଶବ୍ଦରେ ଚାରିପାଖର ଲୋକେ ଯନ୍ତ୍ରଣାରେ ଅତିଷ୍ଠ ହେଉଛନ୍ତି । ଖାଲି ସେତିକି ନୁହେଁ – ରାତି ସାରା ବାହାଘରର ମନ୍ତ୍ରପାଠକୁ ମାଇକ ଲଗାଇ ସିଧା ଈଶ୍ୱରଙ୍କ କାନରେ ପକାଇ ତାଙ୍କୁ ଜବରଦସ୍ତ ସାକ୍ଷୀ ରଖାଯାଉଛି । ଏହାଦ୍ୱାରା କଲ୍ୟାଣମଣ୍ଡପର ଚତୁଃପାର୍ଶ୍ୱରେ ରହୁଥିବା ଲୋକଙ୍କର ଯେ ଜୀବନ ଅଛି, ସ୍ୱାଧୀନତା ଓ ସ୍ୱାଭିମାନ ଅଛି – ସେ କଥା ଆଦୌ ବିଚାରକୁ ନିଆଯାଉ ନାହିଁ ।

ଗଣେଶ ଚତୁର୍ଥୀଠାରୁ ପୂଜାପାର୍ବଣ ବେଳ ଆସିଯାଏ । ସେଥିରେ ମାଇକ୍ ଲଗାଇ ସଙ୍ଗୀତ ସ୍ଥାନେ ସ୍ଥାନେ ଅଶ୍ଳୀଳ ସଙ୍ଗୀତ ମଧ୍ୟ ଖୋଲାଖୋଲି ପରିବେଷଣ କରାଯାଉଛି ।

ଆପଣ ଯଦି ବସ୍‌ରେ ବସିଛନ୍ତି–ତେବେ କାନ ତାବ୍‌ଦା ହେଲାଭଳି ଉଚ୍ଚସ୍ୱରରେ, ବେଳେବେଳେ ଘଡ଼ଘଡ଼ିଆ ସ୍ୱରରେ ହିନ୍ଦୀ ଗୀତ ଶୁଣିବାକୁ ବାଧ୍ୟ । ଆପଣ ଟିକିଏ ଶବ୍ଦ କମ୍ କରିବାକୁ କହନ୍ତୁ– ଡ୍ରାଇଭର ବା ତା' ସହକାରୀ ସେଥିପ୍ରତି କର୍ଣ୍ଣପାତ କରିବେ ନାହିଁ । ଯଦି ବନ୍ଦ କରିବାକୁ ଅନୁରୋଧ କରନ୍ତି, ଉତ୍ତର ଶୁଣିବେ–ଆଜ୍ଞା ଗୀତ ବନ୍ଦ କଲେ ବହୁତ ପାସେଞ୍ଜର ଆପତ୍ତି କରିବେ । ବହୁତ ନିର୍ଲଜ୍ଜ ସଙ୍ଗୀତ ପ୍ରିୟ ଅଛନ୍ତି, ଯେଉଁମାନେ ବସ୍‌ରେ ବସି ଗୀତ ନ ଶୁଣିଲେ ସେମାନଙ୍କର ସଉକରେ ବାଧା ପଡେ । ସେହିମାନଙ୍କ ଦାବିରେ ଏହି ଅପସଭ୍ୟତା ଓ ଅସଭ୍ୟତା ଖାଲି ବଞ୍ଚିରହି ନାହିଁ, ଦିନକୁ ଦିନ ପରିପୁଷ୍ଟ ହେଉଛି ।

ଗାଡ଼ି ମଟରରେ ଭେକମ୍ ହର୍ଣ୍ଣ ସାଙ୍ଗକୁ ସାହି ବସ୍ତିରେ ମାଇକର ଅହରହ ଗର୍ଜନ ଶାନ୍ତିପ୍ରିୟ ଜନତାଙ୍କୁ ଯେ କି ପ୍ରକାର ମାନସିକ ଯନ୍ତ୍ରଣା ଦେଉଛି, ସେ କଥା ଯୁବ ଉଦ୍ୟୋକ୍ତାମାନେ ବୁଝି ପାରୁ ନାହାନ୍ତି । ଯେଉଁମାନେ ବୁଝୁଛନ୍ତି, ସେମାନଙ୍କ କଥାକୁ ଆଦୌ ଗୁରୁତ୍ୱ ଦିଆଯାଉ ନାହିଁ ।

ଏହିଭଳି ପରିସ୍ଥିତିରେ ମୋ ଭଳି ଜନସାଧାରଣଙ୍କର ନିବେଦନ, ଈଶ୍ୱରଙ୍କୁ ହୃଦୟ ଭିତରୁ ଡାକନ୍ତୁ- ମାଇକ୍ ଲଗାଇ ଚିତ୍କାର କରିବାର ଅସାରତା ହୃଦୟଙ୍ଗମ କରନ୍ତୁ । ଏଥିରେ କାହାରି ଧାର୍ମିକ ମନୋଭାବକୁ ଆହତ କରିବାର ଅଭିପ୍ରାୟ ଆଦୌ ନାହିଁ । ବରଂ ଆହତମାନଙ୍କୁ ଶାନ୍ତି ପ୍ରଦାନ କରି ସେମାନଙ୍କ ଅନ୍ତରରୁ ଆଶୀର୍ବାଦ ଲାଭ କରିବାର ନିବଦେନ ନିହିତ ଅଛି । ନିଜର ଗୋଟାଏ ଖିଆଲ ପାଇଁ ଅନ୍ୟମାନଙ୍କର ଶାନ୍ତି ବ୍ୟାହତ କରନ୍ତୁ ନାହିଁ ।

ଧରିତ୍ରୀ : ୧.୧.୨୦୦୪

# ଜୋର ଯାହାର ମୁଲକ ତାହାର

ଯେଉଁ ଅଭାବୀ ପରିବାରରେ ପାଞ୍ଚଟ ପିଲା ଥାଆନ୍ତି, ବଳୁଆ ପିଲାଟି ସମସ୍ତଙ୍କ ଭାଗରୁ ମାରିପିଟି ହେଉ କିମ୍ବା କଳକୌଶଳ କରି ହେଉ ଅଧିକ ଖାଇଯାଏ । ଏହା ଏକ ଅବିସମ୍ବାଦିତ ସତ୍ୟ ।

ଠିକ୍ ସେହିପରି ଦରିଦ୍ର, ସ୍ୱଳ୍ପଶିକ୍ଷିତ ଓଡ଼ିଶାର ଅବସ୍ଥା ହୋଇଛି ପଡୋଶୀ ବଳବାନ, ଅଧିକ ଶିକ୍ଷିତ ରାଜ୍ୟ ପଶ୍ଚିମବଙ୍ଗ ଦ୍ୱାରା । ଓଡ଼ିଶାର ଏକଦା ଗୌରବଗାଥା ପରିସ୍ଥିତିକ୍ରମେ ଆଜି ଓଡ଼ିଶାର ଦୁର୍ଗତି ବଢ଼ାଉଛି ସିନା ସାହାଯ୍ୟ କରୁନାହିଁ । ଏହି ଉକ୍ତିଟିକୁ ପ୍ରାଞ୍ଜଳ ଭାବରେ ବୁଝିବାକୁ ହେଲେ ଇତିହାସକୁ ଦୃଷ୍ଟିପାତ କରିବାକୁ ହେବ ।

ବଙ୍ଗଳା ବହୁବର୍ଷ ଧରି ମୁସଲମାନ ଶାସନାଧୀନ ରହିଲାପରେ ଇଂରେଜମାନେ ସେଠାରେ ପାଦଦେଲେ ସପ୍ତଦଶ ଶତାବ୍ଦୀରେ । ତାପରେ ସେଠାରେ ଇଂରେଜମାନଙ୍କର ପ୍ରତିପତ୍ତି ଓ ପ୍ରଭୁତ୍ୱ ବଢ଼ି ଚାଲିଲା । ସେତେବେଳକୁ ମୁସଲମାନମାନଙ୍କ ଅତ୍ୟାଚାରରେ ବଙ୍ଗଳାର ପାଣିପବନ ଆର୍ତ୍ତଚିତ୍କାର କରୁଥିଲା ବେଳେ ଇଂରେଜମାନେ ସାଧାରଣ ଜନତା ଦୃଷ୍ଟିରେ ତ୍ରାଣକର୍ତ୍ତା ବିବେଚିତ ହେଲେ । ଫଳତଃ ଇଂରାଜୀ ପାଠର ସ୍କୁଲ କଲେଜ କଲିକତାରେ ପ୍ରଥମେ ପ୍ରତିଷ୍ଠିତ ହୋଇ ଗୋଟିଏ ଇଂରାଜୀ ପଢୁଆ ବାବୁ ଗୋଷ୍ଠୀ ସୃଷ୍ଟି ହେଲା । ଏହି ବାବୁ ଗୋଷ୍ଠୀଟି ସାହେବମାନଙ୍କର କେତେକ ପରିମାଣରେ ଆଖି, କାନ ଓ ଡାହାଣ ହାତର କାମ କଲେ । କଲିକତାରୁ ଓଡ଼ିଶାର ଜମିଦାରି ସୂର୍ଯ୍ୟାସ୍ତ ଆଇନ ବଳରେ ନିଲାମ ଧରି କମ୍ପାନୀ ଦପ୍ତରରେ ଚାକିରି କରିଥିବା କେଉଁ କିରାଣୀ ବା ଚପରାସିଟିଏ ରାତାରାତି ଓଡ଼ିଶାର ଗୋଟିଏ ମୂଳକର ଜମିଦାର ହୋଇଗଲା ।

ଅପରପକ୍ଷରେ ଓଡ଼ିଶାର ବୀରସନ୍ତାନମାନେ ଗଜପତି ମହାରାଜାମାନଙ୍କର ଛତ୍ରଛାୟା ତଳେ ପ୍ରଚଣ୍ଡ ପରାକ୍ରମବଳରେ ସ୍ୱାଧୀନତା ଉପଭୋଗ କରୁଥିଲେ । ୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଶାସନ ପଠାଣ ଓ ମୋଗଲ ଅଧୀନକୁ ଏବଂ ତା ପରେ ମରହଟ୍ଟା ଅଧୀନକୁ ଗଲା । ୧୮୦୩ରେ ଇଂରେଜ ମାନେ ଓଡ଼ିଶା ଅଧିକାର

କଲେ ହେଁ ପାଇକ ଓ ଅନ୍ୟାନ୍ୟ ଜାଗିରଦାରମାନେ ସେମାନଙ୍କୁ ଗ୍ରହଣ କରି ନଥିଲେ । ଓଡ଼ିଶାରେ ଇଂରେଜ ସରକାର ଓ ଇଂରାଜୀ ଶିକ୍ଷା ବିରୁଦ୍ଧରେ ଜନମତ ବସ୍ତୁତଃ ସକ୍ରିୟ ରହିଲା ।

ଏହି ସୁଯୋଗ ନେଇ ପ୍ରବଳ ପ୍ରତିବେଶୀମାନେ ଓଡ଼ିଶାକୁ ଖଣ୍ଡ ଖଣ୍ଡ କରି ବାଣ୍ଟିନେବାରେ ଇଂରେଜମାନଙ୍କର ସ୍ୱୀକୃତି ମଧ୍ୟ ଥିଲା । ଏପରିକି ଓଡ଼ିଶା ପ୍ରଦେଶ ଗଠନ ପରେ ଏବଂ ଭାରତର ସ୍ୱାଧୀନତା ପରେ ଓଡ଼ିଶାରୁ କ୍ୱଚିତ୍ ସ୍ୱାଭିମାନୀ ନେତୃସ୍ଥାନୀୟ ବ୍ୟକ୍ତି ଦିଲ୍ଲୀ ଦରବାରକୁ ଯାଇଥିଲେ । କେତେକ ଆପଣା ସ୍ୱାର୍ଥ ସିଦ୍ଧି ବ୍ୟସ୍ତ କୂଟଚକ୍ରାନ୍ତକାରୀ ବ୍ୟକ୍ତିଙ୍କ ଯୋଗୁ ଓଡ଼ିଶା ସବୁ କ୍ଷେତ୍ରରେ ଅବହେଳିତ ହୋଇ ରହିଗଲା । ଭାଷା, ସଂସ୍କୃତି ଓ ଆର୍ଥିକ ଦିଗରୁ ଓଡ଼ିଶା କ୍ରମାଗତ ଭାବରେ ଶୋଷିତ ହୋଇଚାଲିଲା ଏବଂ ଆଜି ମଧ୍ୟ ସେ ଶୋଷଣର ଶେଷ ହୋଇନାହିଁ । ଦକ୍ଷିଣ ପୂର୍ବ ରେଳପଥର ବିସ୍ତୃତି ଓଡ଼ିଶାରେ ସର୍ବାଧିକ ଥିବାବେଳେ ତା'ର ମୁଖ୍ୟଦପ୍ତର କଲିକତାରେ ରହିବା ପଛରେ କୌଣସି ଯୁକ୍ତି ନାହିଁ । ମାତ୍ର ଏହାକୁ ଓଡ଼ିଶାକୁ ଉଠାଇ ଆଣିବା ପାଇଁ କୌଣସି ଉଦ୍ୟମକୁ ବଙ୍ଗଳାର ସ୍ୱାର୍ଥହାନିର ଆଳରେ ଚାପିଦିଆଯାଉଛି କାହିଁକି ? କଲିକତାରେ କେତେଟା ରେଳବାଇର କେତେଟା ମୁଖ୍ୟଦପ୍ତର ଅଛି ଓ କାହିଁକି ? ରେଳବାଇର ବଜେଟ୍‌ରେ ମମତା ବାନାର୍ଜୀ ଯେ ଓଡ଼ିଶା ପ୍ରତି ଚରମ ପକ୍ଷପତିତା କରିବେ ସେଥିରେ ସନ୍ଦେହ ନାହିଁ । ଏହି ଲେଖକ ଏପ୍ରିଲ୍ ୨୦୦୦ ରେ ଲେଖିଥିଲା ଯେ, ପଶ୍ଚିମବଙ୍ଗର କେହି ରେଳବାଇ ବିଭାଗ ପାଇବା ଓଡ଼ିଶାର ସ୍ୱାର୍ଥର ପରିପନ୍ଥୀ ହେବ ହିଁ ହେବ ।

ମମତା ବାନାର୍ଜୀଙ୍କର ଚକ୍ରାନ୍ତରେ ଆଜି ଇଷ୍ଟ କୋଷ୍ଟ ଜୋନ ଅଫିସ୍ ଓଡ଼ିଶାରୁ ଉଠିଯିବାକୁ ବସିଲାଣି । ତା'ଛଡା ଦକ୍ଷିଣ-ପୂର୍ବ ରେଳବାଇ ପାଇଁ ବଜେଟ୍‌ରେ ଯେଉଁ ଅର୍ଥ ବରାଦ ହୋଇଛି ତାହାର ଅଧିକାଂଶ ପଶ୍ଚିମବଙ୍ଗରେ ବିନିଯୋଗ କରାଯିବ । ଓଡ଼ିଶା ଜଳକା ହୋଇ ଚାହିଁ ରହିବ ସିନା ପ୍ରତିକାର କିଛି କରିପାରିବ ନାହିଁ ।

୧୮ ଜଣ ଲୋକସଭାରେ କ୍ଷମତାସୀନ ଦଳର ସଭ୍ୟ ଥାଇ ରେଳବାଇ ବିଭାଗ ଓଡ଼ିଶା ଭାଗ୍ୟରେ ପଡ଼ିଲା ନାହିଁ । ଅଥଚ ମାତ୍ର ୭ ଟି ଏମ.ପି ଦେଇ ତୃଣମୂଳ କଂଗ୍ରେସ ନେତ୍ରୀ ଜିଦ୍ କରି ରେଳବିଭାଗ ନେଲେ ଏହି ହଟଚମଟ ଦେଖାଇବା ପାଇଁ । ସେତିକି ନୁହେଁ ପଶ୍ଚିମବଙ୍ଗ ନିର୍ବାଚନ ପାଇଁ ମମତା ଲୋକସଭାରୁ ଇସ୍ତଫା ଦେଲେ ଆଉ ଜଣେ ତାଙ୍କର ସହକର୍ମୀ ରେଳବିଭାଗ ନିଶ୍ଚୟ ପାଇବେ ।

ଓଡ଼ିଶାର ଦୂର୍ଭାଗ୍ୟ ରାଜ୍ୟର ସ୍ୱାର୍ଥ ପାଇଁ ଆମ ଏମ.ପି ମାନେ ପ୍ରତିବାଦ ସୂଚକ ଇସ୍ତଫା ଦେବାର ସତ୍‌ସାହସ ସଞ୍ଚୟ କରିପାରୁ ନାହାନ୍ତି । 'ପଦ ଓ ଗଦ'ର ମୋହ ସେମାନଙ୍କୁ କ୍ଲୀବ ସ୍ତରକୁ ନେଇଗଲାଣି । ଷଢ଼େଇକଳା ଖରସୁଆଁ ଇସ୍ୟୁରେ ଆମେ ଆମର କେନ୍ଦ୍ର ମନ୍ତ୍ରୀମାନଙ୍କର ନୈତିକତା ଦେଖିଥିଲୁ ।

ଆଉ ଓଡ଼ିଶା ବନ୍ଦ ଡାକରା ଦେଇଥିବା କଂଗ୍ରେସ ଦଳର କରାମତି ନ କହିଲେ ଭଲ । କେବଳ ବଶମ୍ୱଦ ହୋଇ ପଦବୀ ବଜାୟ ରଖିଥିବା କଂଗ୍ରେସ ନେତୃବୃନ୍ଦ ଆଜି ଯେଉଁ ଛଳନାତ୍ମକ ପ୍ରତିବାଦର ଆସ୍‌ଫାଳନ ଦେଖାଯାଉଛନ୍ତି ତାକୁ ଓଡ଼ିଶାର ଲୋକେ ଭଲ ଭାବରେ ଜାଣନ୍ତି । ବିଗତ ୪୫ ବର୍ଷ କଂଗ୍ରେସ ଶାସନରେ ପଞ୍ଜାବ, ହରିୟାଣା, ମହାରାଷ୍ଟ୍ର ଓ ଗୁଜୁରାଟ୍ ତୁଳନାରେ ଓଡ଼ିଶା କେତେ ଦରିଦ୍ର ତା'ର କାରଣ କଂଗ୍ରେସ ନେତାମାନେ ଦେଶବାସୀଙ୍କୁ ଆଗ ବୁଝାନ୍ତୁ ।

ଆମ ରାଜ୍ୟରେ ଭାଜପା ମନ୍ତ୍ରୀ ଓ ଏମ.ପି ମାନଙ୍କ କଥା କ'ଣ କହିବା ? ରାଜ୍ୟର ସ୍ୱାର୍ଥକୁ ଆଖିବୁଜି ଦେଇ ଦଳର ସ୍ୱାର୍ଥକୁ ବଡକରି ଦେଖୁଥିବା ନେତାମାନେ ଭୁଲିଯିବା ଉଚିତ୍ ନୁହେଁ ଯେ, ସେମାନେ କାଲିଭଳି ପୁଣି ଭୋଟ ପାଇଁ ଭୋଟରଙ୍କ ଦ୍ୱାରସ୍ଥ ହେବେ ଏହି କ୍ରୋଧ, ଦାରିଦ୍ର୍ୟ ଜର୍ଜରିତ ଓଡ଼ିଶାରେ, ଦିଲ୍ଲୀରେ ନୁହେଁ ।

ବାକି ରହିଲା କ୍ଷମତାରେ ନଥିବା, ବହୁ ପ୍ରତିଶ୍ରୁତି ବାଣ୍ଟୁଥିବା ଓଜିପି ଦଳ । ତାଙ୍କର ଓଡ଼ିଶା ପ୍ରତି ନିଷ୍ଠା ସୁଯୋଗ ପାଇଲେ ଓଡ଼ିଶାର ଲୋକେ ପରୀକ୍ଷା କରିବେ । ଓଡ଼ିଆ ପାଇଁ ଲଢୁଆ ଓଡ଼ିଶା ନେତା ଦରକାର । ସ୍ତାବକ ଓ ହାତଟେକା ନେତା ଆମେ ସ୍ୱାଧୀନତା ପରଠାରୁ ବହୁ ରୂପରେ ବହୁତ ଦେଖିଲୁଣି । ଓଡ଼ିଶା ପ୍ରତି ବାରମ୍ବାର ଅନ୍ୟାୟ ଓଡ଼ିଆଙ୍କର ସହିବା ଶକ୍ତିକୁ ବହୁମାତ୍ରାରେ ଟପିଗଲାଣି । ପଶ୍ଚିମବଙ୍ଗର ପକ୍ଷପାତିତା ଜନିତ ଶୋଷଣରେ ଓଡ଼ିଶା ଓ ଓଡ଼ିଆ କ୍ରମାଗତଭାବେ ତଳିତଳାନ୍ତ ହେଲେଣି । ରେଳବାଇର ଅର୍ଥ ବରାଦ ଓ ରାଜ୍ୟମାନଙ୍କୁ ଅର୍ଥବଣ୍ଟନ ଶୈଳୀ ଦେଖିଲେ ମମତା ବାନାର୍ଜୀ କେବଳ ପଶ୍ଚିମବଙ୍ଗର ରେଳବିବଭାଗ ମନ୍ତ୍ରୀ ବୋଲି ସାବ୍ୟସ୍ତ୍ୟ ହୁଅନ୍ତି । ଓଡ଼ିଶାରେ ଆନ୍ଦୋଳନ ନାହିଁ, ଜନସଚେତନତା ଅତି ନିମ୍ନ ମାନର । ତେଣୁ ଆଗ ନେତାମାନଙ୍କର ପେଟପୂରୁ, ପରେ ଜନତା କଥା ବିଚାର କରାଯିବ ଏଇ ହେଲା ଆମ ନେତାମାନଙ୍କର ମାନସିକତା । ଏଥିରେ ଧନୀ ରାଜ୍ୟ ଆହୁରି ସୁବିଧାସୁଯୋଗ ଛଡାଇ ନେଇ ଧନୀ ହେବ ଓ ଦରିଦ୍ର ରାଜ୍ୟ ଆହୁରି ଦରିଦ୍ର ହେବା ସାର ହେବ ।

କୌଣସି ବିସ୍ଫୋରକ ପରିସ୍ଥିତି ସୃଷ୍ଟି ହେବା ପୂର୍ବରୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏବଂ ଭାରତର ପ୍ରଧାନମନ୍ତ୍ରୀ ସମସ୍ୟାଟିକୁ ସମାଧାନ କରିବ ପାଇଁ ଦୃଷ୍ଟିଦେବେ କି ?

ଧରିତ୍ରୀ – ୨୨.୩.୨୦୦୧

# ଧରାଧରି

ଆମେ ପିଲାବେଳେ ସ୍କୁଲ୍‌ରେ ପଢୁଥିବା ବେଳେ 'ଧରାଧରି' ଲଗାଇ ବାକ୍ୟ ଗଠନ କରିବାକୁ ଶିକ୍ଷକ ପିଲାମାନଙ୍କୁ କହିଲେ । ଗୋଟିଏ ପିଲା ଲେଖିଲା, ''ଚୋର ଓ ପୁଲିସ୍ ହାତ ଧରାଧରି ହୋଇ ରାସ୍ତାରେ ଯାଉଛନ୍ତି ।'' ଆଉ ଗୋଟିଏ ପିଲା ଲେଖିଲା, ''ଭାଇଭଉଣୀ ହାତ ଧରାଧରି ହୋଇ ବିଦ୍ୟାଳୟକୁ ଯାଉଛନ୍ତି'' । କହିବା ବାହୁଲ୍ୟ ଯେ ପ୍ରଥମ ବାକ୍ୟ ଗଠନଟି ଠିକ୍ ଥିଲେ ହେଁ ସେଥିରେ ଥିବା ଅନ୍ତର୍ନିହିତ ଅର୍ଥ ବା ସୂଚନାଟି ସମାଜ ପାଇଁ ଅସ୍ୱାସ୍ଥ୍ୟକର ହୋଇଥିବା ବେଳେ ଦ୍ୱିତୀୟ ବାକ୍ୟଟି ସର୍ବତୋଭାବେ ସୁସ୍ଥ ଅର୍ଥ ପ୍ରକାଶ ସହିତ ଉତ୍ତମ ବାକ୍ୟ ଗଠନ ।

ମାତ୍ର ଧରାଧରିରେ ବିଶେଷ ରୁଢ଼ି ପ୍ରୟୋଗ ଜନିତ ଅର୍ଥ ହେଲା ଯାହାହେବା ଉଚିତ୍ ନୁହେଁ କିମ୍ବା ଯାହା ହୋଇପାରିବା କଥା ନୁହେଁ, କୌଣସି ଉପାୟରେ କାର୍ଯ୍ୟ ହାସଲ ପନ୍ଥାକୁ ତୈଳାକ୍ତ ସୁଗମ କରି କାର୍ଯ୍ୟ ହାସଲ କରିବା । ଏହି ଧରାଧରିରେ ବିକଳ ତଥା ବିକଟ ରୂପେ ବର୍ତ୍ତମାନ ସବୁ କାମରେ ସବୁ ଆଡେ, ସବୁ ସ୍ତରରେ ଦେଖାଯାଉଥିବା ବେଳେ କେବଳ ଧରାଧରି- ଅପଟୁ ବ୍ୟକ୍ତିମାନେ ନିରସ୍ତ ହୋଇ ଶୂନ୍ୟକୁ ଚାହିଁ ଈଶ୍ୱରଙ୍କୁ ସାକ୍ଷୀରଖି ଦୀର୍ଘ ନିଃଶ୍ୱାସ ପକାଉଛନ୍ତି ।

ଗତ ବୋର୍ଡ ପରୀକ୍ଷାରେ ଆମ ରାଜ୍ୟରେ ପ୍ରଥମ ୧୦ ଜଣ ଭିତରେ ଥିବା ପିଲାମାନେ ବିଭିନ୍ନ ବିଦ୍ୟାଳୟରୁ ପରୀକ୍ଷାରେ ପାଇଥିବା ନମ୍ବର ଅନୁସାରେ ସ୍ଥାନିତ ହେଲେ । ସେମାନଙ୍କୁ ପ୍ରଚୁର ସମ୍ବର୍ଦ୍ଧନା ମିଳିଲା, ସମ୍ମାନ ମିଳିଲା, ଭବିଷ୍ୟତରେ ପଢ଼ିବାକୁ ଭଲ କଲେଜମାନଙ୍କରେ ସୁଯୋଗ ମିଳିଲା । ସେମାନଙ୍କ ମଧ୍ୟରୁ କେତେକ ଆହୁରି ଉଚ୍ଚସ୍ଥାନ ଆଶା କରୁଥିବା ବେଳେ କେତେକ ଆଶାତିରିକ୍ତ ଫଳ ପାଇଥିବା ସ୍ୱୀକାର କରିଛନ୍ତି । ଖାଲି ସେତିକି ନୁହେଁ, ପରୀକ୍ଷା ପରିଚାଳନା ଠିକ୍ ଭାବେ ହୋଇଥିଲେ ଏବଂ ମୂଲ୍ୟାୟନ ସଂପୂର୍ଣ୍ଣ ନିରପେକ୍ଷ ହୋଇଥିଲେ ଏହି ଛାତ୍ରମାନଙ୍କ ମଧ୍ୟରୁ କେତେକ ତଳକୁ ଖସିଯାଇଥାନ୍ତେ ଏବଂ ନୂତନ କେତେକ ଛାତ୍ରଙ୍କ ନାମ ଏହି ତାଲିକାଭୁକ୍ତ ହୋଇଥାଆନ୍ତା । ସେଥିପାଇଁ ଧରାଧରି କଳା-ପ୍ରବୀଣ ପ୍ରଧାନ ଶିକ୍ଷକ ଏବଂ କେତେକ

ସ୍ଥାନରେ ମୁରବୀମାନଙ୍କର ପାରିବାର ପଣିଆ କିଛି ପ୍ରଭାବିତ କରିଥିବାର ଖୁବ୍ ଶୁଣାଯାଏ ।

ଏହି ଧରାଧରି ସ୍କୁଲର ସେଣ୍ଟର ନିର୍ଣ୍ଣୟଠାରୁ ଛାତ୍ର ବିଶେଷଙ୍କ ସିଟ୍ ପକାଇବା ପର୍ଯ୍ୟନ୍ତ ପରିବ୍ୟାପ୍ତ । ଏଥିପାଇଁ ସି.ଆଇ. ଅଫିସ୍ ମାନଙ୍କରେ ପ୍ରବଳ ଭିଡ, ଚାପ ପ୍ରୟୋଗ ଏବଂ ଅର୍ଥ କାରବାର ଯେ ହେଉଛି ଏହା ଅବିସମ୍ବାଦିତ ।

ଆଜିକାଲି ସରକାରୀ ଦପ୍ତରରେ ବଦଳି ଆଦେଶ ବାହାରିବା ପରେ ସମସ୍ତେ ଜାଣିବାକୁ ପାଇଲେ ଅମୁକର ଅମୁକ ଜାଗାକୁ ବଦଳି ହେଲା । ମାତ୍ର ତା'ର ପ୍ରାକ୍ ପ୍ରସ୍ତୁତିରେ ଧରାଧରିର କେତେ ଅବଦାନ ରହିଛି, ତାହା ସମସ୍ତେ ଜାଣୁଛନ୍ତି । ଯେତିକି ଅଜଣାଥିଲା, ଅଳ୍ପ, କିଛିଦିନ ତଳେ ପ୍ୟାରୀ ମୋହନ ମହାପାତ୍ରଙ୍କର ସମାଜରେ ପ୍ରକାଶିତ ବିବୃତିରୁ ସବୁ ଜଣାଗଲା । ଲୋକଙ୍କ ମତରେ ଏହି ସରକାର ଦୁର୍ନୀତିରେ କଂଗ୍ରେସ ସରକାରକୁ ବଳିଯାଇଛି । ସେମାନେ ଖାଉଥିଲେ କିଛି କରୁଥିଲେ, ମାତ୍ର ଏମାନେ ? ତେଣୁ ରାଜ୍ୟରେ ଆସନ୍ତା ମନ୍ତ୍ରୀମଣ୍ଡଳ କଂଗ୍ରେସ-ଓ.ଜି.ପି ମିଳତି ସରକାର ହେବ ବୋଲି ଲୋକେ ଏବେଠୁ କହିଲେଣି ।

ଆଜିକାଲି ଧରାଧରିଟା ଆଉ କଥାରେ ସୀମିତ ନୁହେଁ, ବରଂ ପ୍ରଚୁର ଅର୍ଥ କାରବାର ସମ୍ବଳିତ । ଆଗେ ଧରାଧରି କହିଲେ (୧୯୮୦ ମସିହା ପୂର୍ବରୁ) କେହି କ୍ଷମତାଧାରୀଙ୍କର ମୌଖିକ ସୁପାରିଶ ଯଥେଷ୍ଟ ଥିଲା ।

ସେହିପରି ଗତଥର ଓ.ଏ.ଏସ.ପରୀକ୍ଷା ଫଳ ବାହାରିବା ପରେ ପରେ ଧରାଧରି ପଟୁମାନଙ୍କ ଦ୍ୱାରା ବେଶ୍ କିଛି ଅର୍ଥ କାରବାର ଦ୍ୱାରା ଫଳ ପ୍ରଭାବିତ ହୋଇଥିବାର ଆଲୋଚନା ହୋଇଥିଲା । ମାତ୍ର ଚଳିତ ଓ.ଏ.ଏସ ପରୀକ୍ଷା ପୂର୍ବରୁ ଗତଥରର ଟ୍ରିକ୍ ଯାକ ଖୋଲାଖୋଲି ଆଲୋଚନା ହୋଇଥିଲା । କମିଶନଙ୍କ ଜଣେ ସଭ୍ୟାଙ୍କର ବେସାଲିସ୍ ପ୍ରତିବାଦ ଯୋଗୁ ପାଣ୍ଡୋରା ବାକ୍ସଟି ଖୋଲିଯାଇ ଚେୟାରମ୍ୟାନଙ୍କର ଅସଲ ରୂପ ପ୍ରକାଶ ପାଇଲା । ପବ୍ଲିକ୍ ସର୍ଭିସ ଚେୟାରମ୍ୟାନ ପାଇଁ ଓଡ଼ିଶାରେ କ'ଣ ସ୍ୱଚ୍ଛ-ଭାବମୂର୍ତ୍ତି ଥିବା ବ୍ୟକ୍ତି ନାହାନ୍ତି ? କେବଳ ଧରାଧରି ବଳରେ ସବୁ ଅଯୋଗ୍ୟ ଲୋକ ବହୁ ଉଚ୍ଚସ୍ଥାନରେ ଅଧିଷ୍ଠିତ ହୋଇ ରାଜ୍ୟର ସୁନାମରେ କଳଙ୍କ କାଳିମା ଲେପି ସାରିଲେଣି ।

ଧରିତ୍ରୀ - ୪.୭.୨୦୦୧

# ଚାପେଲଙ୍କୁ ଚାପୁଡ଼ା

ସଦ୍ୟପ୍ରସାର/ପ୍ରଚାରିତ ସମ୍ବାଦରୁ ଜଣାଗଲା ଯେ ବିରଞ୍ଚି ମହାରଣା ନାମକ ଜଣେ ବ୍ୟକ୍ତି ଭାରତୀୟ କ୍ରିକେଟ୍ ଦଳର କୋଚ ଗ୍ରେଗ୍ ଚାପେଲଙ୍କୁ ବିମାନ ବନ୍ଦରଠାରେ ଠେଲାପେଲା କରିବା ସହିତ ଚାପୁଡ଼ା ମାରିଲା । ଅବଶ୍ୟ ଆମର ସୁଦକ୍ଷ ପୋଲିସ୍ ବାହିନୀ ତାଙ୍କୁ ସଙ୍ଗେ ସଙ୍ଗେ ଆରେଷ୍ଟ କଲେ ।

ଏଭଳି ଆଚରଣର କାରଣ ସ୍ୱରୂପ ବିରଞ୍ଚି ଯେଉଁ ବୟାନ ଦେଇଛି ତାହା ପ୍ରଣିଧାନ ଯୋଗ୍ୟ ମାତ୍ର ସେଥିପାଇଁ ଜଣେ ସମ୍ମାନନୀୟ ବ୍ୟକ୍ତିଙ୍କୁ ଶାରୀରିକ ଆକ୍ରମଣକୁ ସମସ୍ତେ ନିଶ୍ଚୟ ନିନ୍ଦା କରିବେ ।

ଓଡ଼ିଶା ମାଟିରେ ବାରବାଟୀ ଷ୍ଟାଡିୟମ୍‌ରେ ହେଉଥିବା ଦିନିକିଆ ମ୍ୟାଚରେ ଓଡ଼ିଶାରୁ କୌଣସି ଖେଳାଳୀ ସୁଯୋଗ ପାଇ ନାହାନ୍ତି । ଦେବାଶିଷ ମହାନ୍ତି ଓ ଶିବସୁନ୍ଦର ଦାସଙ୍କ ଭଳି ଯୋଗ୍ୟ ଖେଳାଳୀ ଥାଉଣୁ ତାଙ୍କୁ ପକ୍ଷପାତ କରି ସୁଯୋଗ ଦିଆଗଲା ନାହିଁ । ଅପରପେକ୍ଷରେ ବହୁ ଅସଫଳ କ୍ରୀଡାବିତ୍‌ଙ୍କୁ ସେମାନଙ୍କର ଫର୍ମ ଫେରିବାକୁ ବହୁବାର ସୁଯୋଗ ଦିଆଯିବାର ନଜିର ଅଛି । ଏହା ଓଡ଼ିଶା ପ୍ରତି ତଥା ଓଡ଼ିଆଙ୍କ ପ୍ରତି ଚରମ ଅବହେଳା ନୁହେଁ କି ?

ଗୁଜୁରାଟ, ପଞ୍ଜାବ, ହରିଆନା କିମ୍ବା ପଶ୍ଚିମବଙ୍ଗ ହୋଇଥିଲେ ଏଭଳି ପରିସ୍ଥିତିରେ ବିଶାଳ ଆନ୍ଦୋଳନର ସୂତ୍ରପାତ ହୋଇସାରିଥାନ୍ତା । ଗାଙ୍ଗୁଲିଙ୍କ ବହିଷ୍କାରକୁ ନେଇ ସମଗ୍ର ପଶ୍ଚିମବଙ୍ଗ ସମେତ କେନ୍ଦ୍ରମନ୍ତ୍ରୀ ସ୍ତରରେ ଯେଉଁ ଭଳି ନାଟକମାନ ଅଭିନୀତ ହେଲା, ତାକୁ ଦେଖିଲେ ବିରଞ୍ଚିଙ୍କ କ୍ଷୋଭ ଓଡ଼ିଶାର କ୍ଷୋଭର ପରିପ୍ରକାଶ କହିଲେ ଅତ୍ୟୁକ୍ତି ହେବ ନାହିଁ । ତଥାପି ଓଡ଼ିଶାରେ ପ୍ରତିବାଦର ସ୍ୱର ନାହିଁ କହିଲେ ଚଳେ । ଓଡ଼ିଶା ପ୍ରଦେଶ ଗଠନ ଠାରୁ ଭାରତ ସ୍ୱାଧୀନତା ଲାଭ ଠାରୁ ଓଡ଼ିଶା କ୍ରମାଗତ ପକ୍ଷପାତିତାର ଶିକାର ହୋଇ ଆସିଛି । ଏହାର ପ୍ରମାଣର ତାଲିକା ସୁଦୀର୍ଘ । ଅଳ୍ପଦିନ ତଳେ ଆମର ମୁଖ୍ୟମନ୍ତ୍ରୀ କ୍ଷୋଭ ପ୍ରକାଶ କରି କହିଥିଲେ, ''ଉପାସରକାରଙ୍କ ମାନଚିତ୍ରରେ ଓଡ଼ିଶା ନାହିଁ ।'' ଏହି ଉକ୍ତିର ଗୁରୁତ୍ୱ ଯଥେଷ୍ଟ ବେଶୀ ।

ମାତ୍ର ଦୁଃଖର କଥା, କେନ୍ଦ୍ରରେ କଂଗ୍ରେସ ଦଳ ଶାସନର ମଙ୍ଗୁଆଳ ଥିବାବେଳେ ଆମ ରାଜ୍ୟର ମୁଖ୍ୟ ବିରୋଧିଦଳ କଂଗ୍ରେସ ପଦଚ୍ୟୁତ ହେବା ଭୟରେ ପାଟିରେ ପାଳବିଣ୍ଡା ଦେଇ ତାଳି ମାରୁଛି ।

ଶ୍ରୀ ବିରଞ୍ଚି ମହାରଣା କଳିଙ୍ଗସେନାର ଜଣେ କର୍ମୀ ହୋଇପାରନ୍ତି । ସେ ଓଡ଼ିଆ ଓ ଓଡ଼ିଶା ପ୍ରେମୀ । ତାଙ୍କର ପ୍ରତିବାଦ ପ୍ରତି ଓଡ଼ିଶାର ସମର୍ଥନ ଥିଲେ ମଧ୍ୟ କୌଣସି ପ୍ରକାର ହିଂସାଚରଣକୁ କେହି ସମର୍ଥନ କରିବେ ନାହିଁ । ତା'ଛଡା କୋଚ୍ ଚାପେଲ୍ ଜଣେ ବିଦେଶୀ ଏବଂ ଆମର ଅତିଥି । ଖେଳାଳୀ ନିର୍ବାଚନରେ ତାଙ୍କର ଭୂମିକା କିଛି ନାହିଁ । ତାଛଡା ନିର୍ବାଚକଙ୍କ ଦଳରେ ଓଡ଼ିଶାର ଜଣେ ପୂର୍ବତନ ଖେଳାଳୀ ରଞ୍ଜିବ ବିଶ୍ୱାଳ ଅଛନ୍ତି । ବରଂ ଓଡ଼ିଶା ପ୍ରତି ଅବିଚାର ପାଇଁ ତାଙ୍କୁ ଉତ୍ତରଦାୟୀ କରାଯାଇପାରେ ।

ପୁଣି ପ୍ରଶ୍ନ ଉଠେ ବିରଞ୍ଚିଙ୍କ ସ୍ଥାନରେ ଜଣେ ସନ୍ତ୍ରାସବାଦୀ ମଧ୍ୟ ନିରାପତ୍ତାବଳୟ ଭେଦ କରି ବହୁ ଅଘଟଣ ଘଟାଇ ପାରିଥାନ୍ତା । ତା ହେଲେ ଆମ ଦେଶର ଅବସ୍ଥା କ'ଣ ହୋଇଥାନ୍ତା ? ଏହି ଘଟଣାରେ ଓଡ଼ିଶା ପୋଲିସ୍‌ର ଦକ୍ଷତା ଉପରେ ଯେଉଁ ପ୍ରଶ୍ନବାଚୀ ଲାଗିଲା, ତାହା ଅତୀବ ନିନ୍ଦନୀୟ । ପୋଲିସ୍ ନିଜର ଦାୟିତ୍ୱ ହୀନତାରୁ ମୁକ୍ତ ହୋଇ ପାରିବନାହିଁ ।

ବିଧାନ - ୪.୨.୨୦୦୭

# ସାରେ ଜହାଁସେ ଅଚ୍ଛା

ଅଷ୍ଟମ ଶ୍ରେଣୀରେ ପଢ଼ିବା ବେଳକୁ ରାବଣେଶ୍ୱର ରାଉତରାୟ ଓରଫ୍ ରାବଣା ବହେ ଡେଙ୍ଗା ହୋଇଗଲାଣି । ତା' କ୍ଲାସର ପିଲାମାନେ ତାକୁ ସାଇଜ ବିଚାରରେ ରାବଣା ଭାଇ ବୋଲି ଡାକନ୍ତି । ଖାଲି ସେତିକି ନୁହେଁ, ଯାହାର ଯାହା ଅଭିଯୋଗ ଆଗ ରାବଣା ପାଖକୁ ଆସେ । କାରଣ ରାବଣା ଦୀର୍ଘ ତିନିବର୍ଷ ହେଲା ସେହି ଅଷ୍ଟମରେ ଅଟକି ଥିବାରୁ ସେ ଯେ ତା' ସାଙ୍ଗ ମାନଙ୍କଠାରୁ ବୟସ୍କ, ବଳୁଆ ଓ ଧୂର୍ତ୍ତ ଥିଲା; ଏଥିରେ ସନ୍ଦେହ ନାହିଁ । ପ୍ରଧାନ ଶିକ୍ଷକ କିମ୍ବା ଶ୍ରେଣୀ ଶିକ୍ଷକଙ୍କୁ କେହି ତା ବିରୁଦ୍ଧରେ ଫେରାଦ ଦେଲେ, ସେ ଦିନ ତା କଥା ସରିଲା । କ୍ଲାସରୁ ବାହାରିବା ମାତ୍ରେ ରାବଣା ସେ ପିଲାଟାକୁ ମୂଷାକୁ ବିଲେଇ ଧରିବା ଭଳି ଖାପ୍ କରି ଧରିନେବ । କାନ ଧରି ଶହେଥର ବସ୍ ଉଠ୍ କରାଇବାଠାରୁ ଆହୁରି ନୂଆ ନୂଆ ଦଣ୍ଡ ଉଦ୍ଭାବନ କରି ସଫଳ ପ୍ରୟୋଗ କରିବ ।

ଆଜିକାଲି ଚୋର ଓ ଡକାୟତ ମାନଙ୍କୁ ଚିହ୍ନଟ ପରେଡରେ ଚିହ୍ନାଇଦେଲେ, ଡକାୟତ ଦାନ୍ତ କଡମଡ କରି କହୁଛି-ରହ ମୁଁ ଜାମିନ୍‌ରେ ଆସିଲେ ଆଗ ତତେ ହାଣିବି । କିଏ ତୋ ପିଠରେ ପଡ଼ିବ ମୁଁ ଦେଖିବି । ଏହି ମହତ୍ ଶିକ୍ଷାଟି ଫିଲିମ୍ ସୌଜନ୍ୟରୁ ଆମ ଦେଶରେ ସର୍ବତ୍ର ପ୍ରସାର ଲାଭ କଲା । ସେହିଭଳି ଘଟଣା କେତେଜାଗା ଘଟିବା ପରେ ଲୋକେ ଆଉ ଗୁଣ୍ଡା, ବଦମାସ୍‌ଙ୍କୁ, ଡକାୟତଙ୍କୁ ପୋଲିସ୍ ଓ ମାଜିଷ୍ଟ୍ରେଟ୍‌ଙ୍କ ଆଗରେ ନ ଚିହ୍ନାଇ କହୁଛନ୍ତି- ନା ସେ ଲୋକ ୟା ଭିତରେ ନାହିଁ । ମତ୍‌ଲବ୍ ହେଲା - ଚାରି ଆଠ ଦିନେ ଜାମିନ୍‌ରେ ଆସିଲେ - ଏ ବଦମାସ୍ ମତେ ଆଉ ରଖିବ ? ମୋର ଓ ମୋ ପିଲାଛୁଆଙ୍କ ଅବସ୍ଥା ଦି'ଗଣ୍ଡା ଦି'କଡା କରିଦେବ ।

ଆମର ପ୍ରଚଳିତ ଆଇନ୍‌ରେ ଗୋଟାଏ ସନ୍ତ୍ରାସବାଦୀ ବା ଡକାୟତର ଜୀବନ ତୁଳନାରେ ଶହେଟା ସାଧାରଣ ଜନତା, ପୋଲିସ୍, କିମ୍ବା ଜବାନଙ୍କ ଜୀବନ ତୁଚ୍ଛ । କିଛି ନ ହେଲେ ଦେଶଦ୍ରୋହୀଙ୍କ ତ୍ରାଣକର୍ତ୍ତା, ଧରମ ମଉସା ମାନବ ଅଧିକାର କମିଶନ୍ ଅଛି ।

ସେହିଭଳି ରାବଣା ବିରୁଦ୍ଧରେ ଅଭିଯୋଗଟାଏ ହେଲେ ଦଣ୍ଡ ମାଡି ମାଡି ପାଞ୍ଚଦଶ ପାହାର । ଫୁ... ସେଇଟା ରାବଣା ପାଇଁ କିଛି ନୁହେଁ- ତାପରେ ?

ବାପା ମା'ଙ୍କର ଶତ ପ୍ରଯତ୍ନ ସତ୍ତ୍ୱେ ରାବଣାର ବ୍ୟବହାରରେ କିଛି ପରିବର୍ତ୍ତନ ହେଲା ନାହିଁ । ଶେଷକୁ ଯାଇ ଯାଇ ରାବଣା ଅଟକିଗଲା ଦଶମ ଶ୍ରେଣୀ ବୋର୍ଡ ପରୀକ୍ଷା ନାମକ ହମ୍ପ ପାଖରେ । ଚାରିଥର ପରୀକ୍ଷାରେ ବସିବା ପରେ ଯେତେବେଳେ ସେ ଫେଲ୍ ହେଲା-ବାପା ରାଧୁ ରାଉତରାୟ ଖୁବ୍ ହତାଶ ହେଲେ ।

ମୁଁ ବଞ୍ଚିଥିବାଯାଏ ସିନା ଏ ହତଭାଗାଟା ଯାହା ଯେମିତି ଚଳିଯିବ । ହେଲେ ମୋ ଅନ୍ତେ? ପତ୍ନୀଙ୍କୁ ପଚାରନ୍ତି ରାଧୁ ରାଉତରାୟ । ଉଭୟଙ୍କର ସେହି ଗୋଟିଏ ଚିନ୍ତା । କେମିତି ଅମଣିଷଟା ପାଠ ଦି' ଅକ୍ଷର ପଢ଼ନ୍ତା ! ପିଲା ବହିପତ୍ର ଦି'ଖଣ୍ଡ ମାଗି ମେହେନତ କରି ପାଠପଢ଼ି ମଣିଷ ହୋଇ ଯାଉଛନ୍ତି । ଯାକୁ କିଛି ଭଲ ବୁଦ୍ଧି ଦିଶୁନାହିଁ? ନିଜ ପେଟ ପୋଷିବାକୁ କିଛି ଗୋଟାଏ ବାଟ ଧରନ୍ତା । କେବଳ ବଗୁଲିଆମି, ଗୁଣ୍ଡାମିରେ ସବୁବେଳେ ମାତିଲା ! ନାହିଁ ନଥିବା କେଶ୍ ଆଣି ଘରେ ପୂରେଇଲା । ତା ଯୋଗୁ ମୁଁ ଆଉ ମୁଣ୍ଡଟେକି ବାଟ ଚାଲି ପାରୁନାହିଁ ।

ରାଧୁ ରାଉତରାୟ ଆଉ ନାହାନ୍ତି । କେବେଠୁ ସ୍ୱର୍ଗବାସୀ ହେଲେଣି । ସେ ଯଦି ଆଜି ବଞ୍ଚିଥାଆନ୍ତେ, ଆନନ୍ଦରେ ଫାଟି ପଡୁଥାଆନ୍ତେ । ତାଙ୍କର ସେ ଦିନର ସେହି ଗୁଣ୍ଡା, ଅପାଠୁଆ, ବଗୁଲିଆ ପୁଅ ରାବଣା ଆଜି ଏ ରାଜ୍ୟର ଜଣେ ମାନ୍ୟବର ବିଧାୟକ । ଯୋଗ୍ୟତା ଦୃଷ୍ଟିରୁ ତାର ନାଁ ଯାଇଛି ମନ୍ତ୍ରୀ ହେବାକୁ ।

ଆଜି ସମଗ୍ର ଭାରତବର୍ଷରେ ରାଜ୍ୟ ବିଧାନସଭା ଓ ପାର୍ଲିଆମେଣ୍ଟ ଭବନରେ ଏହି ରାବଣା ଓରଫ୍ ରାବେଣେଶ୍ୱର ମାନଙ୍କର ନଗ୍ନ ଦାଣ୍ଡବ ଚାଲିଛି । ସେମାନେ ମାନ୍ୟବର ଲୋକ ପ୍ରତିନିଧି, ଯେଉଁମାନେ ଜୀବନରେ ଦିନେ ଆଇନ୍‌କୁ ସମ୍ମାନ ଦେଇ ଶିଖିନାହାନ୍ତି, ସେଇମାନେ ଆଜି ଆଇନ୍ ତିଆରି କରୁଛନ୍ତି ।

ଆଇନ୍ କରୁଛନ୍ତି ସେମାନଙ୍କୁ ଶାସନ କରିବାକୁ, ଯେଉଁମାନଙ୍କୁ ଦେଖି ଦିନେ ରାଧୁ ରାଉତରାୟମାନେ କ୍ଷୋଭରେ ମ୍ରିୟମାଣ ହୋଇ କହୁଥିଲେ- ଆହା, ଏଇଭଳି ସନ୍ତାନଟିଏ ଭଗବାନ ମୋତେ ଦେଇଥାନ୍ତେ ହେଲେ । ଯେଉଁମାନେ ଲୁହ-ଲହୁ ଦେଇ ଏ ଦେଶର ଜନତାଙ୍କ ମୁହଁରେ ଗଣ୍ଡାଏ ଅନ୍ନ ଦେଉଛନ୍ତି, ଯେଉଁମାନେ ନିଜର ପ୍ରାଣବଳି ଦେଇ ଏ ଦେଶକୁ ରକ୍ଷା କରୁଛନ୍ତି ।

ରାବଣ-ଶାସନରେ ଖୁବ୍ ଉଚ୍ଚ ସ୍ୱରରେ ଚାରିଆଡେ ରେକର୍ଡ ବାଜୁଛି-"ସାରେ ଜହାଁସେ ଆଚ୍ଛା ହୈ ହିନ୍ଦୁସ୍ତାଁ ହମାରା- ।"

ମାତ୍ର ରାମରାଜ୍ୟ ସୁଦୂର ପରାହତ !

ରାଷ୍ଟ୍ରଦୀପ - ୧୫.୧୨.୨୦୦୩

# ଶିକାର 'ମୃଗୟା'ର ଦ୍ୱିତୀୟ ପ୍ରସ୍ଥ

ସମ୍ପ୍ରତି ବହୁଚର୍ଚ୍ଚିତ ଷ୍ଟେନ୍‌ସ୍ ପୋଡି ମାମଲାର ରାୟ ପ୍ରକାଶ ପାଇଲା । ସାକ୍ଷ୍ୟପ୍ରମାଣରୁ ଅପରାଧୀ ବିବେଚିତ ଦାରା ସିଂକୁ ମୃତ୍ୟୁଦଣ୍ଡରେ ଦଣ୍ଡିତ କରାଯିବା ସହିତ ତା'ର ବାରଜଣ ସହଯୋଗୀଙ୍କୁ ଆଜୀବନ କାରାଦଣ୍ଡ ଦିଆଗଲା ।

ଗତ ସେପ୍ଟେମ୍ବର ୧୫ ତାରିଖ ଦାରା ସିଂ କେଶ୍ ରାୟ ପ୍ରକାଶ ପାଇବାର ଘୋଷଣା କରାଯାଇଥିଲା । ସେଥିପାଇଁ ସେ ଦିନ ଭୁବନେଶ୍ୱରରେ ରବି ଟକିଜ୍ ଛକରୁ କଳ୍ପନା ଛକ ଯାଏ ୧୪୪ ଧାରା ଜାରି କରାଯିବା ସହିତ ସେ ଅଞ୍ଚଳ ଏକ ପୋଲିସ୍ ଛାଉଣୀରେ ପରିଣତ ହେଲା । କେବଳ ସେତିକି ନୁହେଁ, ସମଗ୍ର ମୟୁରଭଞ୍ଜ ଜିଲ୍ଲାରେ ଅଭୂତପୂର୍ବ ପୋଲିସ୍ ସୁରକ୍ଷା ବ୍ୟବସ୍ଥା କରାଗଲା । ବାରିପଦା ସହର ମଧ୍ୟ ପୋଲିସ୍ ଛାଉଣୀରେ ପରିଣତ ହେଲା । ପୁନଶ୍ଚ ୨୨ ତାରିଖରେ ସେହିଭଳି ପୋଲିସ୍ ବ୍ୟବସ୍ଥା କରାଗଲା ।

ଏଠାରେ ପ୍ରଶ୍ନ ଉଠେ, ଜଣେ ଅପରାଧୀର ଦଣ୍ଡବିଧାନର ଶୁଣାଣି ପାଇଁ ଏ ପୋଲିସ୍ ବ୍ୟବସ୍ଥା କାହିଁକି ? ଏଥିପୂର୍ବରୁ ଯେତେ ଅପରାଧୀଙ୍କର ଦଣ୍ଡାଦେଶ ହୋଇଛି, ସବୁବେଳେ କ'ଣ ଏହଭଳି କରାଯାଇଥିଲା ? ଏହାର ନିର୍ଦ୍ଦିଷ୍ଟ ଉତ୍ତର ନା । ତେବେ ଏହା ପଛରେ କେଉଁ ଅକୁହା ଘଟଣା ରହିଗଲା, ଯେଉଁଥିପାଇଁ ସମଗ୍ର ଶାସନକଳ ଆତଙ୍କିତ ହେଲା ?

ଖବରରୁ ଜଣାଗଲା ଯେ, ଷ୍ଟେନ୍‌ସ୍ ଜଣେ ଧର୍ମପ୍ରଚାରକ ଥିଲେ । ସେ ଦରିଦ୍ର, ସରଳ ଆଦିବାସୀମାନଙ୍କୁ ଅର୍ଥର ପ୍ରଲୋଭନ ଦେଖାଇ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରାଉଥିଲେ । ଖ୍ରୀଷ୍ଟିଆନ ହେବା ମାତ୍ରେ ସେମାନଙ୍କୁ ଗୋ-ମାଂସ ଖାଇବାକୁ ବାଧ୍ୟ କରାଯାଉଥିଲା । ଧର୍ମ ସହିତ ଗୋ-ମାଂସ ଖାଇବାର ଉଦ୍ଦେଶ୍ୟ କ'ଣ ? ଏହା ଫଳରେ ସେମାନେ ଧର୍ମଚ୍ୟୁତ ଓ ଜାତିଚ୍ୟୁତ ହେବେ ଏବଂ ସ୍ଥାନୀୟ ହିନ୍ଦୁଙ୍କ ଠାରୁ ଚିରକାଳ ପାଇଁ ଅଲଗା ହୋଇଯିବେ । ତା'ଛଡା ଖ୍ରୀଷ୍ଟଧର୍ମ ଗ୍ରହଣ କରୁଥିବା ରମଣୀ,

ଯୁବତୀମାନଙ୍କୁ ପ୍ରଲୋଭନ ଅଥବା ଭୟ ଦେଖାଇ ସେ ଧର୍ଷଣ କରୁଥିଲେ । ଏଥିପାଇଁ ସ୍ଥାନୀୟ ଆଦିବାସୀ ଓ ଅଧିବାସୀମାନେ ଷ୍ଟେନ୍‌ସ୍‌ଙ୍କୁ ଭୟଙ୍କର ଘୃଣା ଦୃଷ୍ଟିରେ ଦେଖୁଥିଲେ ।

ଏହି ପୁଞ୍ଜିଭୂତ ଅସନ୍ତୋଷ ମନୋହରପୁର ଏବଂ ଆଖପାଖ ଅଞ୍ଚଳକୁ ଏକ ବାରୁଦଗଦାରେ ପରିଣତ କରିଥିଲା । ତେଣୁ ବାରୁଦ ଗଦାରେ ଦାରା ସିଂକୁ ହୁଏତ କେବଳ ଅଗ୍ନିସଂଯୋଗର ସୁଯୋଗ ମିଳିଲା । ଧର୍ମପ୍ରଚାରରେ ବାଧା ଉପୁଜିବାରୁ ସେହି ସମୟରେ ଆହୁରି କେତେକ ଯୁବକଙ୍କୁ ମିଛ କେଶ୍‌ରେ ସଂପୃକ୍ତ କରି ଦଣ୍ଡିତ କରାଇବାକୁ ଯେଉଁ ନନ୍ ଜଣକ ନିଜେ ନିଜର ଯୌନାଙ୍ଗକୁ କ୍ଷତବିକ୍ଷତ କରି ତାଙ୍କୁ ଗଣ ଧର୍ଷଣ କରାଯାଇଛି ବୋଲି ଅଭିଯୋଗ କରିଥିଲେ ଏବଂ ଡାକ୍ତରୀ ରିପୋର୍ଟରେ ତାଙ୍କ ଅଭିଯୋଗ ମିଥ୍ୟାବୋଲି ପ୍ରମାଣିତ ହୋଇଥିଲା, ତାଙ୍କୁ ଦଣ୍ଡବିଧାନ କରାଗଲା କି ? ସେତିକି ନୁହେଁ, ଡାକ୍ତର ରିପୋର୍ଟ ଦେଲେ ଯେ ନନ୍ ଜଣଙ୍କର ବହୁ ଯୌନ ଉପଭୋଗର ଅଭିଜ୍ଞତା ଅଛି ।

ଯଦି ଷ୍ଟେନ୍‌ସ୍ ନିର୍ଦ୍ଦୋଷ ଏବଂ ଦାରା ସିଂ ଜଣେ ନିଛକ ଅପରାଧୀ ତେବେ ମୟୁରଭଞ୍ଜ ଏବଂ ଅନ୍ୟଆଡେ 'ଦାରା ସେନା' ଗଠନ କେବେହେଲେ ସମ୍ଭବ ହୋଇନଥାନ୍ତା କିମ୍ବା ଆସନ୍ତା ୩୦ ତାରିଖ ଯାଏ ମୟୁରଭଞ୍ଜ ଜିଲ୍ଲାକୁ ପୋଲିସ୍ ଛାଉଣୀରେ ପରିଣତ କରାଯାଇ ନଥାନ୍ତା । ଏହି ପରିପ୍ରେକ୍ଷୀରେ ସ୍ୱର୍ଗତଃ ଭଗବତୀ ଚରଣ ପାଣିଗ୍ରାହୀଙ୍କର ଅମର ଚରିତ୍ର ଘିନୁଆଁ ସ୍ମୃତିକୁ ଆସେ । 'ମୃଗୟା' ନାମରେ ସିନେମା ହୋଇ ସମଗ୍ର ଭାରତକୁ ଚେତନା ସ୍ତରରେ ଉଜ୍ଜୀବିତ କରିଥିବା ଘିନୁଆଁ ମଧ୍ୟ ନରହତ୍ୟା ଅପରାଧରେ ଅପରାଧୀ । ବାଘମାରି ପୁରସ୍କାର ପାଇଥିବା ଘିନୁଆଁ ଗୋଟିଏ ଅତ୍ୟାଚାରୀ ସାହୁକାରର କଟାମୁଣ୍ଡ ନେଇ ଅଧିକ ପୁରସ୍କାର ପାଇବାକୁ ସାହେବଙ୍କୁ ଦେଖାଇଛି- କାରଣ ସେ ସାହୁକାରଟା ଗୋଟାଏ ବାଘ ଠାରୁ ଆହୁରି ରକ୍ତପିପାସୁ, ଆହୁରି ଭୟଙ୍କର ଥିଲା । ନରହତ୍ୟା ଅପରାଧରେ ଅପରାଧୀ ଦାରା ସିଂକୁ ଘିନୁଆଁ ସହିତ ତୁଳନା କରି ବୁଦ୍ଧିଜୀବୀମାନେ ଆଲୋଚନା କରୁଥିବାର ଜଣାଯାଏ । ଦାରା-ସଂପୃକ୍ତ ରୋଗର ଉପଶମ ପାଇଁ ତା'ର ମୂଳ ଉତ୍ସକୁ ଜାଣି ପ୍ରତିକାର କରିବା ଉଚିତ୍ । ଗୋଟିଏ ଦାରାକୁ ଫାଶୀଦଣ୍ଡରେ ଦଣ୍ଡିତ କଲେ କାଲି ଶହେ ଦାରା ସୃଷ୍ଟି ହେବେ । ଏହି ଦେଶର ଆଇନ୍‌ରେ ଏହି ଦେଶର ସରକାର କେତେ ଲୋକଙ୍କୁ ଫାଶୀ ଦେଇ କ'ଣ ଶ୍ମଶାନ ଉପରେ ଶାସନ ଚଳାଇବେ ?

ଯେ ପର୍ଯ୍ୟନ୍ତ ଷ୍ଟେନ୍‌ସ୍‌ମାନେ ସେମାନଙ୍କର କଳେବଳେ କୌଶଳେ ଅଧର୍ମ ପ୍ରଚାର ବନ୍ଦ ନ କରିଛନ୍ତି, ଯେ ପର୍ଯ୍ୟନ୍ତ ପ୍ରଭୁ ଯୀଶୁଙ୍କ ନାମରେ ଭଣ୍ଡ ମିଶନକାରୀମାନେ ସରଳା ଆଦିବାସୀ ରମଣୀଙ୍କୁ ଧର୍ଷଣ ବନ୍ଦ ନ କରିଛନ୍ତି, ସେ ପର୍ଯ୍ୟନ୍ତ ଦାରାମାନେ ଷ୍ଟେନ୍‌ସ୍‌ମାନଙ୍କୁ ପୋଡି ମାରିବାକୁ ଉର୍ବର ଭିତ୍ତିଭୂମି ପାଉଥିବେ । କାରଣ ଷ୍ଟେନ୍‌ସ୍‌ଙ୍କ ଗାଡିରେ ନିଆଁ ଲଗାଇବାର ବହୁ ପୂର୍ବରୁ ପ୍ରତିଶୋଧର ନିଆଁ, ପ୍ରତିରୋଧର ନିଆଁ ଚତୁର୍ଦ୍ଦିଗରେ ଜଳିଉଠି ବହୁ ହୃଦୟକୁ ଜଳନ୍ତା ଅଙ୍ଗାରରେ ପରିଣତ କରି ସାରିଥିଲା । ଏହା ସର୍ବୋପରି ଏକ ସାମାଜିକ ସମସ୍ୟା, କେବଳ ଆଇନକାନୁନ୍ ସମସ୍ୟା ନୁହେଁ । ତେଣୁ ଏହି ମୂଳରୋଗର ନିରାକରଣ ପାଇଁ ଅବାଧ ଧର୍ମାନ୍ତରୀକରଣ ଏବଂ ସେହି ନାମରେ ଯୌନ ଶୋଷଣ ବନ୍ଦ କରାଯିବା ଉଚିତ୍ । କାହାରି ପ୍ରଭାବରେ ଆଇନ୍ ଏକତରଫା ଦୋଷରେ ଦୋଷଯୁକ୍ତ ହେବା ଉଚିତ୍ ନୁହେଁ ।

ରାଷ୍ଟ୍ରଦୀପ - ୧୦.୧୨.୨୦୦୩

# ହିନ୍ଦୁ ଆତ୍ମଘାତୀ ବାହିନୀ : ଏକ ଐତିହାସିକ ଆବଶ୍ୟକତା

ଭାରତ ଉପରେ କ୍ରମାଗତ ସନ୍ତ୍ରାସବାଦୀମାନଙ୍କର ଆକ୍ରମଣରେ ବ୍ୟଥିତ ଓ କ୍ଷୁବ୍ଧ ହୋଇ ଅଳ୍ପଦିନ ପୂର୍ବରୁ ଶିବସେନା ମୁଖ୍ୟ ବାଲସାହେବ ଠାକ୍ରେ ମତଦେଲେ ଯେ ଭାରତରେ 'ହିନ୍ଦୁ ଆତ୍ମଘାତୀ ବାହିନୀ' ଗଢ଼ା ହେଲେ ସନ୍ତ୍ରାସବାଦର ସଫଳ ମୁକାବିଲା କରାଯାଇ ପାରିବ । ଏତିକିରେ କଥାକଥିତ ଭଣ୍ଡ ସେକୁଲାରବାଦୀମାନେ ଦାରୁଣ ଆଘାତ ପାଇଲେ । ବିଲୁଆ ରଡି ଦେବାଭଳି ଥୋକେ ରଡି ଦେଲେ 'ବାଲ ସାହେବଙ୍କୁ ଆରେଷ୍ଟ କର', 'ତାଙ୍କ ପ୍ରତି ଦଣ୍ଡ ବିଧାନ କର ଇତ୍ୟାଦି' । ମହାରାଷ୍ଟ୍ରର ଉପ-ମୁଖ୍ୟମନ୍ତ୍ରୀ ଛଗନ ଭୁଜବଳ, ଯିଏ କି ଅଳ୍ପଦିନ ପୂର୍ବରୁ ଶିବସେନା ଛାଡି ନିଜ ସ୍ୱାର୍ଥ ପାଇଁ ଏନ.ସି.ପି. ସହିତ ମିଶିଲେ ସେ ଘୋର ପ୍ରତିକ୍ରିୟା ପ୍ରକାଶ କଲେ । ଏହା ଉପରେ ଆଲୋଚନା ହେଲା ନାହିଁ କେବଳ ନିନ୍ଦା କରାଗଲା । ବାଘ ଦେଖିଲେ ଛେଳି, ମେଣ୍ଢା ପଲ ହୁରୁଡ଼ିବା ଭଳି 'ହିନ୍ଦୁ' ଶବ୍ଦ ଲାଗିଥିବାରୁ ତଥାକଥିତ ବୁଦ୍ଧିଜୀବୀମାନେ ମଧ୍ୟ ଏ ବିଷୟରେ ସ୍ୱାର୍ଥହାନି ଆଶଙ୍କାରେ ଆଲୋଚନା କରବାକୁ ସାହସ କଲେ ନାହିଁ ।

ସୈନ୍ୟବାହିନୀ ଭିତରେ ଆତ୍ମଘାତୀ ବାହିନୀ ଗଠନ ବହୁତ ପୁରୁଣା କଥା । ମହାଭାରତରେ ଅଛି- ଅଭିମନ୍ୟୁ ବଧ ଦିନ ସଂଶପ୍ତକ ବାହିନୀ ଘେରରେ ଅର୍ଜୁନ ରହିଗଲେ । ତେଣୁ ସେ ଯୁଦ୍ଧରେ ଅଭିମନ୍ୟୁକୁ ସାହାଯ୍ୟ କରି ପାରିଲେ ନାହିଁ । ସଂଶପ୍ତକ ବାହିନୀକୁ ସମୂଳ ଧ୍ୱଂସ କରି ଆସିବା ବେଳକୁ ବହୁତ ବିଳମ୍ବ ହୋଇ ସାରିଥିଲା । ସେହି ସଂଶପ୍ତକ ବାହିନୀ ଆତ୍ମଘାତୀ ବାହିନୀ ଥିଲା ।

ମୃତ୍ୟୁ ନିଶ୍ଚିତ ଜାଣି ମଧ୍ୟ କୌଣସି ଦୁଃସାହସିକ କାମ କରିବା, ଶତ୍ରୁ ପକ୍ଷର ବିପୁଳ କ୍ଷତି ସାଧନ୍ କରିବା, ଶତ୍ରୁ ଦେଶରେ ସନ୍ତ୍ରାସବାଦ କାର୍ଯ୍ୟ ଦ୍ୱାରା ଭୟ ସଂଚାର କରିବା ଆତ୍ମଘାତୀର କାର୍ଯ୍ୟ । ଅଧୁନା ପାକିସ୍ତାନ ପ୍ରାୟୋଜିତ ଆତ୍ମଘାତୀମାନେ ଭାରତର ଜନଗହଳି ସ୍ଥାନରେ, ଦେବପୀଠରେ ନରସଂହାର କରି ଜନସାଧାରଣଙ୍କ ମନରେ

ଭୀତି ସଂଚାର କରୁଛନ୍ତି । ବିଭିନ୍ନ ସଂପ୍ରଦାୟ ମଧ୍ୟରେ ଅବିଶ୍ୱାସ ଓ ତିକ୍ତତା ଭାବ ସୃଷ୍ଟି କରୁଛନ୍ତି ଏବଂ ଭାରତର ବିପୁଳ ଅର୍ଥନୀତିକ କ୍ଷତି କରିବା ସହିତ ନେତୃବୃନ୍ଦଙ୍କୁ ହତ୍ୟା କରିବାକୁ ଷଡ଼ଯନ୍ତ୍ର କରୁଛନ୍ତି ।

ଏକଦା ଭାରତରେ ମୋଗଲ ଓ ମୁସଲମାନମାନଙ୍କ ଅକଥନୀୟ ଅତ୍ୟାଚାରକୁ ପ୍ରତିହତ କରିବା ପାଇଁ ଯେଉଁ ଆତ୍ମଘାତୀ ବାହିନୀ ଗଠିତ ହୋଇଥିଲା- ସେମାନଙ୍କ ନାମ ହେଲା ଶିଖ୍ । ପ୍ରତ୍ୟେକ ହିନ୍ଦୁ ପରିବାର ଦେଶ, ଜାତି ଓ ଧର୍ମକୁ ରକ୍ଷା କରିବାକୁ ନିଜର ଜ୍ୟେଷ୍ଠ ସନ୍ତାନକୁ ଶିଖପନ୍ଥପାଇଁ ଉତ୍ସର୍ଗ କରିଥିଲେ । ସେତେବେଳେ ତାହାର ଆବଶ୍ୟକତା ଅଲଙ୍ଘନୀୟ ଥିଲା । ତାହା ଥିଲା ଇତିହାସର ଦାବି, ସମୟର ଦାୟ ।

ହିନ୍ଦୁସ୍ଥାନର ପ୍ରତ୍ୟେକ ଅଧିବାସୀ ହିନ୍ଦୁ । ଆମର ଭାଇମାନେ ସମସ୍ତେ ଏ କଥା ବୁଝନ୍ତୁ । ମାତ୍ର ଅଳ୍ପ କେତେ ବର୍ଷ ପୂର୍ବରୁ ଲୋଭ କିମ୍ବା ଚାପର ବଶବର୍ତ୍ତୀ ହୋଇ ହିନ୍ଦୁମାନଙ୍କ ମଧ୍ୟରୁ କେତେକ ମୁସଲମାନ ବା ଖ୍ରୀଷ୍ଟିଆନ୍ ହୋଇଛନ୍ତି । ତେଣୁ ମୁସଲମାନ ବା ଖ୍ରୀଷ୍ଟିଆନ୍ ହେଲେ କେହି ବିଦେଶୀ ହୋଇ ଯାଆନ୍ତି ନାହିଁ ବା ବିଦେଶୀ ନୁହନ୍ତି । ମାତ୍ର ଅଶିକ୍ଷା ବା କୁଶିକ୍ଷାରୁ ବହୁ ଲୋକ ସେହି ଧାରଣାର ବଶବର୍ତ୍ତୀ ହୋଇ ଥାଆନ୍ତି । ଯେପରି ଉତ୍ତର-ପୂର୍ବ ରାଜ୍ୟରେ କେତେକ ସ୍ଥାନରେ ଏହି ନୂଆ ଖ୍ରୀଷ୍ଟିଆନ୍‌ମାନେ ଭାରତରୁ ଅଲଗା ହୋଇଯିବାକୁ ଆନ୍ଦୋଳନ କରୁଛନ୍ତି । ସେଭଳି କାଶ୍ମୀରରେ କେତେକ ବିପଥଗାମୀ ମୁସଲମାନ ଭାରତରୁ ଅଲଗାହୋଇ ଯିବାକୁ ଜିଦ୍ ଧରି ଶତ୍ରୁଦେଶ ସହିତ ହାତ ମିଳାଇ ଅହରହ ରକ୍ତପାତ କରି ଚାଲିଛନ୍ତି । କ୍ଷୁଦ୍ର ଧର୍ମ ପରିସରରେ ରହି ମାତୃଭୂମିର ଅନିଷ୍ଟ ସାଧନ କରୁଛନ୍ତି ।

ଏହା ମନେରଖିବାକୁ ହେବ ଯେ ଆତ୍ମଘାତୀ ବା ସନ୍ତ୍ରାସବାଦୀ ଦୃଷ୍ଟିରେ ପ୍ରତ୍ୟେକ ହିନ୍ଦୁସ୍ଥାନୀ ହିନ୍ଦୁ, ପ୍ରତ୍ୟେକ ଦେଶପ୍ରେମୀ ହିନ୍ଦୁ । ନଚେତ୍ ସେମାନେ ଫାରୁକ୍ ଅବଦୁଲ୍ଲାଙ୍କୁ ଓ ଜିଲାନୀଙ୍କୁ ହତ୍ୟା କରିବାକୁ ଷଡ଼ଯନ୍ତ୍ର କରନ୍ତେ କାହିଁକି ?

ସନ୍ତ୍ରାସବାଦୀମାନଙ୍କର ସେହି ଚିନ୍ତାକୁ ଆମର ତଥାକଥିତ ସେକୁଲାର ନେତାମାନେ ଇନ୍ଧନ ଯୋଗାଉଛନ୍ତି । ଜଣେ ସେକୁଲାର ନେତା ମୁଲାୟାମ ସିଂ ଯାଦବଙ୍କର ଭୋଟ ବେଳର ସ୍ଲୋଗାନ ଥିଲା - 'ଜୟ ଜବାନ, ଜୟ....'

ରାଷ୍ଟ୍ରଦୀପ - ୧୬.୧୨.୨୦୦୨

# ଭୋଲେବମ୍-ଏକ ଅପସଂସ୍କୃତିର ପ୍ରସାର

କବି ଗଙ୍ଗାଧର ମେହେରଙ୍କ ଗୋଟିଏ ପଦରୁ କିଞ୍ଚିତ ମାତ୍ର ପରିବର୍ତ୍ତନ କରି ବିଷୟଟିର ଆଲୋଚନା ଆରମ୍ଭ କରାଯାଇପାରେ- 'ଶ୍ରାବଣ ଆଗମ ବାରତା ପ୍ରସରିଲା ଭୁବନେ, ବିଚିତ୍ର ବାହୁଙ୍ଗୀ ଶୋଭିତ କାଉଡିଆ ଦର୍ଶନେ ।' କବିଙ୍କ ଭାଷାରେ କୋକିଳର କୁହୁ ସ୍ୱନ ଶୁଣି ବସନ୍ତର ଆଗମନ ବାର୍ତ୍ତା ମିଳିଲା ଭଳି ସେଦିନ ସକାଳେ ପ୍ରାତଃଭ୍ରମଣ କାଳରେ କେଦାରଗୌରୀ ମନ୍ଦିର ପରିସରରେ କେତେ ଜଣ କାଉଡିଆଙ୍କୁ ଦେଖିଲା ପରେ ଶ୍ରାବଣ ମାସ ଆସିଲାଣି ବୋଲି ହଠାତ୍ ମୋ ମନକୁ ସ୍ପର୍ଶ କଲା ।

ଏହି କାଉଡିଆ ପ୍ରଥା ମାତ୍ର ୧୫/୨୦ ବର୍ଷରେ ଆମଦାନି । ଆମ ସଂସ୍କୃତିରେ ବୈଶାଖ ମାସରେ ଜଳାଭାବରୁ ପୂଜ୍ୟ ତୁଳସୀ ବୃକ୍ଷକୁ ବଞ୍ଚାଇ ରଖିବାକୁ ପ୍ରତ୍ୟେକ ଘରେ ବୃନ୍ଦାବତୀ ଉପରେ ବାଉଁଶ ଠେକରା ଦେଇ ସଚ୍ଛିଦ୍ର ଜଳପୂର୍ଣ୍ଣ କଳସୀ ରଖାଯାଏ । ମାତ୍ର ଜଳବହୁଳ ଶ୍ରାବଣ ମାସରେ ଗୋଳିପାଣି ମିଶା ପ୍ରଦୂଷିତ ଜଳକୁ ବହୁଦୂର ବୋହିନେଇ ଜଳାଭିଷେକ କରିବା ଆମ ସଂସ୍କୃତିକୁ ନୂଆ ଆମଦାନି ।

ଏହି ପାଣିଭାର ନେଇ ଯାଉଥିବା ଯୁବକ/ଯୁବତୀମାନଙ୍କ ପାଇଁ ଶ୍ରାବଣ ମାସଟା ଭକ୍ତି ବିବର୍ଜିତ ଗୋଟିଏ ମଉଜ ମଜଲିସ୍‌ର ମାସ ରୂପେ ବର୍ତ୍ତମାନ ପାଳନ କରାଯାଉଛି । ଦଳବଦ୍ଧ ଭାବରେ ସହସ୍ର ସଂଖ୍ୟାରେ ଲକ୍ଷାଧିକ କର୍ମ ବିମୁଖ ସକ୍ଷମ ଯୁବଶକ୍ତି ଅଧଲିଟର ବା ଏକ ଲିଟର ପାଣି କଳସୀରେ ପୂରାଇ କାନ୍ଧରେ ବୋହି ଖାଲିପାଦରେ ଯାଉଥିବା ଦୃଶ୍ୟ ସାଧାରଣ ଜନତାକୁ ଦୃଷ୍ଟିକଟୁ ଲାଗିବା ସ୍ୱାଭାବିକ ।

ରାସ୍ତାଘାଟ ମଳମୂତ୍ରରେ ପ୍ରଦୂଷିତ କରି ଦଳବଦ୍ଧ ଭାବରେ ଗଞ୍ଜେଇ ଟାଣି ଏମାନେ କେଉଁ ସଂସ୍କୃତିର ପ୍ରଚାର କରନ୍ତି ? ପୁଣି ଗୀତ ବଜାଇ ପଛେପଛେ ଗାଡ଼ିମାନ ଖାଦ୍ୟପେୟ, ବସ୍ତ୍ରାଦି ବହନ କରି ଚାଲୁଥିବାର ଦୃଶ୍ୟ ବିରଳ ନୁହେଁ । ଏହିଭଳି ଭକ୍ତିର ଛଦ୍ମ ଆବରଣ ତଳେ ମଉଜ ମଜଲିସ୍ ପ୍ରିୟ ଯୁବଶକ୍ତିକୁ ଦେଖିଲେ ଦୁଃଖ ଲାଗେ, ଦୟା ବି ଲାଗେ । ଲକ୍ଷାଧିକ କର୍ମ ଦିବସକୁ ଏହିଭଳି ନିରର୍ଥକ ଉପାୟରେ ବରବାଦ୍

କରାଯାଉଛି । ରାସ୍ତାରେ ଯାନବାହନାଦି ଯାତାୟତରେ ବାଧା ସୃଷ୍ଟି କରି ଏହି କଥାକଥିତ ଅସଂଖ୍ୟ ଭକ୍ତଙ୍କ ଅବାଧ ବିଚରଣ ମାସ ସାରା ଲାଗି ରହେ । ଏହି ସମୟରେ କଟକ-ଭୁବନେଶ୍ୱର ରାସ୍ତା ସୁପ୍ରଶସ୍ତ ଥିଲେ ହେଁ ରାତି ଅଧରେ ଅତିକ୍ରମ କରିବାକୁ ପ୍ରାୟ ଏକଘଣ୍ଟା ଲାଗିଯାଏ । ତା'ଛଡା ଅକାଳ ମୋକ୍ଷକାମୀ ଏହି କାଉଡିଆଙ୍କ ମଧ୍ୟରୁ ଅନେକ ପ୍ରତିବର୍ଷ ଗାଡି ଚକାତଳେ ଜୀବନ ହରାଉଛନ୍ତି । ଆମ ଗରିବ ରାଜ୍ୟରେ ବାହୁଙ୍ଗୀ ସଜାଇବା ପାଇଁ କେତେ କୋଟି ଟଙ୍କା ବରବାଦ୍ ହେଉଛି । ସେ ଦିଗରେ ଚତୁର ବେପାରୀଙ୍କ କୌଶଳ ଦିନକୁ ଦିନ ବଢ଼ି ଚାଲିଛି । ଏସବୁ ଦେଖିଲେ ଅଜିର ମୁଷ୍ଟିମେୟ ଯୁବମାନସିକତାର ଆଚରଣ ପ୍ରତି କ୍ଷୋଭଜାତ ହୁଏ ।

ଦୈନନ୍ଦିନ ଜୀବନ ଯାତ୍ରାର କର୍ମପ୍ରବଣତାରୁ ପଳାୟନ କରି, ନିଜର ପିତାମାତା, ପତ୍ନୀ, ସନ୍ତାନସନ୍ତତିଙ୍କୁ ଅବହେଳା କରି କେଉଁ ପୁଣ୍ୟାର୍ଜନ ପାଇଁ କାଉଡିଆମାନେ ଏଭଳି ଅଭିଯାନରେ ପ୍ରମତ୍ତ ହୁଅନ୍ତି, ବୁଦ୍ଧିଜୀବୀମାନେ ତାହା ବୁଝିବାକୁ ଅକ୍ଷମ, ବୁଝାଇବାକୁ ଅନିଚ୍ଛୁକ ।

ଏହା ନିଶ୍ଚିତରେ ଆମ ପରମ୍ପରା ବିରୋଧୀ, ସାମାଜିକ ହିତ ବିରୋଧୀ, ଅର୍ଥନୈତିକ ସ୍ୱାର୍ଥ ବିରୋଧୀ । ମାଇକ୍ ଲଗାଇ ଉଚ୍ଚସ୍ୱରରେ ଅଭୀଷ୍ଟ ଦେବତାଙ୍କୁ ଅପଶବ୍ଦ ବ୍ୟଞ୍ଜିତ ଭାଷାରେ ଗଗନ ପବନ ମୁଖରିତ କରି ସମ୍ବୋଧନପୂର୍ବକ ଯେଉଁ ଭକ୍ତି ପ୍ରଦର୍ଶନ କରାଯାଏ, ସେଥିରେ ଭକ୍ତିକୁ ଛାଡ଼ିଦେଲେ କେବଳ ଦେଖେଇ ହେବାର ଏକ କୁତ୍ସିତ ବାସନା ବାରିହୋଇପଡେ । ଦେବଦେବ ମହାଦେବ କ'ଣ ମାଇକ୍-ନିଃସୃତ ଉଚ୍ଚସ୍ୱର ପହଞ୍ଚିବା ଦୂରତ୍ୱରେ ଥାଆନ୍ତି ନା ଭକ୍ତର ଭକ୍ତି ରସାଣିତ ହୃଦୟ ଭିତରେ ?

ତେଣୁ ହେ ଏ ରାଜ୍ୟର ଭକ୍ତବେଶୀ କାଉଡିଆଗଣ ! ତୁମେମାନେ ବରଂ ନିଜ ଘରେ ବସି ସେତିକି ସମୟ ଏକାଗ୍ରଚିତ୍ତରେ ନିଜର ଇଷ୍ଟଦେବତାଙ୍କୁ ସ୍ମରଣ କଲେ, ଆରାଧନା କଲେ ସମାଜର ଅଶେଷ ମଙ୍ଗଳ ସାଧିତ ହେବ । ନିଜ ନିଜର ଆତ୍ମା ମଧ୍ୟ ପରିମାର୍ଜିତ ହେବ । ଏକଥା ତୁମେମାନେ ଯେତେ ଶୀଘ୍ର ହୃଦୟଙ୍ଗମ କରିବ ସମାଜ ଓ ଦେଶର ସେତିକି ମଙ୍ଗଳଦାୟକ ହେବ ।

ପ୍ରଗତିବାଦୀ – ୧୪.୮.୨୦୧୫

# ବହି ଚୟନ ବିବାଦ

ଆମ ରାଜ୍ୟର ସଂସ୍କୃତି ବିଭାଗ ଦ୍ୱାରା ପରିଚାଳିତ ସଂସ୍କୃତି ବିଶ୍ୱବିଦ୍ୟାଳୟର ବହି କିଣା କେଳେଙ୍କାରୀ ବିଳମ୍ବରେ ହେଉ ପଛେ ଲୋକଲୋଚନକୁ ଆସିଲା । ସେହିପରି ରାଜା ରାମମୋହନ ଫାଉଣ୍ଡେସନ୍‌ରେ ବହି କିଣା ପ୍ରସଙ୍ଗ ମଧ୍ୟ ଆଲୋଚନାର ଅପେକ୍ଷା ରଖୁଛି । ବିତର୍କ ହେଲେ ହିଁ ସମସ୍ୟା ଲୋକଲୋଚନକୁ ଆସିବ ଏବଂ ପରିସ୍ଥିତି ସୁଧୁରିବାର ବାଟ ଫିଟିବ ।

ପ୍ରାୟ ଏକ ବର୍ଷ କାଳ କୌଣସି ଫଇସଲା ହୋଇପାରୁନଥିବା 'ବହି ଚୟନ କମିଟି'ର ସଦସ୍ୟଙ୍କ ତାଲିକା ଶେଷରେ ବାହାରିଲା । ତା ପରେ ପ୍ରକାଶକ/ଲେଖକଙ୍କ ମନରେ ଖୁସି ଖେଳି ଯାଇଥିଲେ ମଧ୍ୟ ଦେଖାଗଲା ଏହି କମିଟି ବିରୋଧରେ ବହୁ ମନ୍ତବ୍ୟ ଟୀକା ଟିପ୍ପଣୀ ମଧ୍ୟ ଆସୁଛି ।

ତାଲିକାଟି ଦେଖି ଅନେକ ମନ୍ତବ୍ୟ ଦେଲେ ଯେ ଓଡ଼ିଶାରେ ନୀତିବାନ, ବିଜ୍ଞ ତଥା ସତ୍ ବିଚାର ସମ୍ପନ୍ନ ବ୍ୟକ୍ତିଙ୍କୁ ଜାଣିଶୁଣି ବାହାରେ ରଖି ପକ୍ଷପାତିତା ଓ ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟକୁ ପ୍ରଶ୍ରୟ ଦେବା ସକାଶେ କିଛି ବ୍ୟକ୍ତିଙ୍କୁ ଚୟନ କମିଟିରେ ନିଆଯାଇଛି । ଏହା ଅବଶ୍ୟ ବିତର୍କର ବିଷୟ । କାରଣ କେଉଁ ଆଧାରରେ ଚୟନକାରୀଙ୍କୁ ବଛାଯାଏ ତାର ନିଶ୍ଚୟ କିଛି ମାନଦଣ୍ଡ ଥିବ । କିନ୍ତୁ ଯେତେବେଳେ ଉତ୍ତମ ପରିପାଟୀରେ, ନିର୍ଭୁଲ୍ ଭାବେ ମୁଦ୍ରିତ ତଥା ଉତ୍ତମ କଥାବସ୍ତୁ ସମ୍ବଳିତ ପୁସ୍ତକମାନଙ୍କୁ ଆଡେଇ ଦେଇ କେତେକ ନିମ୍ନ ମାନର ଅବାଞ୍ଛିତ ପୁସ୍ତକକୁ ନିଆଗଲା ସେତିକିବେଳେ ଏକଥା ଅନ୍ତତଃ ସ୍ପଷ୍ଟ ହୋଇଗଲା ଯେ ଯେଉଁ ଚୟନ ପଦ୍ଧତିଟି କାମ କରୁଛି ତାହା ତ୍ରୁଟିପୂର୍ଣ୍ଣ । ଦେଖାଗଲା ଯେ କିଛି ଲେଖକ/ପ୍ରକାଶକମାନଙ୍କ ବହିପ୍ରତି ଆଦୌ ଦୃଷ୍ଟି ଦିଆଯାଇ ନାହିଁ ତ କେତେକ ପ୍ରକାଶକଙ୍କର ଅନେକ ଗୁଡିଏ ବହି ନିର୍ବାଚିତ ହୋଇଛି । ଜଣେ ପ୍ରକାଶକ ଖେଦୋକ୍ତି ପ୍ରକାଶ କରି କହିଲେ ଯେ, ତାଙ୍କର ୧୫ ଖଣ୍ଡ ବହିରୁ ଖଣ୍ଡେ ବି ନିର୍ବାଚିତ ହୋଇ ପାରିଲା ନାହିଁ ।

ତେଣୁ ଏ ପରିପ୍ରେକ୍ଷୀରେ ଲେଖକର ବିନମ୍ର ନିବେଦନ ହେଲା ପୁସ୍ତକ ଚୟନ ପ୍ରକ୍ରିୟାକୁ ଉଚ୍ଚମାନର ତଥା ନିର୍ବିବାଦୀୟ କରିବାକୁ ହେଲେ ସମ୍ପୂର୍ଣ୍ଣ ନୂତନ ପନ୍ଥା

ଅନୁସରଣ କରି 'ମାର୍କିଂ' ବ୍ୟବସ୍ଥା ପ୍ରଚଳନ କରାଯିବା ଉଚିତ୍ । ତତ୍‌ସହିତ ଚୟନ କର୍ତ୍ତାମାନଙ୍କ ଉପରେ ଉତ୍ତର ଦାୟିତ୍ୱ ରହୁ । ପୁସ୍ତକ ନିର୍ବାଚନ ପାଇଁ କଭର ଡିଜାଇନ, କାଗଜର ମାନ, ପରିଷ୍କାର ମୁଦ୍ରଣ, ନିର୍ଭୁଲ୍ ମୁଦ୍ରଣ ଏବଂ ବିଷୟଗତ ମାନ ପାଇଁ ୧୫, ୧୫, ୧୫, ୧୫ ଏବଂ ୪୦ ନମ୍ବର ରଖାଯାଇ ପ୍ରତ୍ୟେକ ବିଭାଗର ନମ୍ବର ଦିଆଯିବାର ବ୍ୟବସ୍ଥା ରହୁ । ତା ଛଡା ଚୟନ କମିଟିକୁ ୩ ଦିନ ପରିବର୍ତ୍ତେ ୧୦ ରୁ ୧୫ ଦିନ ସମୟ ଦିଆଯାଉ, ଯେପରି ସେମାନେ ପ୍ରତ୍ୟେକ ବହିକୁ ଅନ୍ତତଃ ୧୦ ପୃଷ୍ଠା ପଢ଼ି ତା ଉପରେ ତାଙ୍କର ମନ୍ତବ୍ୟ ଦେବେ । ବିଷୟଗତ ଉତ୍କର୍ଷ ଓ ନିର୍ଭୁଲ୍ ଛାପା ପାଇଁ ଏହି ପ୍ରକ୍ରିୟା ଖୁବ୍ ଉପଯୋଗୀ ହୋଇପାରିବ ବୋଲି ବିଶ୍ୱାସ ।

ଚୟନକର୍ତ୍ତା ପଠିତ ୧୦ ପୃଷ୍ଠା ଉପରେ କେଉଁଠୁ କେତେଦୂର ପଢ଼ିଲେ ସେ ବାବଦରେ ନିଜର ମନ୍ତବ୍ୟ ୩/୪ ଧାଡିରେ ଦେବା ସହିତ କେତୋଟି ମୁଦ୍ରଣଗତ ପ୍ରମାଦ ବା ଭୁଲ୍ ଅଛି ତାହା ଲେଖି ସେହି ମୁତାବକ ନମ୍ବର ଦେଲେ ବହୁ ନିମ୍ନମାନର ବହି ମନକୁ ମନ କଟିଯାଆନ୍ତେ ।

ବର୍ତ୍ତମାନ ଦେଖାଯାଉଛି କେତେକ ଲେଖକ/ପ୍ରକାଶକ ନିତାନ୍ତ ନିମ୍ନମାନର ବହି ଛପାଇ ଧରାଧରି କରି ତାକୁ ନିର୍ବାଚିତ କରାଇ ଦେଉଛନ୍ତି । ତଦ୍ଦ୍ୱାରା କଣ ହେଉଛି ନା ରାଜ୍ୟର ଦୂରଦୁରାନ୍ତର ଲାଇବ୍ରେରି, ଯେଉଁଠାକୁ ଏସବୁ ବହି ପଠାଯାଏ, ସେଠାରେ ପାଠକମାନେ ସେଭଳି ବହି ଖଣ୍ଡେ ପାଇ ଓ ପଢ଼ି ତାହା ହିଁ ଆମ ଓଡ଼ିଆ ଭାଷା ସାହିତ୍ୟର ଏକ ନିର୍ବାଚିତ ତଥା ଉତ୍ତମ ମାନର ବୋଲି ଭାବି ବସୁଛନ୍ତି । ଯେହେତୁ ଓଡ଼ିଶାର ବହୁ ଉପାନ୍ତ ଅଞ୍ଚଳକୁ ଭଲବହି ଯାଏ ନାହିଁ, ଏଭଳି ଧାରଣା ହେବା ଅସ୍ୱାଭାବିକ କି ?

ତେଣୁ ଉପରୋକ୍ତ ପରାମର୍ଶ ପ୍ରତି ସଂସ୍କୃତି ବିଭାଗ ଦୃଷ୍ଟି ଦେଇ ଚୟନ ପ୍ରକ୍ରିୟାକୁ ଅଧିକ ସ୍ୱଚ୍ଛ ଏବଂ ପାରଦର୍ଶୀ କରନ୍ତୁ । ତାଛଡା ପୁସ୍ତକ ଚୟନ ପରେ ତାକୁ ସମୀକ୍ଷା କରିବାକୁ ପ୍ରତ୍ୟେକ ବିଭାଗରେ ଗୋଟିଏ ଗୋଟିଏ ୩ ଜଣିଆ କମିଟି ଗଠନ କରି ଦାୟିତ୍ୱ ଦିଆଯାଉ ।

ଏବେ ଦେଖାଯାଉଛି ଯେ, ଜଣେ ଜଣେ ଲେଖକଙ୍କର ୫/୬ ଖଣ୍ଡ ପୁସ୍ତକ ନିର୍ବାଚିତ ହେଉଛି । ସେଭଳି କରାନଯାଇ ସମସ୍ତଙ୍କ ପାଇଁ ସୁଯୋଗର ଦ୍ୱାରକୁ ସମାନୁପାତରେ ଖୋଲାଯାଉ । ଏଭଳି ନ ହେଲେ ଅନ୍ୟାୟ ଓ ଅନୀତିର ରାଜୁତି ଚାଲିଥିବ ଓ ଆମେ ଅସହାୟ ଭାବରେ ଦୂରେଇ ଠିଆ ହୋଇ କେବଳ ବାଚନିକ ସହାନୁଭୂତି ଦେଖାଉଥିବା ।

ସମ୍ବାଦ - ୧୩.୫.୨୦୦୯

# ଦଗଲ୍ ବାଜିରେ ରାଜନୀତି

ରାଜନୀତିରେ ଦଗଲବାଜି ଊଣାଅଧିକେ ଯୁଗେ ଯୁଗେ ଚାଲିଆସିଛି । ଏହାର ଅନେକ ନଜିର ଆମେ ଇତିହାସରୁ ପାଉ । ତାଛଡ଼ା ରାଜାରାଜୁଡ଼ାଙ୍କ ଶାସନ କାଳରେ ମଧ୍ୟ ଏହି ଉକ୍ତିର ଭୂରି ଭୂରି ପ୍ରମାଣ ମିଳେ । ମାତ୍ର ଆଜିର ଗଣତନ୍ତ୍ରରେ ଦଗଲବାଜି ଭିତରେ ରାଜନୀତି ଉବୁଟୁବୁ ହେଉଛି । ଏହାର ତାତ୍ପର୍ଯ୍ୟ ହେଲା ତରକାରୀକୁ ସ୍ୱାଦିଷ୍ଟ କରିବାକୁ ସେଥିରେ ଟିକିଏ ଲୁଣ ମିଶାଯାଏ । ମାତ୍ର ଆଜି ଲୁଣରେ ତରକାରୀ ଟିକିଏ ମିଶାଇ ଯେଉଁ ଭ୍ରମ ସୃଷ୍ଟି କରାଯାଉଛି - ସେଥିରେ କେମିତି ଜନଜୀବନ ଛଟପଟ ହେଉଛି, ଆମେ ଦେଖୁଥାଇ ।

ଜାନୁଆରୀ ମାସ ୨ ତାରିଖରେ କଳିଙ୍ଗନଗରରେ ଘଟିଥିବା ଗୁଳିକାଣ୍ଡ ଏବଂ ସେଥିରେ ୧ ୨ ଜଣଙ୍କର ପ୍ରାଣହାନି ଘଟିଥିବା ନିଶ୍ଚିତରେ ଅତୀବ ଦୁଃଖଦାୟକ ଘଟଣା । ଗୁଳି କରିବାକୁ ବା ଗୁଳିମାଡ ଖାଇବାକୁ କେହି କେବେ ପ୍ରସ୍ତୁତ ହୋଇ ଯାଇନଥାଏ । ମାତ୍ର ଘଟଣା କ୍ରମେ ଦୁର୍ଘଟଣା ଅକସ୍ମାତ୍ ଘଟିଥାଏ । ପରିସ୍ଥିତି ଅଣାୟତ୍ତ ହୋଇଯାଏ । ତାକୁ ନେଇ ଓଡ଼ିଶାରୁ ଦିଲ୍ଲୀଯାଏ ଏତେ ରାଜନୀତି ହେଲାଣି ଯେମିତି ନେତାମାନଙ୍କର ପ୍ରାଣ କେବଳ କେତେଜଣ ଆଦିବାସୀମାନଙ୍କ ପାଇଁ ପିଣ୍ଡରେ ରହିଛି ।

ଆଜି ଓଡ଼ିଶାରେ ଯେଉଁ ଘଟଣା ଘଟିଗଲା, ତାର ମୂଳକଥା ହେଉଛି ଜମି ଅଧିଗ୍ରହଣ । ରାଜ୍ୟରୁ କେନ୍ଦ୍ରଯାଏ, ଦେଶରୁ ବିଦେଶଯାଏ ସବୁ ନେତାଙ୍କର ବିବୃତ୍ତି ଦେଖନ୍ତୁ-"ଖଣିଜ ସଂପଦଭରା ଓଡ଼ିଶା ରାଜନୈତିକ ଇଚ୍ଛା ଶକ୍ତିର ଅଭାବରୁ ଭାରତର ଦରିଦ୍ରତମ ରାଜ୍ୟ ହୋଇରହିଛି ।" ମାତ୍ର ଖଣିଜ ସମ୍ପଦ ବିନିଯୋଗ ପ୍ରଶ୍ନ ଉଠିଲେ ଜମି ଅଧିଗ୍ରହଣ ଏବଂ ବିସ୍ଥାପନ ସମସ୍ୟା ଉଠିବଇ ଉଠିବ । ଅତୀତରେ ଛତ୍ରପୁରରେ ପ୍ରସ୍ତାବିତ ପ୍ରକଳ୍ପ ଓଡ଼ିଶାର ଉନ୍ନତି-ଶତ୍ରୁମାନଙ୍କର ପ୍ରବଳ ବିରୋଧ ଯୋଗୁ ଆନ୍ଧ୍ରକୁ ଚାଲିଗଲା । ଅନ୍ୟାନ୍ୟ ରାଜ୍ୟମାନେ ଶିଳ୍ପୋଦ୍ୟୋଗୀମାନଙ୍କୁ ଆଦରରେ ଡାକୁଥିବା ବେଳେ ଆମ ଓଡ଼ିଶାରେ ସେମାନଙ୍କୁ କଳେବଳେ କୌଶଳେ ଭଗାଇଦେବାର ଯେଉଁ ଚକ୍ରାନ୍ତ

ଚାଲିଛି, ସେଥିରେ କଂଗ୍ରେସ ଓ କମ୍ୟୁନିଷ୍ଟ ଦଳର ପ୍ରଚ୍ଛନ୍ନ ହାତ ରହିଛି । ଏମାନେ ବିଭିନ୍ନ ଆଳରେ କାଶୀପୁରରେ ଉତ୍କଳ ଆଲୁମିନା ଏବଂ ଲାଞ୍ଜିଗଡରେ ବେଦାନ୍ତ ଆଲୁମିନାକୁ ପ୍ରବଳ ବିରୋଧ କରୁଛନ୍ତି । ମୂଳ ଉଦ୍ଦେଶ୍ୟ ହେଲା–ଯଦି ନବୀନ ପଟ୍ଟନାୟକଙ୍କ ବେଳରେ ଶିଳ୍ପବିପ୍ଳବ ମାଧ୍ୟମରେ ଓଡ଼ିଶାର ପ୍ରଭୂତ ଉନ୍ନତି ହୋଇଯାଏ, ହୁଏତ କଂଗ୍ରେସ ଓଡ଼ିଶାରୁ ଚିରକାଳ ପାଇଁ ନିଶ୍ଚିହ୍ନ ହୋଇଯିବ, ଏହି ଭୟରେ ।

ଓଡ଼ିଶା କମ୍ୟୁନିଷ୍ଟର ମୂଳ ରହିଲା ପଶ୍ଚିମବଙ୍ଗରେ । ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ଶିଳ୍ପୋଦ୍ୟୋଗୀମାନଙ୍କୁ ତାଙ୍କ ରାଜ୍ୟରେ ଶିଳ୍ପ ପ୍ରତିଷ୍ଠା ପାଇଁ ଆହ୍ୱାନ କରୁଥିବାବେଳେ ଓଡ଼ିଶା କମ୍ୟୁନିଷ୍ଟ ପାର୍ଟି ଶିଳ୍ପକୁ ଓଡ଼ିଶାରୁ ଖେଦିନେଇ ପଶ୍ଚିମବଙ୍ଗରେ ପହଞ୍ଚାଇଲେ ରାଜନୈତିକ କମିଶନ ପାଇବାର ଆଶା ବୋଧହୁଏ ରଖିଛନ୍ତି । ସେଥିପାଇଁ ଓଡ଼ିଶା କାଳକାଳକୁ ଦରିଦ୍ର ରହିଲେ ଏମାନଙ୍କର ହୁଏତ ଦଳପାଇଁ ମଙ୍ଗଳ ।

କଳିଙ୍ଗନଗରରେ ୧୨ ଜଣ ଆଦିବାସୀଙ୍କ ପାଇଁ କଂଗ୍ରେସନେତ୍ରୀ ସୋନିଆଗାନ୍ଧି ଦିଲ୍ଲୀରୁ କାନ୍ଦି କାନ୍ଦି କଳିଙ୍ଗନଗର ଯାଏ ଲୁହରେ ଭସାଇଦେଲେ । ଆମ ଓଡ଼ିଶା କଂଗ୍ରେସ ନେତାଙ୍କର ଆଖିରୁ ତ ଲୁହ ଶୁଖିବାକୁ ନାହିଁ । ସୋନିଆଗାନ୍ଧି ଓଡ଼ିଆଙ୍କୁ ଜବାବଦେବେକି ତାଙ୍କ ମନ୍ତ୍ରୀମଣ୍ଡଳରେ ଓଡ଼ିଶାରୁ ଜଣେ ହେଲେ କେହି ମନ୍ତ୍ରୀମଣ୍ଡଳରେ ସ୍ଥାନ ପାଇଲେ ନାହିଁ କେମିତି ? ସଂଘୀୟ ଗଣତନ୍ତ୍ରର ଅର୍ଥ କ'ଣ ଏଇଆ ? ଆମ ରାଜ୍ୟରୁ ଜଣେ ପ୍ରତିଷ୍ଠିତ ଆଦିବାସୀ ନେତା ଗିରିଧର ଗମାଙ୍ଗଙ୍କୁ ମଧ୍ୟ କାହା ସ୍ୱାର୍ଥ ପାଇଁ ଆଡେଇ ଦିଆଗଲା ? ଓଡ଼ିଶା କଂଗ୍ରେସ ମୁହଁରେ 'ସରମ' ବୋଲି କିଛି ଥିଲେ ଏହାର ପ୍ରତିବାଦରେ ସମସ୍ତେ ଦଳରୁ ଇସ୍ତଫା ଦେଇ ପାରିଥାନ୍ତେ । ତେବେ ଓଡ଼ିଶାର ସମ୍ମାନ ସ୍ୱାଭିମାନ ଅକ୍ଷୁଣ୍ଣ ରହିଥାନ୍ତା । ବିସ୍ଥାପନ ଏକ ଜାତୀୟ ସମସ୍ୟା । ଏହା ଉପରେ ନୀତି ନିର୍ଦ୍ଧାରଣ କରାଯିବା ଉଚିତ । ଅଦ୍ୟାବଧି ରାଉରକେଲା ଷ୍ଟିଲ୍‌ପ୍ଲାଣ୍ଟ ପାଇଁ ବିସ୍ଥାପିତମାନଙ୍କର ସମସ୍ୟାର ସମ୍ପୂର୍ଣ୍ଣ ସମାଧାନ ହୋଇପାରିନାହିଁ । ଏହା ନିଶ୍ଚିତରେ ଉଦବେଗର ବିଷୟ । କଳିଙ୍ଗନଗର ସମସ୍ୟାକୁ ପ୍ରକୃତରେ ସ୍ଥାନୀୟ କେତେକ ହତାସ କଂଗ୍ରେସୀନେତା ମତାଇ ତତାଇ ଏହି ସ୍ତରକୁ ଆଣି ନିରୀହ ଓ ସରଳ ଆଦିବାସୀମାନଙ୍କୁ ବଳି ପକାଇଲେ । ଅଳ୍ପଦିନ ତଳେ ବିମଳାଗଡ ରେଳ ଦୁର୍ଘଟଣାରେ ମରିଥିବା ୧୪ ଜଣ ଆଦିବାସୀ ଏବଂ ବୁଡ଼ି ମରିଯାଇଥିବା ଆଦିବାସୀମାନଙ୍କ ପାଇଁ ସୋନିଆଜୀ କିମ୍ବା ମନ୍ତ୍ରୀ କାଣ୍ଡିଆ ସେଠାକୁ ଦୌଡିଗଲେ ନାହିଁ କିମ୍ବା କାନ୍ଦିଲେ ନାହିଁ । କାରଣ ସେଥିରେ ରାଜନୀତି କରିହେବ ନାହିଁ । ତେଣୁ ସେମାନେ ମରନ୍ତୁ ।

କୌଣସି ଦୁର୍ଘଟଣାରେ ପ୍ରତିବାଦ କରିବାକୁ ଯାଇ ଲକ୍ଷ ଲକ୍ଷ ଲୋକଙ୍କୁ ଦୀର୍ଘଦିନ ଧରି ଅସୁବିଧାରେ ପକାଇବା କୌଣସି ସଭ୍ୟ ସମାଜରେ ଚଳେ ନାହିଁ । ତେଣୁ ଅଣଆଦିବାସୀମାନେ ଆସି ଆଦିବାସୀମାନଙ୍କ ବିରୁଦ୍ଧରେ ସଂଗଠିତ ହେବାକୁ ଲାଗିଲେଣି । ତାହା ଆହୁରି ଭୟାବହ ଘଟଣାର ସୂତ୍ରପାତ କରିପାରେ । ମାତ୍ର ସୁବିଧାବାଦୀ ନେତାମାନେ ଆଦିବାସୀଙ୍କୁ ଏକାନ୍ତରେ ମତାଇ ନିଜେ ସେଠାରୁ ଅପସରିଯାଇ ସୁକୁଟ ଦେଖୁଛନ୍ତି । ଏହି ଆନ୍ଦୋଳନକୁ ମତାଉଥିବା ବ୍ୟକ୍ତିମାନଙ୍କୁ ସମୁଚିତ ଦଣ୍ଡ ମିଳିବା ଉଚିତ୍ ।

ଅବଶେଷରେ ଆଦିବାସୀମାନଙ୍କ ସ୍ୱାର୍ଥକୁ କେତେବେଳେ ଧ୍ୟାନଦେଇ ନଥିବା ବ୍ୟକ୍ତିମାନଙ୍କୁ, ଦଳମାନଙ୍କୁ ସେମାନେ ଚିହ୍ନି ରଖି ତାଙ୍କ ଠାରୁ ଦୂରେଇ ରହିବା ଦରକାର । ସେମାନଙ୍କର ସମୃଦ୍ଧି ଦେଶର ସମୃଦ୍ଧି ଏବଂ ଦେଶର ସମୃଦ୍ଧି ମଧ୍ୟ ସେମାନଙ୍କର ସମୃଦ୍ଧି ବୋଲି ସରକାର ତଥା ଆଦିବାସୀମାନେ ହୃଦୟଙ୍ଗମ କରିବା ଦରକାର । ଆଦିବାସୀ ହୁଅନ୍ତୁ କିମ୍ବା ଅଣଆଦିବାସୀ ହୁଅନ୍ତୁ ପ୍ରତ୍ୟେକ ବିସ୍ଥାପିତ ପରିବାରକୁ ସମପରିମାଣରେ ଜମି ଓ ଘରଡିହ ଯୋଗାଇ ଦେବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ପରିବାରରୁ ଅନ୍ତତଃ ଜଣକୁ ପ୍ରସ୍ତାବିତ କାରଖାନାରେ ଚାକିରି ଦେଇ ଘଟଣାର ତୁରନ୍ତ ସମାଧାନ କରାଯିବା ଆବଶ୍ୟକ । ବିନା ସ୍ୱାର୍ଥରେ ଜଣେ ନିଜର ଘରଦ୍ୱାର, ଜମିବାଡି ଛାଡି ସ୍ଥାନାନ୍ତରକୁ ଯିବ କାହିଁକି ?

ଏହି ଦୁଃଖଦ ଘଟଣାକୁ ନେଇ ଆଉ ରାଜନୈତିକ ଝଡ଼ ନଉଠୁ । ଓଡ଼ିଶାର ଜନସମୁଦାୟ ତଥା ଯୁବକ ଯୁବତୀମାନେ ଓଡ଼ିଶାର ପ୍ରଗତିର ଶତ୍ରୁ ବ୍ୟକ୍ତି ବିଶେଷ ତଥା ଦଳମାନଙ୍କୁ ଚିହ୍ନି ରଖନ୍ତୁ ।

ନିତ୍ୟନୂତନ - ୧୫.୩.୨୦୦୬

# ଅଗଷ୍ଟ ପନ୍ଦର - ଏକ ବିହଙ୍ଗାବଲୋକନ

ଦୀର୍ଘ ତିନିଶହ ବର୍ଷର ବ୍ରିଟିଶ୍ ଶାସନର ଅବସାନ ଘଟିଲା ଓ ଅବଶେଷରେ ଭାରତ ସ୍ୱାଧୀନତା ଲାଭ କଲା ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ । ସେହିଦିନଠାରୁ ଭାରତ ବିଶ୍ୱରେ ଏକ ସ୍ୱତନ୍ତ୍ର ରାଷ୍ଟ୍ରର ମର୍ଯ୍ୟାଦା ଲାଭ କରିବା । ସଙ୍ଗେ ସଙ୍ଗେ ପରାଧୀନତାର ଗ୍ଲାନିବୋଧରୁ ମୁକ୍ତ ହେଲା । ସୁଦୀର୍ଘ ୫୧ ବର୍ଷ ପରେ ନୂଆପୀଢ଼ିର ନାଗରିକମାନେ ଅନୁଭବ କରିପାରିବେ ନାହିଁ ଏହି ସ୍ୱାଧୀନତା ଲାଭ ପାଇଁ କେତେ ଦେଶ ପ୍ରେମୀ ଫାଶୀ ଖୁଣ୍ଟରେ ଝୁଲିଲେ, କେତେ ଦେଶପ୍ରେମୀଙ୍କର ସମ୍ପତ୍ତି ବାଜ୍ୟାପ୍ତି କରାଯାଇ ତାଙ୍କୁ ରାତାରାତି ନିଃସ୍ୱ କରି ଦିଆଗଲା । କେତେ ସଂଗ୍ରାମୀଙ୍କର ଜୀବନ ଜେଲର ଚାରିକାନ୍ଥ ଭିତରେ ଅତିବାହିତ ହେଲା । ମାତ୍ର ସମସ୍ତଙ୍କର ଗୋଟିଏ ସ୍ୱପ୍ନ ଥିଲା-ସ୍ୱାଧୀନ ଭାରତ । ସଂଗ୍ରାମର ମୁଖ୍ୟ ପୁରୋଧା ଥିଲେ ମହାତ୍ମାଗାନ୍ଧୀ, ଯାହାଙ୍କର ଉଦ୍ଭାବିତ ନୂତନ ଅସ୍ତ୍ର ଥିଲା ସତ୍ୟ ଓ ଅହିଂସା । ଅକଳ୍ପନୀୟ ମନୋବଳ ଯେ ଗୋଟିଏ ନିତାନ୍ତ ସରଳ ଅର୍ଦ୍ଧନଗ୍ନ ମଣିଷ ଭିତରେ ସମ୍ଭବ ହୋଇପାରେ ତାହା ବିଶ୍ୱବାସୀ ଦେଖିଲେ । ତେଣୁ ଆମର ପ୍ରିୟ ବାପୁଜୀ ହେଲେ ବିଂଶ ଶତାବ୍ଦୀର ଶ୍ରେଷ୍ଠ ମାନବ । ଆମର ଗର୍ବ ଓ ଗୌରବ । ସେଇଭଳି ଜାତୀୟ ପତାକା ମଧ୍ୟ ଆମର ଗର୍ବ ଓ ଗୌରବର ପ୍ରତୀକ ।

ମାତ୍ର ସ୍ୱାଧୀନତା ପ୍ରାପ୍ତିପରେ ବାପୁଜୀଙ୍କର ପରାମର୍ଶ ଥିଲା କଂଗ୍ରେସକୁ ଭାଙ୍ଗି ଦେଇ ଗୋଟିଏ ସେବାଦଳ କରି ଗଢ଼ିବା ପାଇଁ, କ୍ଷମତା ଉପଭୋଗର ଲାଳସା ତ୍ୟାଗ କରିବାକୁ ସେ ଚାହିଁଥିଲେ । କିନ୍ତୁ ନେତାମାନେ ସୁଖ ସମ୍ଭୋଗର ସ୍ୱପ୍ନରେ ବାପୁଜୀଙ୍କ କଥା ଶୁଣିଲେ ନାହିଁ । ସେହି ଦିନଠାରୁ ତତ୍କାଳୀନ ଭାରତର ମୁଖ୍ୟଦଳ କଂଗ୍ରେସ ବାପୁଜୀଙ୍କର ଅଭିଶାପ ବହନ କରି ଚାଲିଛି । ବହୁ ବିଭାଜନ ସତ୍ତ୍ୱେ କଂଗ୍ରେସର ଦାୟାଦ ବୋଲି ଯେ ଦାବି କରିବ ସେହି ଅଭିଶାପ ସେ ମଧ୍ୟ ବହନ କରିବ । ଫଳତଃ ସେତେବେଳର ଆଗ ଧାଡ଼ିର ନେତାମାନଙ୍କ ହାତରେ ଦେଶର ଭାଗ୍ୟଡୋରି ରହିଲା ।

ବାପୁଜୀ କ୍ରମଶଃ ବିସ୍ମୃତ ହେଲେ । ରାଜନୈତିକ ସ୍ୱାଧୀନତା ପରେ ବାପୁଜୀଙ୍କର ସ୍ୱପ୍ନର ଅର୍ଥନୈତିକ ସ୍ୱାଧୀନତା ସ୍ୱପ୍ନ ହୋଇ ଭାରତୀୟଙ୍କ ପାଇଁ ରହିଗଲା ।

ତ୍ୟାଗ ପରିବର୍ତ୍ତେ ଭୋଗ ରାଜନୀତିରେ ମୁଖ୍ୟ ସ୍ଥାନ ଅଧିକାର କଲା । ଏଣେ ସ୍ୱାଧୀନତା ଆନ୍ଦୋଳନ ସମୟରେ ନେତାମାନଙ୍କର କ୍ରମଶଃ ତିରୋଧାନ ପରେ ଜାତୀୟ ସଂପଦ ଲୁଣ୍ଠନକାରୀଙ୍କ ହାତରେ ସର୍ବତ୍ର ଶାସନ ଡୋରି ରହିଲା । ସେମାନେ କ୍ଷମତା ଓ ତଜ୍ଜନୀତ ସୁଖ ସମ୍ଭୋଗକୁ ଚିରସ୍ଥାୟୀ କରିବାକୁ କୂଟ ଚକ୍ରାନ୍ତର ଆଶ୍ରୟ ନେଲେ । ବାହୁବଳର ଆଶ୍ରୟ ନେଲେ । ଦେଶର ଜନତାଠାରୁ ତଥା କଥିତ ଜନନେତା ତଥା ଶାସନ ଦୂରେଇଗଲେ । ତା'ପରେ ଚାଲିଲା ନିର୍ବିବାଦରେ ଦେଶ ଲୁଣ୍ଠନ, ମୁଷ୍ଟିମେୟ ନୀତିବାନ୍ ଓ ଦେଶ ପ୍ରେମୀଙ୍କ ଉପରେ ବିଭିନ୍ନ ଆଳରେ ଅତ୍ୟାଚାର ।

ଜୟପ୍ରକାଶ ନାରାୟଣଙ୍କ ଦ୍ୱାରା ପରିଚାଳିତ ଆନ୍ଦୋଳନକୁ ଏ ଦେଶର ଜନତା ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ଆଖ୍ୟା ଦେଲା । କେତେକ ପ୍ରାଚୀନ ନୀତିବାନ୍ ଓ କେତେକ ଅର୍ବାଚୀନ ଆଗ ଧାଡ଼ିକୁ ଆସି ଶାସନ ଡୋରି ଧରିଲେ । ମାତ୍ର ଅଳ୍ପ କେତେଟା ଦିନ ପରେ ଆଭ୍ୟନ୍ତରୀଣ କନ୍ଦଳ ଓ କେତେକଙ୍କର ଅତ୍ୟଧିକ କ୍ଷମତା ଲିପ୍ସା ଯୋଗୁ ସେ ଶାସନ ଗଲା, ସେ ନେତା ଗଲେ । କେବଳ କେତେକ ଅର୍ଥପିପାସୁ ଲୁଟେରାଙ୍କ ହାତରେ ଶାସନ ଦଣ୍ଡ ରହିଲା ।

ସେମାନେ ନୂତନ ପୀଢ଼ିର ଯୁବକମାନଙ୍କୁ ଭୋଗମାର୍ଗରେ ବ୍ରତୀ କରାଇଲେ । ପାରିବାରିକ ଶାସନ ସବୁଆଡେ ଚାଲିଲା । ଗଣତନ୍ତ୍ରର କଣ୍ଠରୋଧ ହେଲା । କ୍ଷମତା ଭୋଗୀମାନେ ଗଣତନ୍ତ୍ରର ନୂତନ ସଂଜ୍ଞା ପ୍ରସ୍ତୁତ କଲେ । ସଚ୍ଚା ଦେଶପ୍ରେମୀଙ୍କ ନାମରେ ଦେଶ ଦ୍ରୋହର ମୋହର ବିଭିନ୍ନ ଆଳରେ ଲଗାଇ ନିଜ ଚତୁରତାରେ ନିଜେ ମୁଗ୍ଧ ହେଲେ । ପରିସ୍ଥିତି ଏପରି ଅସହ୍ୟ ହେଲା ଯେ କେତେକ ଲୋକ ଖୋଲା ଖୋଲି ଏହି ଶାସନଠାରୁ ରାଜା ରାଜୁଡ଼ା ଶାସନ ଓ ବ୍ରିଟିଶ୍ ଶାସନ ମଧ୍ୟ କମ୍ ପୀଡାଦାୟକ ବୋଲି କହିଲେ । ତଥାକଥିତ ନେତାମାନଙ୍କର ବିଭିନ୍ନ ସ୍କାମ୍‌ରେ ସଂପୃକ୍ତି ତଥା ସି.ବି.ଆଇ ଦ୍ୱାରା ମାମଲା ରୁଜୁ ଖବରମାନ ଜନତା ଦୃଷ୍ଟିକୁ ଆସିଲା । ଜନସାଧାରଣଙ୍କ ବିରକ୍ତି ଓ କ୍ରୋଧ ଗଣତନ୍ତ୍ରର ମୂଳରେ କୁଠାରାଘାତ କଲା ।

ଦେଶର ସାଧାରଣ ଜନତାକୁ ସର୍ବନିମ୍ନ ସୁବିଧା ଯଥା ଖାଦ୍ୟ, ବସ୍ତ୍ର ଓ ଗୃହ ଯୋଗାଇଦେବା ଅଦ୍ୟାବଧି ସମ୍ଭବ ହେଲା ନାହିଁ । ଏ ଦେଶର ଜନତାକୁ ଧର୍ମ, ଜାତି ପରି କୁତ୍ସିତ ପ୍ରବଞ୍ଚନାରେ ଭାଗଭାଗ କରାଗଲା । ଦେଶଦ୍ରୋହୀ ମାନଙ୍କର ଉତ୍ପୀଡନରେ

ଚାରିଆଡେ ହାହାକାର ଭିତରେ ବିକଳାଙ୍ଗ ଭାରତ ତଥାପି ବଞ୍ଚିଛି । ତଥାପି ଆଶା ଅଛି ଆମ ଦେଶ ଆମ ଜାତି ରାହୁଗ୍ରାସରୁ ମୁକ୍ତ ହୋଇ ନୂତନ ଶତାବ୍ଦୀରେ ନିଜକୁ ନୂତନ ଭାବେ ଗଢ଼ି ତୋଳିବ । ଦେଶ ବିଭାଜନର ମାନସିକତା ହତ୍ୟା, ଧର୍ଷଣ, ଅନ୍ତର୍ଘାତୀ ଭଳି ଅପରାଧ ଜନିତ କଳଙ୍କରୁ ଦେଶ ମୁକ୍ତ ହେବ । ମହାତ୍ମାଗାନ୍ଧିଙ୍କର ସ୍ୱପ୍ନର ରାମରାଜ୍ୟ ପ୍ରତିଷ୍ଠିତ ହେବ । ସେହି ସ୍ୱର୍ଣ୍ଣାଭ ଦିନକୁ ଆମେ ଅପେକ୍ଷା କରିବା । ଅବଶେଷରେ ଜାତିର ନମସ୍ୟ ପୂଜ୍ୟ ବାପୁଜୀଙ୍କୁ ଓ ଜାତୀୟ ପତାକାକୁ ପ୍ରଣାମ କରି ଏହି ଶୁଭ ଦିନଟିର ମହନୀୟତାକୁ ସ୍ମରଣ କରିବା । ଆଜିର ନେତାଏ ନୀତି ଛାଡି ପ୍ରୀତିରେ ମସ୍‌ଗୁଲ ରହିଲେ ଦେଶର ଅଭିଶାପ ଭୋଗିବେ ହିଁ ଭୋଗିବେ ।

ନିତ୍ୟନୂତନ - ୧୫.୯.୧୯୯୯

# ମୋ ସ୍ମୃତିରେ କବି ଗଡ଼ନାୟକ

ଓଡ଼ିଆ ଭାଷାର ଅଦ୍ୱିତୀୟ ଛନ୍ଦ-କବି ରାଧାମୋହନ ଗଡ଼ନାୟକଙ୍କ ସହିତ ମୋର ପ୍ରଥମ ସାକ୍ଷାତ ପରିଚୟ ହୁଏ ୧୯୭୫ ମସିହାରେ । ୧୯୭୮ ମସିହାରେ ସରକାରୀ ଚାକିରିରେ ମୋର ଅନୁଗୁଳକୁ ବଦଳି ହେଲା । ସେହି ଅବସରରେ ସେଠାରେ ମୋର ବହୁ ସାହିତ୍ୟିକ, କବି ଏବଂ ସାହିତ୍ୟ ପ୍ରେମୀ ବ୍ୟକ୍ତିଙ୍କ ସହିତ ସମ୍ପର୍କ ଗଢ଼ି ଉଠିଲା । ସେମାନଙ୍କ ମଧ୍ୟରେ ପ୍ରଫେସର ରାମଚନ୍ଦ୍ର ରାଉତ (ଅନୁଗୁଳ କଲେଜର ତତ୍କାଳୀନ ଇଂରାଜୀ ଅଧ୍ୟାପକ), ପ୍ରଫୁଲ୍ଲ କୁମାର ଗିରି (ତତ୍କାଳୀନ ଆସିଷ୍ଟାଣ୍ଟ ଡାଇରେକ୍ଟର ଆଡଲ୍ଟ ଏଜୁକେସନ), ବି.ଇ.ଡ଼ି କଲେଜର ପ୍ରିନ୍‌ସିପାଲ୍ ଭାଗିରଥୀ ନାୟକ, ପ୍ରଫେସର ରବିନାରାୟଣ ବରାଳ, ଗୀତା ମିଶ୍ର, ସିପ୍ରା ରାୟ (ଉଭୟ ଆଶ୍ରମ ସ୍କୁଲ୍‌ର ଶିକ୍ଷୟିତ୍ରୀ) ଏବଂ ଆହୁରି ଅନେକ ବ୍ୟକ୍ତିଙ୍କୁ ନେଇ 'ଉତ୍ତରଣ ସାହିତ୍ୟ ସଂସଦ' ଗଠିତ ହେଲା । ଏହି ସଂସଦ ତରଫରୁ 'ଉତ୍ତରଣ' ନାମରେ ଗୋଟିଏ ସାହିତ୍ୟ ପତ୍ରିକାର କେତୋଟି ସଂଖ୍ୟା ମଧ୍ୟ ପ୍ରକାଶିତ ହେଲା । ପ୍ରତି ରବିବାର ଲେଖକମାନଙ୍କର ଗୋଟିଏ ଆସରରେ ପ୍ରତ୍ୟେକ ସ୍ୱରଚିତ କବିତା ପାଠ କରନ୍ତି ଏବଂ ଅନ୍ୟ ଜଣେ କବି ସେହି କବିତା ଉପରେ ଆଲୋଚନା କରନ୍ତି । କିଛି ମାସ ପରେ ସମୟ ଦୃଷ୍ଟିରୁ ମାସକୁ ଦୁଇଥର କବିମାନେ ଏକତ୍ରିତ ହୋଇ ପଠନ ଓ ଆଲୋଚନା କଲୁ । ସେହି ଅବସରରେ କବି ଗଡ଼ନାୟକଙ୍କ ସହିତ ସାକ୍ଷାତ ଆଲୋଚନା ଭିତରେ ବ୍ୟକ୍ତିଗତ ସମ୍ପର୍କ ସ୍ଥାପିତ ହୁଏ ।

ଥରେ ମୁଁ ଅଫିସରୁ ଫେରିବା ବାଟରେ କବିଙ୍କ ସହିତ ସାକ୍ଷାତ ହେଲା । ଉଭୟ କିଛି ସମୟ ବାକ୍ୟାଳାପ କଲାପରେ କବି ମତେ ଘରେ ଖୋଜି ନ ପାଇ ଅଫିସ୍‌ରେ ଥିବେ ଶୁଣି ଅଫିସ୍ ଆଡକୁ ଯାଇଥିଲେ ବୋଲି କହିଲେ । ମୁଁ ଘରେ ପହଞ୍ଚୁ ପହଞ୍ଚୁ ଅଷ୍ଟମ ଶ୍ରେଣୀରେ ପଢୁଥିବା ମୋ ବଡଝିଅ ଇନ୍ଦୁରେଖା (ବର୍ତ୍ତମାନ ଅଧ୍ୟାପିକା ତଥା ଲେଖିକା) କହିଲା, ''ବାପା ଆପଣଙ୍କୁ କିଏ ଜଣେ ବୁଢ଼ା ଲୋକ ଖୋଜୁଥିଲେ । ଅଫିସ୍‌ରୁ ଫେରିନାହାନ୍ତି ବୋଲି ମୁଁ କହିଲି ।'' ମୁଁ ଜାଣିପାରିଲି ଏବଂ ପଚାରିଲି ''ଆଲୋ

ମା' ତୁ ତାଙ୍କୁ ଚିହ୍ନିନାହୁଁ? ଝିଅ ମୁଣ୍ଡ ହଲାଇ ନାହିଁକିଲା । ମୁଁ କହିଲି ସେ ହେଉଛନ୍ତି ଓଡ଼ିଆ ସାହିତ୍ୟର ଅପ୍ରତିଦ୍ୱନ୍ଦ୍ୱୀ କବି ରାଧାମୋହନ ଗଡ଼ନାୟକ, ଝିଅ ସେ ଦିନ ଜିଭ କାମୁଡ଼ି ପକାଇଲା । ତା' ପରଦିନ ସକାଳେ ଯେତେବେଳେ ଗଡ଼ନାୟକ ଆମ ଘରକୁ ଆସିଲେ, ମୁଁ ଝିଅକୁ ପରିଚୟ କରାଇଦେଲି । ଝିଅର ସବିନୟ ପ୍ରଣାମର ଉତ୍ତରରେ ବର୍ଷୀୟାନ୍ କବି ଆଶୀର୍ବାଦ କଲେ ।

ଅଧିକାଂଶ ଦିନ ଦେଖା ସାକ୍ଷାତ ଭିତରେ ଥରେ ଗୋଟିଏ କବିତା ଆସରରେ କବି ଗଡ଼ନାୟକ ଉପସ୍ଥିତ ଥାଆନ୍ତି । ସେଦିନ ଆଉ ଜଣେ ସାହିତ୍ୟପ୍ରେମୀ ଶରତ ଚନ୍ଦ୍ର ମହାପାତ୍ର (ଅନୁଗୁଳର ଏସ.ଡି.ଓ) ଉପସ୍ଥିତ ଥାଆନ୍ତି । କବି ଜଣେ ଯୁବକଙ୍କୁ ତାଙ୍କ ନାତି ହିସାବ ବୋଲି ପରିଚୟ କରାଇଦେଲେ । ସେହି ଯୁବକ ଜଣକ ତାଙ୍କର ସ୍ୱରଚିତ କବିତାଟିଏ ଆବୃତ୍ତି କଲେ । ହଠାତ୍ ଗଡ଼ନାୟକ ବାଧାଦେଇ କହିଲେ - ''ରହ , ରହ, ତୁ ଯାହା ପଢ଼ିଲୁ ତାର ଅର୍ଥ ଟିକିଏ ବୁଝେଇଲୁ, ଇଏତ ମୋ ମୁଣ୍ଡକୁ ଢୁକୁ ନାହିଁ'' । କବିତାଟି ମୁକ୍ତ ଛନ୍ଦ ଅତ୍ୟାଧୁନିକ ସ୍ତରର ଥିଲା ।

ମାତ୍ର ସେ ଦିନ ଆମେ ଯେତେଜଣ ଉପସ୍ଥିତ ଥିଲୁ ବୋଧହୁଏ କେହି ତା'ର ଅର୍ଥ ବୁଝିପାରି ନଥିଲୁ । ରସିକ କବି ନାତିକୁ କହିଲେ- ''ଏଭଳି ଗୁଡ଼ାଏ ଅର୍ଥହୀନ କବିତା ଲେଖିବା ଅପେକ୍ଷା କିଛି ନ ଲେଖିବା ଭଲ ।''

ଛାତ୍ରାବସ୍ଥାରୁ ମୁଁ ଗଡ଼ନାୟକଙ୍କର ଯାଦୁକରୀ ଓ ପ୍ରାଣସ୍ପର୍ଶୀ କବିତାର ଜଣେ ବିମୋହିତ ପାଠକ, ତେଣୁ ମୁଁ ତାଙ୍କୁ ଅତ୍ୟନ୍ତ ସମ୍ମାନାସ୍ପଦ ରୂପେ ଦେଖେ । ସେ ମୁକ୍ତ ଛନ୍ଦ ଓ ତଥା କଥିତ ଅତ୍ୟାଧୁନିକ କବିତାକୁ ଜମା ପସନ୍ଦ କରୁ ନଥିଲେ ।

ଗଡ଼ନାୟକଙ୍କର 'ସୂର୍ଯ୍ୟ ଓ ଅନ୍ଧକାର' କବିତା ପୁସ୍ତକଟି କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଥାଏ । ଦିନେ କଥାବାର୍ତ୍ତା ମଝିରେ ମୁଁ କହିଲି- ସାର୍, 'ସୂର୍ଯ୍ୟ ଓ ଅନ୍ଧକାର' କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଲା ସତ, ମାତ୍ର ତା' ଭିତରେ ମୁଁ ରାଧାମୋହନ ଗଡ଼ନାୟକଙ୍କୁ ଖୋଜି ପାଇଲି ନାହିଁ । ଏହା କହି ମୁଁ ଗଡ଼ନାୟକଙ୍କର ବିଭିନ୍ନ ରଚନାରୁ କେତେକ ପ୍ରାଣସ୍ପର୍ଶୀ ପଦ ଆବୃତ୍ତ କଲି । ସେ ତାଙ୍କ ସ୍ୱାଭାବ ସୁଲଭ ଭଙ୍ଗୀରେ ହସିଲେ ଓ ସିଗାରେଟ୍ ଦମ୍ ନେଇ କହିଲେ-

''ବୁଝିଲେ - ବାବୁ, ମତେ ଅନନ୍ତ ପଟ୍ଟନାୟକ କହିଥିଲା ଛନ୍ଦ ଓ ସୁଲଳିତ କବିତା ଲେଖିଲେ ସାହିତ୍ୟ ଏକାଡେମୀ ପୁରସ୍କାର ମିଳେ ନାହିଁ । କିଛି ଅର୍ଥହୀନ ଗଦ୍ୟ-କବିତା ଲେଖିଲେ ଏକାଡେମୀ ବାଲା ଭାବିବେ କେତେ ଜ୍ଞାନୀ ଲୋକ ଲେଖିଛି, କେତେ ଗଭୀର ଗୂଢ଼ ଅର୍ଥ ଏଥିରେ ଅଛି ଯାହାକୁ ଆମେ ମଧ୍ୟ ବୁଝି ପାରୁନାହୁଁ ।''

ଉଭୟ ଖୁବ୍ ହସିଲୁ । ସେଇ ଅବସରରେ ମୁଁ ଫତୁରାନନ୍ଦଙ୍କର ''ନାକଟା ଚିତ୍ର କର'' ଗଳ୍ପର ଅବତାରଣା କଲି । କବି ଅନନ୍ତ ପଟ୍ଟନାୟକ ଏବଂ ଗଡ଼ନାୟକ ଉଭୟ ଦିବଂଗତ ହୋଇଥିବାରୁ-ମୁଁ ସେହି ଅମର ଆତ୍ମାଙ୍କ ପାଖରେ କ୍ଷମାମାଗି ଉପରୋକ୍ତ ମନ୍ତବ୍ୟଟି ପ୍ରକାଶ କରୁଛି ।

ମୁଁ ଗଡ଼ନାୟକଙ୍କର କବିତାର ଜଣେ ମୁଗ୍ଧ ପାଠକ ମାତ୍ର । ସେତେବେଳେ ମୋର ତିନିବର୍ଷ ରହଣି କାଳ ମଧ୍ୟରେ ଆମେ ଗଠନ କରିଥିବା 'ଉତ୍ତରଣ ସାହିତ୍ୟ ସଂସଦ' ବହୁତ କବି ଓ ଲେଖକ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଏକ ସାଂସ୍କୃତିକ ବାତାବରଣ ସୃଷ୍ଟି କରିସାରିଥିଲା । ମୋ ଦ୍ୱାରା ଲିଖିତ 'ରୂପକ ଉପେନ୍ଦ୍ର ଭଞ୍ଜ' ମହିଳା କଲେଜର ଛାତ୍ରୀ ତଥା ହାଇସ୍କୁଲ୍‌ର ସଂସ୍କୃତ ପଣ୍ଡିତଙ୍କ ସହିତ ଆଶ୍ରମ ସ୍କୁଲ୍‌ର ଛାତ୍ରୀମାନଙ୍କ ଦ୍ୱାରା ସଭାଘରେ ପରିବେଷଣ କରାଯାଇଥିଲା । ଉଲ୍ଲେଖନୀୟ ଯେ ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ ଏବଂ ମାଳତୀ ଦେବୀଙ୍କ ସହିତ ବହୁମାନ୍ୟ ଗଣ୍ୟ ବ୍ୟକ୍ତି ସେହିତ ଆସରରେ ଯୋଗ ଦେଇଥିଲେ ।

୧୯୮୧ ମସିହାରେ ମୋର ବଦଳି ଯାଜପୁର ରୋଡକୁ ହେଲା । ଏକଥା ଗଡ଼ନାୟକ କାହାଠାରୁ ଶୁଣି ମୋ ବସାଘରେ ପହଞ୍ଚି ଖୁବ୍ ବ୍ୟସ୍ତ ହେଲେ । କହିଲେ ମୁଁ ଆଜି ଜାନକୀକୁ ଫୋନ କରି ଆପଣଙ୍କର ଅର୍ଡର କାନସେଲ୍ କରିବି ( ସେତେବେଳେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ) । ଆପଣ ଏଇଠି ନିଶ୍ଚୟ ରହିବେ ।'' ମୁଁ ସବିନୟ ଅନୁରୋଧ କଲି ସାର୍, ପେଟପୋଷିବାକୁ ସରକାରୀ ଚାକିରିଟିଏ କରିଛି ଯେଉଁଥିରେ କି ବଦଳି ଅନିବାର୍ଯ୍ୟ । ମୋ ପାଇଁ ଆପଣ ଏତେବଡ ଲୋକ, ମୁହଁ ହରାନ୍ତୁ ନାହିଁ । ତା' ଛଡା ବଦଳି ଅର୍ଡର କ୍ୟାନସେଲ୍ ହେଲେ ମୁଁ ସେ ସବୁ ମୋ ସ୍ୱାର୍ଥ ପାଇଁ କରାଇଛି ବୋଲି ବଦ୍‌ନାମରେ ପଡ଼ିବି । ଏ କଥାଶୁଣି ଗଡ଼ନାୟକ ମୋ ଅନୁରୋଧର ମର୍ମ ବୁଝିଲେ ଓ ସେଥିରୁ ନିବୃତ୍ତ ହେଲେ ।

ସ୍ୱର୍ଗତ ଗଡ଼ନାୟକଙ୍କର ଉତ୍ତୁଙ୍ଗ କବି ପ୍ରତିଭା ଓଡ଼ିଆ ସାହିତ୍ୟରେ ଚିରକାଳ ଅମ୍ଳାନ ରହିବ । ତାଙ୍କର ଶବ୍ଦ ଚୟନ ଶୈଳୀ ଅନନ୍ୟ. ଏବଂ ଅନତି କ୍ରମ୍ୟ ଏଥିରେ ସନ୍ଦେହ ନାହିଁ । ମୁଁ ସେହି ଅମର ଆତ୍ମାଙ୍କ ନିକଟରେ ବିନମ୍ର ଶବ୍ଦାଞ୍ଜଳି ଜଣାଉଛି ।

ନିତ୍ୟନୂତନ - ୧.୫.୧୯୯୯

# ଭଗ୍ନଜାନୁ ଓଡ଼ିଶା ସାହିତ୍ୟ ଏକାଡେମୀ

ଓଡ଼ିଆ ଭାଷାର ଉନ୍ନତି ପାଇଁ ଆମେ ସାହିତ୍ୟିକମାନେ ଚେଷ୍ଟା କରୁଥାଇଁ ରାଜ୍ୟ ସରକାର ଓଡ଼ିଶା ସାହିତ୍ୟ ଏକାଡେମୀ ଗଠନ କରି ତାର ସୁପରିଚାଳନା ପାଇଁ କେତେକ ଜ୍ଞାନୀ ତଥା ବିଜ୍ଞ ବ୍ୟକ୍ତିଙ୍କୁ ନିଯୁକ୍ତି ଦିଅନ୍ତି । ଏହା ଏକ ସ୍ୱୟଂଶାସିତ ଅନୁଷ୍ଠାନରୂପେ ରାଜ୍ୟ ସଂସ୍କୃତି ବିଭାଗର ସହଯୋଗକ୍ରମେ ପରିଚାଳିତ ହୋଇଥାଏ ।

ମାତ୍ର ସାହିତ୍ୟିକମାନେ ଅନୁଭବ କରୁଛନ୍ତି ଯେ, ବିଗତ କେତେ ବର୍ଷ ହେଲା ସାହିତ୍ୟ ଏକାଡେମୀ ଯେପରି ଲକ୍ଷ୍ୟଚ୍ୟୁତ ଓ ପଥଚ୍ୟୁତ ହୋଇଛି । ଏଥିରେ ଏକାଡେମୀର ଯେତିକି ଦୋଷ ନାହିଁ, ଦାୟିତ୍ୱ ନାହିଁ ତା'ଠାରୁ ବେଶୀ ଦାୟୀ ଖୋଦ୍ ସଂସ୍କୃତି ବିଭାଗ । ସଂସ୍କୃତି ବିଭାଗର ଦୁର୍ନୀତି, ଶଠତା ତଥା କଠୋର ହସ୍ତକ୍ଷେପ ବସ୍ତୁତଃ ଏକାଡେମୀକୁ ପଙ୍ଗୁକରି ଦେଇଛି । ଏହାର ଉଦାହରଣ ଆମ ନିକଟରେ ଉଚ୍ଚନ୍ୟାୟାଳୟର ନିର୍ଦ୍ଧାରଣରୁ ସ୍ପଷ୍ଟ ରୂପେ ଦେଖିଲେ । ଏହି ବିଭାଗଟି ଯେପରି ରାହୁଗ୍ରସ୍ତ ହୋଇ ବହୁ ତ୍ରୁଟିପୂର୍ଣ୍ଣ ନିର୍ଣ୍ଣୟ ନେବା ସହିତ ରାଜାରାମମୋହନ ଫାଉଣ୍ଡେସନ ତରଫରୁ ବହିକିଣା ପାଇଁ ବଛାବଛି ବ୍ୟାପାରରେ ସମ୍ପୂର୍ଣ୍ଣରୂପେ ଉଲଗ୍ନ ହୋଇଯାଇଛି । ସରକାରୀ ତଞ୍ଚକତା ସମ୍ପର୍କରେ ବହୁ ଅଭିଯୋଗ ବିଭାଗୀୟ ମନ୍ତ୍ରୀ ଏବଂ ମୁଖ୍ୟମନ୍ତ୍ରୀଙ୍କର ହସ୍ତଗତ ହୋଇଥିବାର ଜଣାଯାଏ ।

ବିବଦମାନ ବ୍ୟକ୍ତିଟି ବିଦାୟ ନେଇଥିଲେ ମଧ୍ୟ ସାହିତ୍ୟ ଏକାଡେମୀର ଭଗ୍ନଜାନୁ ଅଦ୍ୟାବଧି ସଳଖିନାହିଁ ବୋଲି ସାହିତ୍ୟିକମାନଙ୍କର ମତ । ତେଣୁ ନ୍ୟାୟ-ଲେଖକ-ପ୍ରକାଶକଙ୍କଠାରୁ ପ୍ରତ୍ୟାହୃତ ହୋଇ ମୁଷ୍ଟିମେୟ ଲାଭଖୋର ପ୍ରକାଶକମାନଙ୍କ ଦ୍ୱାରା କିଣା ହୋଇଥିବାର ଦୁଃସମ୍ବାଦରେ ଓଡ଼ିଆ ସାହିତ୍ୟ ଜଗତ ଆଜି ମ୍ରିୟମାଣ । ଏଥିପାଇଁ ଦାୟୀ ବ୍ୟକ୍ତିଙ୍କୁ ଓଡ଼ିଶା ସରକାର ସମୁଚିତ ଦଣ୍ଡବିଧାନ କରିବା ସହିତ ଏକାଡେମୀ ପ୍ରତି ତୁଟି ଯାଇଥିବା ଆସ୍ଥା ଓ ବିଶ୍ୱାସକୁ ଲେଖକ/ଲେଖିକାମାନଙ୍କ ମଧ୍ୟରେ ଫେରାଇ ଆଣିବା ସର୍ବାଦୌ ବାଞ୍ଛନୀୟ ।

କାରଣ ଯଦି ସାହିତ୍ୟିକମାନେ ସାହିତ୍ୟ ଏକାଡେମୀରୁ ମୁହଁ ଫେରାନ୍ତି ତେବେ ତାହା କ'ଣ କେବଳ ଅମଲାମାନଙ୍କ ପାଇଁ ନା ସ୍ୱାର୍ଥପର ପ୍ରଶାସକଙ୍କ ପାଇଁ ଖୋଲା ରହିବ ? ?

- ନିତ୍ୟନୂତନ

# ଓଡ଼ିଶାର ଭୂସ୍ୱର୍ଗ ସୁଙ୍କି

ଆଗରୁ କହିଛି – ନୀଚମନା ଏବଂ ଚକ୍ରାନ୍ତକାରୀମାନଙ୍କ ଚକ୍ରାନ୍ତରେ ମୋର ସୁଙ୍କିକୁ ବଦଳି ହେଲା । ମୋର ୧୯୮୮ ମସିହାରେ ଜୟପୁରରୁ ଯେତେବେଳେ ରାୟଗଡ଼ାକୁ ବଦଳି ହେଲା, ମୁଁ ଭାବିଲି ମୁଁ ସୁଙ୍କି ଜାଗାଟା କେଉଁଠି ତ ଦେଖିପାରିଲି ନାହିଁ । ଈଶ୍ୱର ମୋର ସେଦିନର ମନୋଭାବ ଜାଣି ବୋଧହୁଏ ସୁଙ୍କିରେ ପୋଷ୍ଟିଂ କରିଦେଲେ ।

ପିଲାମାନଙ୍କୁ ରାୟଗଡ଼ା କ୍ୱାଟର୍ସରେ ଛାଡି ମୁଁ ସୁଙ୍କିରେ ଚାକିରିରେ ଯୋଗଦେବାକୁ ଗଲି । ରାୟଗଡ଼ାରୁ ଟ୍ରେନରେ ବିଜୟନଗର ଯାଇ ସେଠାରୁ ବସ୍‌ରେ ଯିବାକୁ ହେବ ବୋଲି ପଚାରି ବୁଝିଲି । ଏକୁଟିଆ ଗୋଟିଏ ବେଡିଂ ଓ ସୁଟ୍‌କେସ୍ ଧରି ବାହାରିଲି । ହଁ, ଗୋଟିଏ ମଜାଘଟଣା ଆସିବା ବାଟରେ ଉଲ୍ଲେଖ ନକରି ରହିପାରୁ ନାହିଁ । ମୁଁ ବିଜୟନଗର ଷ୍ଟେସନରେ ଓହ୍ଲାଇ ବାହାରକୁ ଆସି ଦେଖିଲି ଦୁଇଟି ଓଡ଼ିଶା ଷ୍ଟେଟ୍ ଟ୍ରାନ୍ସପୋର୍ଟ ବସ୍ ଠିଆ ହୋଇଛି । ଗୋଟିଏ ଜାଗାରେ ଗୁଡ ଚାରିପଟେ ଜନ୍ଦା ବେଢ଼ିବା ଭଳି ଲୋକ ବେଢ଼ିଛନ୍ତି । ମୁଁ ପଚାରି ବୁଝିଲି ବସ୍ ପାଇଁ ନମ୍ବର କରାଯାଉଛି । ଅର୍ଥାତ୍ ନିଜର ନାଁ କହିଲେ ସେ ଲିଷ୍ଟରେ ନାଁ ଚଢ଼ିବ । କଣ୍ଡକ୍ଟର ସେହି ଲିଷ୍ଟ ଅନୁସାରେ ଟିକେଟ୍ କାଟିଦେବ । ଟିକେଟ୍‌ରେ ସିଟ୍ ନମ୍ବର ପଡୁଥାଏ । ମୁଁ ସେ ଗହଳି ଭିତରକୁ କୌଣସିମତେ ମୁହଁ ଗଳାଇ ମୋ ନାଁ କହିଲି । ମାତ୍ର ବହୁତ ଗହଳି ଥିବାରୁ ମୋ ନାଁ ଲିଷ୍ଟ୍‌ରେ ଚଢ଼ିପାରିଲା ନାହିଁ । ମୁଁ ସେଠରେ ପଚାରି ବୁଝିଲି – ଏ ଲିଷ୍ଟ କରିବାବାଲା କ'ଣ ଟ୍ରାନ୍ସପୋର୍ଟ ବିଭାଗର ? ଜଣେ କହିଲେ – ନା, ପାସେଞ୍ଜରମାନେ ଗୋଟିଏ ଲିଷ୍ଟକରି କଣ୍ଡକ୍ଟରକୁ ଦିଅନ୍ତି ।

ମୁଁ ସେଠାରୁ ଚାଲିଆସିଲି । ପକେଟ୍‌ରୁ କାଗଜ କାଢ଼ି ଡାକିଲି – ଟିକେଟ୍ ପାଇଁ ଲିଷ୍ଟ ଏଠାରେ ହେଉଛି, ଯେ ଯିବେ ଆସନ୍ତୁ । କହିବା ବାହୁଲ୍ୟ– ମୋ ନିଜ ନାଁଟି ପ୍ରଥମେ ଲେଖିଲି । ଚାହୁଁ ଚାହୁଁ ମୋ ଚାରିପଟେ ଲୋକେ ବେଢ଼ିଗଲେ । ମୁଁ ପ୍ରାୟ ୩୦ ଜଣ ଲୋକଙ୍କର ଗୋଟାଏ ଲିଷ୍ଟ କଲି । କଣ୍ଡକ୍ଟର ଆସିବାରୁ ସେ ଭଦ୍ରଲୋକ

ତାଙ୍କ ଲିଷ୍ଟ ଦେଲେ ଏବଂ ମୁଁ ମଧ୍ୟ ମୋ ଲିଷ୍ଟ ଦେଲି । ସେ ମତେ ପଚାରିଲେ – ଆପଣଙ୍କୁ ଲିଷ୍ଟ କରିବାକୁ କିଏ କହିଲା ? ମୁଁ ତାଙ୍କୁ ପଚାରିଲି – ଆପଣଙ୍କର କ'ଣ ଲିଷ୍ଟ କରିବାର ଅଥରିଟି ଅଛି, ଯେଉଁଟାକି ମୋର ନାହିଁ ? ମୁଁ କଣ୍ଡକ୍ଟର ସହିତ କଥା ହେଉଛି, ଆପଣଙ୍କ ସହିତ ନୁହେଁ । କଣ୍ଡକ୍ଟର ବୋଧହୁଏ ପ୍ରଥମେ ସେଦିନ ଏଭଳି ଗୋଟାଏ ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ । ଆମ ୨ ଜଣଙ୍କୁ ଡାକି କହିଲେ – ଏ ଲିଷ୍ଟରୁ ଜଣେ ଓ ସେ ଲିଷ୍ଟରୁ ଜଣେ କରି ଟିକେଟ୍ କାଟିବେ । ତେଣୁ ତାଙ୍କ ଲିଷ୍ଟର ସେ ୧ ନମ୍ବର ଟିକେଟ୍ ପାଇବାବେଳେ ମୁଁ ଠିକ୍ ତାଙ୍କ ପାଖ ସିଟ୍‌ରୁ ୨ ନମ୍ବର ଟିକେଟ୍ ପାଇଲି । ମୁଁ ସୁଙ୍କିରେ ଓହ୍ଲାଇବା ଯାଏ ସେ ଭଦ୍ରଲୋକ ମୋ ସହିତ ଆଉ କଥାବାର୍ତ୍ତା କରିନାହାନ୍ତି । ସୁଙ୍କିରେ ମୁଁ ଜଏନ୍ କରିବାକୁ ଯାଉଛି ଶୁଣି, କଣ୍ଡକ୍ଟର ମୋ ସୁଟ୍‌କେସ୍ ଧରି ଓ ବେଡିଂକୁ ହେଲ୍‌ପର ହାତରେ ଧରାଇ ମତେ ଅଫିସ୍‌ରେ ନେଇ ଛାଡିଲେ । ରାଜ୍ୟର ସୀମାନ୍ତ ଚେକ୍‌ଗେଟ୍ ହୋଇଥିବାରୁ ସେଠାରେ ବସକୁ ମଧ୍ୟ ଟି.ଜି.ଆର କରିବାକୁ ପଡେ । ତାହାଛଡା ସୀମାନ୍ତ ଗେଟ୍‌ରେ ଏମ.ଭି. ଆକ୍ଟରେ କ୍ଷମତା ଥାଏ । ତେଣିକି ଯିବାଆସିବାରେ ଆଉ କେବେ ଅସୁବିଧା ହୁଏନା, ସମସ୍ତେ ଜାଣିଗଲେ ଚିହ୍ନିଗଲେ । ତେବେ ସେଦିନ ମୋ ମୁଣ୍ଡକୁ ସେ ବୁଦ୍ଧି କେମିତି ଜୁଟିଲା । ମୁଁ ପରେ ଭାବିଲେ ଆଶ୍ଚର୍ଯ୍ୟ ହେଉଥିଲି ।

ସୁଙ୍କି ସ୍ଥାନଟି ଠିକ୍ ସାଲୁର୍ ଘାଟର ଶେଷରେ । ଅଳ୍ପ ଗୋଟିଏ ଅଣଓସାରିଆ ଅଧିତ୍ୟକା । ତୀଖ ପାହାଡର ପାଦଦେଶରେ କୁଳୁକୁଳୁ ନାଦରେ ଝରଣାଟିଏ ବହିଚାଲିଛି । ସେଇଠୁ ଆରମ୍ଭ ସୁଙ୍କି ଘାଟ । ପ୍ରାୟ ୧୦/୧୨ କି.ମି. ପରେ ପଡେ ସେମିଳିଗୁଡା । ନାଳ କୂଳରେ ଅନିର୍ବଚନୀୟ ଶୋଭାଶ୍ରୀ ଧାରଣ କରି ସୁଙ୍କି ସେଠାରେ ବିଦ୍ୟମାନ । ଜଣେ ଇଂରେଜ ଇଂଜିନିୟର ସୁକ୍ ସେ ରାସ୍ତାର ପରିକଳ୍ପନା କରିଥିବାରୁ ମାପଚୁପ କରିଥିବାରୁ ତାଙ୍କ ନାମାନୁସାରେ ସ୍ଥାନଟିର ନାମ ସୁଙ୍କି । ଚିରହରିତ ପର୍ବତ ଶ୍ରେଣୀ କୋଳରେ ଲାଳିତପାଳିତ ଏଠାରେ ଗୋଟିଏ ଆଦିବାସୀ ଗାଁ ଓ କେତୋଟି ସରକାରୀ ଅଫିସ । ବିଜୁଳି ଆଲୁଅ ନାହିଁ । ଲଣ୍ଠନ ଜାଳି ଚଳୁ । ଗୋଟିଏ ମାତ୍ର କ୍ବାର୍ଟର୍ସ ଅଫିସରଙ୍କ ପାଇଁ । ଆଉ ଗୋଟିଏ ବାରାକ୍ ଅଫିସ୍‌କୁ ଲାଗି ୨ ଜଣ ଇନ୍ସପେକ୍ଟରଙ୍କ ପାଇଁ ।

ତାହାଛଡା ଫରେଷ୍ଟ, ଡେପୁଟୀ ରେଞ୍ଜର, ସପ୍ଲାଇ ଇନ୍ସପେକ୍ଟ, ଜୁନିଅର ଏମ.ଭି.ଆଇ ପୋଲିସ ଏ.ଏସ.ଆଇ ଓ ୪ ଜଣ କନଷ୍ଟେବଲଙ୍କୁ ନେଇ ଚେକ ଗେଟ୍ ଚାଲେ । ଆମର ପିଅନ ୩ ଜଣ ସେଠରେ ଓ ଜଣେ ଅଫିସରଙ୍କୁ ଛାଡି ଆଉ ସମସ୍ତେ ରୀତିମତ ମଦ ପିଅନ୍ତି । ବିଦେଶୀ ଦୁର୍ଲଭ । ଦେଶୀର କାମ ଚଳାନ୍ତି ।

ମୁଁ ସେଠାରେ ରହିବା ପରେ ସେଠାକାର ଅତ୍ୟନ୍ତ ଲଙ୍କାମରିଚ ପ୍ରାଦୁର୍ଭାବରେ ଆଦୌ କେଉଁଠି କିଛି ଖାଇପାରିଲି ନାହିଁ । ତେଣୁ ନିଜେ ହାତରୁ ଟଙ୍କା ଖର୍ଚ୍ଚ କରି ତଳ ସିମେଣ୍ଟ ଓ ଇଟା ତଥା ଚାଳ ନଡା ଛପର ଘରଟିଏ ତିଆରି କରି ମୋ କୁଟୁମ୍ବକୁ ନେଇ ରହିଲି । ସେତେବେଳେ କୁଟୁମ୍ବ କହିଲେ ମୋର ଜ୍ୟେଷ୍ଠା କନ୍ୟା ଇନ୍ଦୁ (ଗାଳ୍ପିକା ଇନ୍ଦୁରେଖା ପଣ୍ଡା), ମୋ ପତ୍ନୀ ଏବଂ ମୋ ବୋଉ । ତାହାଛଡା ମୋ ବଡଭାଇଙ୍କର ଗୋଟିଏ ୪ ବର୍ଷର ପୁଅ ମୋ ପାଖରେ ରହୁଥାଏ ।

ସୁଙ୍କିର ଜଳବାୟୁ ଅବିସ୍ମରଣୀୟ । ଖରାଦିନେ ଗୋଟିଏ ଫୁଲ୍‌ସାର୍ଟରେ ଦିନସାରା ଚଳିଯାଏ ମାତ୍ର ସନ୍ଧ୍ୟା ପରେ ଗୋଟାଏ ହାଲୁକା ସୁଏଟର ଦରକାର । ଶୀତଦିନର ଥଣ୍ଡା ଅକଳ୍ପନୀୟ । ରାତିରେ ଫୁଲ୍‌ପ୍ୟାଣ୍ଟ, ସାର୍ଟ, ସୁଏଟର, ଗୋଡରେ ମୋଜା ଓ ହାତରେ ମୋଜା, ମୁଣ୍ଡରେ ମଙ୍କି କ୍ୟାପ୍ ପିନ୍ଧି କମ୍ବଳ ୨ ଟା ଘୋଡେଇ ହୋଇ ଶୋଇଲେ ବି ପାହାନ୍ତା ପହରକୁ ସବୁ ହେମାଳ ଲାଗେ । ଘରର ନଡାଛପର ଉପରେ ବରଫରଗୋଟାଏ ଆସ୍ତରଣ ପଡ଼ିଥାଏ । ସକାଳେ ସୂର୍ଯ୍ୟୋଦୟ ପରେ ଚାଳରୁ ବରଫ ତରଳି ବର୍ଷା ଭଳି ଚାରିପାଖରେ ଚାଳରୁ ପାଣି ପଡେ । ଘରଟିଏ କରି ବରପାଲି ପାଇଖାନାଟିଏ କରିଥିଲେ ମଧ୍ୟ ମୁଁ ନିକଟସ୍ଥ ଝରଣାକୁ (ନାଳ) ଗୋଧୋଇ ଯାଏ । ପଥର ସନ୍ଧି ଦେଇ ଅପୂର୍ବ ସଂଗୀତ ଧ୍ୱନି ସୃଷ୍ଟି କରି ବହିଯାଉଥିବା ଝରଣାଟି ମତେ ଖୁବ୍ ଆକର୍ଷଣୀୟ ଲାଗେ । ମୁଁ ପଥରମାନ ସ୍ରୋତ ମୁହଁରେ ଥୋଇ ତାକୁ ଅଟକାଇ ଗୋଟିଏ ବଡ ପଥରଖଣ୍ଡ ବାଟ ଦେଇ ନେଇଯାଏ । ସେହି ପଥର ଉପରେ ବସି ବହୁସମୟ ଧରି ଗାଧାଏ ।

ମୁଁ ଯେଉଁଠି ରହେ, ପାଖଆଖ ସବୁ ବିଭାଗ ସହିତ ଯୋଗସୂତ୍ର ରକ୍ଷା କରେ । ତାହାଛଡା କିଛି ଗଠନମୂଳକ କାମ କରିବା ମୋର ଅଭ୍ୟାସ । ମୁଁ ସୁଙ୍କିରେ ଅଫିସ୍ ଆଗରେ ଇଉକାଲିପଟାସ୍ ଗଛମାନ ଲଗାଇ ତା'ର ଯତ୍ନ ନିଏ । ମୋ ଥିବା ଭିତରେ ଗଛସବୁ ଖୁବ୍ ବଢ଼ିଗଲେ । ମୋ ଘର ଆଗରେ ଗୋଟିଏ ଚମ୍ପାଗଛ ଲଗାଇଲି । ମୋ ଘରଠାରୁ ଅଫିସ୍ ମାତ୍ର ୩୦/୪୦ ଫୁଟ୍ ଦୂର । ମାତ୍ର ସେତକ ଚଲାରାସ୍ତାର ଦୁଇପାଖରେ ୫/୬ ଫୁଟ୍ ଉଚ୍ଚ ବଣୁଆ ଘାସ ଥିଲା । ମୁଁ ସେସବୁ କଟାଇ ସେଠାରେ ଗୋଟିଏ ବାଡମିଣ୍ଟନ ଫିଲ୍ଡ କଲି । ଫୁରୁସତ୍ ସମୟରେ ସେଠାରେ ଆମେ ଖେଳୁ ।

ନିତ୍ୟ ନୂତନ

# ମିନି ତେହେଲ୍‌କା

ଭାରତର ରାଜନୈତିକ ମଞ୍ଚରେ ପୁଣି ଗୋଟାଏ ଭୂମିକମ୍ପ ସୃଷ୍ଟି ହୋଇଛି । ତେହେଲ୍‌କା ଘଟଣା ମନକୁ ସମ୍ପୂର୍ଣ୍ଣ ରୂପେ ଅପସାରିତ ନହେଉଣୁ ପୁଣି ଗୋଟିଏ ମିନି ତେହେଲ୍‌କା ମଞ୍ଚସ୍ଥ ହେଲା । ଏଥର ବଳି ପଡ଼ିଲେ କେନ୍ଦ୍ରମନ୍ତ୍ରୀମଣ୍ଡଳର ପରିବେଶ ବିଭାଗ ରାଷ୍ଟ୍ରମନ୍ତ୍ରୀ ଦିଲୀପ୍ ସିଂହ ଯୁଦେଓ । ଟି.ଭି ଚାନେଲ୍‌ରେ ପ୍ରସାରିତ ହେବାରୁ ଦେଶବାସୀ ଦେଖିଲେ ଜଣେ ଲୋକ ସହିତ ମନ୍ତ୍ରୀ କଥାବାର୍ତ୍ତା ହେଉଛନ୍ତି । ପୁଣି ତାଙ୍କ ଠାରୁ ଟଙ୍କାବିଡା ନେଇ ମୁଣ୍ଡରେ ମାରି ରଖୁଛନ୍ତି । ଯୁଦେଓ ଏହି ଘଟଣାକୁ ଅସ୍ୱୀକାର କରିଥିଲେ ମଧ ନିଜର ରାଜନୈତିକ ସ୍ଥିତି ଓ ପତିଆରା ବଜାୟ ରଖିବା ପାଇଁ ନୈତିକ ଦୃଷ୍ଟିରୁ ଇସ୍ତଫା ଦେଇଛନ୍ତି । ପ୍ରଧାନମନ୍ତ୍ରୀ ଏହି ଇସ୍ତପା ଗ୍ରହଣ କରିବାକୁ ସୁପାରିଶ କରିବା ସଙ୍ଗେ ସଙ୍ଗେ ଏହାର ତଦନ୍ତ ଭାର ସି.ବି.ଆଇକୁ ଅର୍ପଣ କରିଛନ୍ତି ।

ଏହାଦ୍ୱାରା ରାଜନେତାମାନେ ଯେ କୋଟି କୋଟି ଟଙ୍କା ଲାଞ୍ଚ ନେବା କାରବାରରେ ଜଡ଼ିତ ଏହି ଜନଶ୍ରୁତି ପ୍ରତିଷ୍ଠିତ ସତ୍ୟରେ ପରିଣତ ହୋଇଥିବାର ଜଣାପଡେ । ଏହି ଘଟଣାକୁ ବି.ଜେ.ପି. ସଭାପତି ଭେଙ୍କେୟା ନାଇଡୁ କହନ୍ତି - କଂଗ୍ରେସୀ ଚାଲ୍ । କେତେକ ମତ ଦିଅନ୍ତି ତାହା ଛତିଶଗଡ଼ର ମୁଖ୍ୟମନ୍ତ୍ରୀ ଅଜିତ୍ ଯୋଗୀଙ୍କ ଚାଲ୍ । କଂଗ୍ରେସ ମୁଖପାତ୍ର ଅମ୍ବିକା ସୋନୀ ତାକୁ ବରଖାସ୍ତ କରି ଆରେଷ୍ଟ କରିବାକୁ ଦାବି କରିଛନ୍ତି । ଜୟପାଲ୍ ରେଡ୍ଡି ଅତ୍ୟନ୍ତ ବାବଦୂକ ହୋଇ ଗୋଟିଏ ଜୋକର ଭୂମିକା ଗ୍ରହଣ କରି  କେବଳ ପରିହାସର ପାତ୍ର ହୋଇଛନ୍ତି ।

ମାତ୍ର ଘଟଣାଟିକୁ ବିଭିନ୍ନ ଦିଗରୁ ବିଚାର କଲେ ଜଣାଯାଏ ଯେପରି ସେହି ଘଟଣା ପଛରେ କଂଗ୍ରେସର ପ୍ରଚ୍ଛନ୍ନ ହାତ ରହିଛି । କାରଣ ଜୁଦେଓଙ୍କୁ ବିଜେପି ଛତିଶଗଡ଼ର ମୁଖ୍ୟମନ୍ତ୍ରୀ ଭାବେ ପ୍ରୋଜେକ୍ଟ କରିଥିଲା । ତା’ଛଡା ଛତିଶଗଡ଼ରେ ସେ ଜଣେ ଲୋକପ୍ରିୟ ବ୍ୟକ୍ତି । ଅନ୍ୟ ଦିଗରେ ଅଜିତ୍‌ଯୋଗୀ ବିଭିନ୍ନ ଅପରାଧ ଜନିତ ମାମଲାରେ ଛନ୍ଦି ହୋଇ ଅଦାଲତରୁ ସମନ୍ ପାଇ ସାରିଲେଣି । ମିଥ୍ୟାଚାର, ଠକେଇ

ଓ ଜାଲିଆତି ଆଦି ଧାରାରେ ଚାର୍ଜସିଟ୍ ହେବାପରେ ମଧ୍ୟ ନିତାନ୍ତ ନିର୍ଲଜ୍ଜ ଭାବରେ ସେ ଚଉକିକୁ କୁଣ୍ଢାଇ ଧରିଛନ୍ତି । ସରକାରୀ ଖର୍ଚ୍ଚରେ ଯୋଗୀଙ୍କର ଫଟୋ ଥାଇ ସ୍କୁଲ୍ ବ୍ୟାଗମାନ ପିଲାମାନଙ୍କୁ ବଣ୍ଟା ଯାଇଥିବାବେଳେ ପଚାଶ ହଜାର ବ୍ୟାଗ୍ ସିଜ୍ କରାଯାଇଛି । ଏ ସମସ୍ତ ଅପକୀର୍ତ୍ତି ସତ୍ତ୍ୱେ ଜୟପାଲ୍ ରେଡ୍ଡି କମ୍ବା ଅମ୍ବିକା ସୋନୀ କେବେହେଲେ ତାଙ୍କର ଇସ୍ତଫା ଦାବି କରି ନାହାନ୍ତି । ସେ ବିଷୟରେ ସୋନିଆ ଗାନ୍ଧି ମଧ୍ୟ ଚୁପ୍ । ସି.ବି.ଆଇ ରିପୋର୍ଟ ଉପରେ କ୍ରିମିନାଲ୍ କେସ୍ ଆରମ୍ଭ ହେବା ପରେ ସେମାନେ ଏହାକୁ ସି.ବି.ଆଇର ପକ୍ଷପାତିତା ବୋଲି ମତ ଦେଇଛନ୍ତି । ଏହି ଗାଲୁଆମୀ କଂଗ୍ରେସର ସହଯୋଗୀ ଲାଲୁ ଯାଦବଙ୍କଠାରୁ ଆରମ୍ଭ ହେଲା । ତଥାପି କୋର୍ଟର ସମନ ପାଇବା ପରେ ଲାଲୁ ମୁଖ୍ୟମନ୍ତ୍ରୀତ୍ୱ ନିଜର ନିରକ୍ଷରା ପତ୍ନୀଙ୍କୁ ଅର୍ପଣ କରି କଣ୍ଢେଇ ନାଚ ଦେଖାଉଛନ୍ତି । ମାତ୍ର ମୁଖଲଜ୍ଜା ଦୃଷ୍ଟିରୁ ନୈତିକତା ଦୃଷ୍ଟିରୁ ଅଜିତ୍ ଯୋଗୀ ମୁଖ୍ୟମନ୍ତ୍ରୀତ୍ୱରୁ ଓହରି ଯାଇନାହାନ୍ତି ।

ଯୁଦେଓ ଘଟଣାର ସତ୍ୟତା ପରୀକ୍ଷା ନିରୀକ୍ଷା ହୋଇ ସତ୍ୟ ଲୋକ ଲୋଚନକୁ ଆସିବ ନିଶ୍ଚୟ । ମାତ୍ର ଏହି ଘଟଣାରେ ସବୁଠାରୁ ଉପକୃତ ହେଉଥିବା ଅଜିତ୍ ଯୋଗୀ ଯେ ଖଳନାୟକ ହୋଇନଥିବେ ତାହା ମଧ୍ୟ କୁହାଯାଇନପାରେ । ଗୋଟିଏ ସରଳ, ନିରୀହ ଚେହେରା ତଳେ ଅଜିତ୍‌ଙ୍କର ଶଠତା କ୍ରମଶଃ ସମସ୍ତ କଂଗ୍ରେସୀ ମୁଖ୍ୟମନ୍ତ୍ରୀଙ୍କୁ ଟପିଗଲାଣି । ତା ସତ୍ତ୍ୱେ ସେ ଜଣେ ଖ୍ରୀଷ୍ଟିଆନ ହୋଇଥିବାରୁ ସୋନିଆ ଗାନ୍ଧୀଙ୍କ ଆଶୀର୍ବାଦ ଅଦ୍ୟାବଧି ପାଇ ଚାଲିଛନ୍ତି ବୋଲି ହେଉଥିବା ଅପବାଦ ଏକାବେଳକେ ଅମୂଳକ ନୁହେଁ ।

୪ଟି ରାଜ୍ୟରେ ଆସନ୍ନ ନିର୍ବାଚନ ଦୃଷ୍ଟିରୁ ବି.ଜେ.ପି କିନ୍ତୁ ଘଟଣାଟିକୁ ଖୁବ୍ ଚତୁରତାର ସହିତ ସମାହିତ କଲା । କୌଣସି ଆପାତଯୋଗ୍ୟ ଦୁର୍ନୀତି ଅଭିଯୋଗ ଆସିବା ମାତ୍ରେ ବ୍ୟକ୍ତି ବିଶେଷଙ୍କୁ ମନ୍ତ୍ରୀତ୍ୱରୁ ଅବ୍ୟାହତି ଦେଇ 'ପାର୍ଟି' ତାର ନିର୍ମଳ ଭାବମୂର୍ତ୍ତିକୁ ସମ୍ଭାଳି ନେଲା । ଶାସନ ମଧ୍ୟ ସି.ବି.ଆଇକୁ ତଦନ୍ତ ଦାୟିତ୍ୱ ଦେଇ ନିଜ ସାର୍ଟରୁ ଧୂଳି ଝାଡି ଦେଲା । କଂଗ୍ରେସ ପାଇଁ ଆଉ ନୂଆ ଇସୁ ନଥିବାବେଳେ ଅଜିତ୍ ଯୋଗୀଙ୍କ ଦୁର୍ନୀତି ପ୍ରସଙ୍ଗ ବର୍ତ୍ତମାନ ବଡ ହୋଇ ଦେଖାଗଲା । ତେଲଗୀ ଘଟଣାରେ ୭ ଟି କଂଗ୍ରେସ ଶାସିତ ରାଜ୍ୟରେ ପ୍ରାୟ ୬୭ ହଜାର କୋଟି ଟଙ୍କାର ଦୁର୍ନୀତି ମଧ୍ୟ ଆଉ ଗୋଟିଏ ବଡ ଇସୁ ହେଲାଣି, ଯାହାକି ବାରାନ୍ତରେ ଆଲୋଚନା କରାଯିବ । ତେବେ ଏହି ମିନି ତେହେଲ୍‌କା ଘଟଣାରେ କିଏ ଲାଭରେ ରହିଲା ଓ କିଏ କ୍ଷତିରେ ରହିଲା, ତାହା ସମୟ କହିଦେବ ।

ସାହାଣମେଳା

# ପୁନଶ୍ଚ ହୃଷୀକେଶ

ଅବଶେଷରେ ଗୃହକମିଟି ରିପୋର୍ଟ ସର୍ବସାଧାରଣରେ ପ୍ରକାଶିତ ହେଲା । ବହୁ ବିଜ୍ଞ ସମାଜସେବୀ, ପତ୍ରକାର, ପତ୍ର ପତ୍ରିକାର ଅଗ୍ରଲେଖାମାନଙ୍କରେ ଯେଉଁ ଆଶଙ୍କା ପ୍ରକାଶ କରିଥିଲେ ତାହା ହିଁ ସତ୍ୟ ବୋଲି ପ୍ରମାଣିତ ହେଲା । ହୃଷୀକେଶ ପଣ୍ଡାଙ୍କ ଭଳି ଜଣେ ଦକ୍ଷ ଏବଂ ସଚ୍ଚୋଟ ଅଫିସରଙ୍କୁ ସେଠାରୁ ହଟାଇ କେତେକ ଟାଉଟର ଓ ଦୁର୍ନୀତି ପରାୟଣ ବ୍ୟକ୍ତିଙ୍କ ସ୍ୱାର୍ଥରକ୍ଷା କରିବା ପାଇଁ ଯେଉଁ ବ୍ୟୂହ ରଚନା କରାଯାଇଥିଲା - ମନ୍ତ୍ରୀ ବଳଭଦ୍ର ମାଝୀ ଏବଂ ବିଧାୟକ ସହରାଇ ଓରାମ ସେହି ବ୍ୟୂହରେ ଜୟଦ୍ରଥ ଭୂମିକା ଗ୍ରହଣ କରିଥିଲେ । ବିଧାନସଭାରେ ସମ୍ବିଧାନ ଏବଂ ଦେଶ ନାମରେ କରାଯାଉଥିବା ଶପଥପାଠ କୋର୍ଟ କଚେରୀର ଶପଥପାଠର ଉର୍ଦ୍ଧ୍ୱକୁ ଉଠିପାରି ନାହିଁ ବୋଲି ସମସ୍ତଙ୍କର ହୃଦବୋଧ ହେଲା ।

ତେବେ ବର୍ତ୍ତମାନ ସମଗ୍ର ଓଡ଼ିଶାରେ ଏହାର ପତିବାଦ ଶୁଭିବା ସହିତ ବିଧାନସଭାରେ ମଧ୍ୟ ତାହା ପ୍ରତିଧ୍ୱନିତ ହୋଇଛି । ହୃଷୀକେଶଙ୍କ ନାମରେ ବିଧାନସଭାରେ ଯେଉଁ ତୁମୂଳ କାଣ୍ଡ ସୃଷ୍ଟି ହୋଇ ଦୁଇଦିନ ଧରି ଅଚଳ ରହିଲା, ତାର ସମସ୍ତ ବ୍ୟୟ ଏହି ଦୁଇଜଣ ମିଥ୍ୟାରୋପକାରୀଙ୍କ ଠାରୁ ଆଦାୟ କରାଯାଉ । କେବଳ ସେତିକି ନୁହେଁ ସେମାନଙ୍କୁ ସର୍ବନିମ୍ନ ଦଣ୍ଡସ୍ୱରୂପ ସେମାନଙ୍କର ବିଧାନସଭା ସଭ୍ୟପଦ ରଦ୍ଦ କରାଯିବା ଉଚିତ୍ ।

ଏହାଛଡା ଗୃହକମିଟିର ନିର୍ଦ୍ଧାରଣରେ ଓଡ଼ିଶାର ଜନସାଧାରଣ ତଥା ବୁଦ୍ଧିଜୀବୀ ସନ୍ତୁଷ୍ଟ ନୁହନ୍ତି । ବିଚାର ପୂର୍ବରୁ ପଣ୍ଡାଙ୍କୁ ଦଣ୍ଡବିଧାନ କରାଯାଇଥିଲେ ହେଁ ମିଥ୍ୟାରୋପୀମାନଙ୍କ ବିଷୟରେ କମିଟି ନୀରବ । ମାତ୍ର ଶ୍ରୀ ପଣ୍ଡା ଲେଖିଥିବା ପତ୍ର ପାଇଁ କ୍ଷୁବ୍ଧ କମିଟି ତାଙ୍କୁ ମୃଦୁ ଭର୍ତ୍ସନା କରିବା ଭଳି ଲଘୁ ମନ୍ତବ୍ୟ କମିଟିର ସମ୍ମାନ ବୃଦ୍ଧି କରିନାହିଁ ।

ବର୍ତ୍ତମାନ ମୁଖ୍ୟମନ୍ତ୍ରୀ ଏବଂ ବାଚସ୍ପତିଙ୍କ ବିଜ୍ଞ ବିଚାରକୁ ସମସ୍ତେ ଚାହିଁ ରହିଛନ୍ତି । ସେତେବେଳେ ଦଣ୍ଡବିଧାନ ପୂର୍ବରୁ ଅନୁସନ୍ଧାନ ପାଇଁ ମୁଖ୍ୟମନ୍ତ୍ରୀଙ୍କ ବାରମ୍ବାର ପ୍ରତିଶ୍ରୁତିକୁ

ଯେଉଁମାନେ ଆଶାଳୀନ ତଥା ଅଶ୍ଳୀଳ କୁହାଟ ତଳେ ଚାପିଦେଇଥିଲେ, କାହିଁ ସେମାନେ ତ ମାନ୍ୟବର ( ? ) ମାନଙ୍କର ବିଧାନସଭାରେ ମିଥ୍ୟାଚାର ପ୍ରତି ସଚେତନ ଥିବାଭଳି ଜଣାଯାଉ ନାହିଁ ।

ମୋଟ୍ ଉପରେ ଏହି ହୃଷୀକେଶ ପଣ୍ଡା ମାମଲା ଓଡ଼ିଶା ବିଧାନସଭାରେ ବିଧାୟକମାନଙ୍କର, ମନ୍ତ୍ରୀଙ୍କର ବୌଦ୍ଧିକ ପରିପକ୍ୱତା ଉପରେ ଏକ ପ୍ରଶ୍ନବାଚୀ ସୃଷ୍ଟି କଲା ଯାହାକି କାଳ କାଳକୁ ଏକ ନିନ୍ଦିତ ପରମ୍ପରାର ହେତୁ ହୋଇ ରହିଯିବ ।

ଏହି ପରିପ୍ରେକ୍ଷୀରେ ଓଡ଼ିଶାର ସଚେତନ ଜନସାଧାରଣ ଆଶା କରନ୍ତି - ବିଧାୟକମାନେ କୌଣସି ଘଟଣାରେ ଭାବପ୍ରବଣ ନ ହୋଇ ପରିପକ୍ୱ ବୁଦ୍ଧିମତ୍ତାର ପରିଚୟ ଦିଅନ୍ତୁ । ନିଜର ସମ୍ମାନ ବଢ଼ାଇବା ସଙ୍ଗେ ସଙ୍ଗେ ବିଧାନସଭାରେ ମର୍ଯ୍ୟାଦା ରକ୍ଷା କରନ୍ତୁ । ଗଣତନ୍ତ୍ରର ମର୍ଯ୍ୟାଦା ପ୍ରତି ସଚେତନ ହୁଅନ୍ତୁ ।

ଭବିଷ୍ୟତରେ ଏହିଭଳି ମିଥ୍ୟାରୋପୀମାନଙ୍କ ପାଇଁ ଶାସ୍ତିବିଧାନ କରିବାକୁ ଆଇନ୍ ପ୍ରଣୟନ କରାଯିବା ପ୍ରତି ଧ୍ୟାନ ଦିଅନ୍ତୁ ।

ସାହାଣମେଳା - ୧୬.୧୧.୨୦୦୪

# ଭାଣ୍ଡ ଗୋପାଳ

ନିଜର ବ୍ୟକ୍ତିଗତ ସ୍ୱାର୍ଥ ସାଧନ ପାଇଁ ରାଜନୈତିକ ନେତାମାନେ କିଭଳି ଦେଶର ଅନିଷ୍ଟ ସାଧନ କରନ୍ତି ତାହା ଭାରତ ବିଭାଜନ ନେଇ ଜିନ୍ନା ଓ ନେହୁରୁଙ୍କ କ୍ରିୟାକଳାପରୁ ଆମେ ହୃଦୟଙ୍ଗମ କରିଛୁ । ବହୁବର୍ଷ ଧରି ଓଡ଼ିଶା ଗୋଟିଏ ବଗି ଭଳି କଲିକତା ଓ ପାଟନା ଇଂଜିନ୍ ସହତ ଯୋଡାଯିବା ପରେ ଓଡ଼ିଆ ଭାଷାଭାଷୀଙ୍କ ପାଇଁ ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ଆମର ପୂର୍ବସୂରୀମାନେ ବହୁତ୍ୟାଗ ସ୍ୱୀକାର କରିଛନ୍ତି । ଅବଶେଷରେ ୧ ୯୩୬ ମସିହାରେ ଯେଉଁ ଖଣ୍ଡିତ ଓଡ଼ିଶାଟି ଓଡ଼ିଆଙ୍କୁ ମିଳିଲା, ସେଥିରୁ ଫୁଲାଏ ଆନ୍ଧ୍ରରେ, ଫୁଲାଏ ଛତିଶଗଡ଼ରେ, ଫୁଲାଏ ଝାଡ଼ଖଣ୍ଡରେ ଏବଂ ଫୁଲାଏ ପଶ୍ଚିମବଙ୍ଗରେ ରହିଗଲା । ଆମ ରାଜ୍ୟର ଦୁର୍ବଳ ନେତୃତ୍ୱ, କେନ୍ଦ୍ରରେ ପ୍ରଭାବଶୂନ୍ୟତା ଏବଂ ଆମ ଲୋକଙ୍କର ସହସନଶୀଳତା ଯୋଗୁ ଆମେ ଆମର ବହୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ହରାଇ ବସିଲୁ । ଅଧିକନ୍ତୁ ଓଡ଼ିଶା କ୍ରମଗତ ଭାବରେ କେନ୍ଦ୍ରର ଅବହେଳାରୁ ଭାରତର ଦରିଦ୍ରତମ ରାଜ୍ୟରେ ପରିଣତ ହୋଇଛି ।

ଏହି ଦୁର୍ଦ୍ଦିନରେ ଜଣେ ବିଧାୟକ ବାଳଗୋପାଳ ମିଶ୍ରଙ୍କର କୋଶଳ ରଥରେ ପରିକ୍ରମା ଓ କୋଶଳ ରାଜ୍ୟପାଇଁ ଆହ୍ୱାନ କିଭଳି କାହାକୁ ସାହାଯ୍ୟ କରିବ ? ତାଙ୍କ ଯୁକ୍ତିରେ ପଶ୍ଚିମ ଓଡ଼ିଶା ଅବହେଳିତ । ଅଲଗାରାଜ୍ୟଟିଏ ହେଲେ ତା'ର ଉନ୍ନତି ହେବ । ସମଗ୍ର ଓଡ଼ିଶା ଯେତେବେଳେ ଅବହେଳିତ, ତାର ଗୋଟିଏ ଅଂଶକୁ ଅବହେଳିତ କହି ସଂକୀର୍ଣ୍ଣ ଅଞ୍ଚଳକୁ ନେଇ ରାଜନୀତି କରିବା ନିଶ୍ଚିତରେ ନିନ୍ଦନୀୟ । ଉପକୂଳବର୍ତ୍ତୀ ଜିଲ୍ଲା ଭଦ୍ରକ, ଯାଜପୁର ଓ କେନ୍ଦ୍ରାପଡାରେ ବହୁଅଞ୍ଚଳ ପଶ୍ଚିମ ଓଡ଼ିଶାର ବହୁ ଅଞ୍ଚଳଠାରୁ ଅନୁନ୍ନତ, ଅବହେଳିତ । କାହିଁ ସେମାନେ ତ ଅଲଗା ରାଜ୍ୟ ଗଠନ କରିବାକୁ ଦାବି କରୁନାହାନ୍ତି !

ବଲାଙ୍ଗୀର ସହିତ ତୁଳନାରେ ଟିଟିଲାଗଡ଼ ବା ପାଟନାଗଡ଼ କ'ଣ ଅବହେଳିତ ନୁହେଁ ? ସମ୍ବଲପୁର ସହିତ ଦେବଗଡ଼କୁ ତୁଳନା କଲେ, ନୂଆପଡା ଓ ଭାବାନୀପାଟଣାକୁ ତୁଳନା କଲେ ବାଳଗୋପାଳ ତାଙ୍କ ଉତ୍ତର ପାଇଯିବେ । ତେବେ ସେ ସବୁ ଲୋକେ କାହିଁକି ବାଳଗୋପାଳଙ୍କ ଚକ୍ରାନ୍ତରେ ଶିକାର ହେବେ ?

ଶସ୍ତା ଲୋକପ୍ରିୟତା ପାଇଁ ନୂଆ ସ୍ଲୋଗାନଟିଏ ନେଇ କିଛି ଲୋକଙ୍କୁ ଭେଳେଇ ବାଳଗୋପାଳ ଯେଉଁ ବିପଜ୍ଜନକ ଖେଳ ଆରମ୍ଭ କରୁଛନ୍ତି, ତାର ଅନ୍ତ କେଉଁଠି ସେ ନିଜେ ମଧ୍ୟ ଜାଣିନାହାନ୍ତି । ସେ ଯେଉଁ କୋଶଳ ଭାଷାର ପ୍ରଶ୍ନ ଉଠାଇଛନ୍ତି, କୋଶଳୀ ବା ସମ୍ବଲପୁରୀକୁ ଓଡ଼ିଆ ଠାରୁ ଅଲଗା କରୁଛନ୍ତି । ସେ ଦୃଷ୍ଟିରୁ ଆଦିବାସୀମାନଙ୍କର ନିଜସ୍ୱ ଭାଷା ଅଛି, ଲିପି ଅଛି । ସେମାନେ କାହିଁକି କୋଶଳୀକୁ ଗ୍ରହଣ କରିବେ ? ଏହି ପ୍ରଶ୍ନ ଯେ କାଳକ୍ରମେ ପରବର୍ତ୍ତୀ ବାଳଗୋପାଳମାନେ ଉଠାଇବେ ସେ ବିଷୟରେ ଚିନ୍ତା କରିନାହାନ୍ତି ବୋଲି ମନେହୁଏ । ଆଦିବାସୀମାନଙ୍କର ସଂଖ୍ୟାକୁ ନେଇ ସୁନ୍ଦରଗଡ଼, କେନ୍ଦୁଝର ଓ ମୟୁରଭଞ୍ଜକୁ ଝାଡଖଣ୍ଡରେ ମିଶାଇବାର କ୍ଷୀଣ ଦାବିକୁ ବାଳଗୋପାଳ ପରୋକ୍ଷରେ ପ୍ରୋତ୍ସାହନ ଦେଇଛନ୍ତି । ତା ଛଡା ସେମାନଙ୍କର ଭାଷାକୁ ନେଇ ଆନ୍ଦୋଳନ ମଧ୍ୟ ଅଛି ।

ଭାରତୀୟ ରାଜନୀତିରେ ଜଣେ ଧୂର୍ତ୍ତ ଅଜିତ୍ ସିଂହ ହରିତ୍ ପ୍ରଦେଶ ଗଠନ ଆଳରେ ପ୍ରତ୍ୟେକ ମନ୍ତ୍ରୀମଣ୍ଡଳରେ ଦର୍ କଷି ସାମିଲ୍ ହେଲାଭଳି ବାଳଗୋପାଳ ବୋଧହୁଏ ପଶ୍ଚିମ ଓଡ଼ିଶା ନାମରେ ମନ୍ତ୍ରୀଟିଏ ହେବା ପାଇଁ ଦର କଷୁଛନ୍ତି । ନିଜ ପାଇଁ ଭବିଷ୍ୟତରେ ଆଉ କିଛି ସୁବିଧା ହାସଲ କରିବାକୁ ଏହି ସବୁ ଭୋଜବାଜିରେ ରାଜନୀତି କରୁଥିବା ଲୋକେ ଓସ୍ତାଦ୍ । ଶୁଣାଯାଏ, ପଶ୍ଚିମ ଓଡ଼ିଶା ଉନ୍ନୟନ ପରିଷଦର ଚେୟାରମ୍ୟାନ ପଦବୀକୁ ଲକ୍ଷ୍ୟରଖି ତାଙ୍କର ଧୂର୍ତ୍ତ ରାଜନୀତି ଆରମ୍ଭ କରିଛନ୍ତି । ଫଳତଃ ସେ ଓଡ଼ିଶାର ଜଣେ ନେତୃସ୍ଥାନୀୟ ବ୍ୟକ୍ତି ନହୋଇ ପଶ୍ଚିମ ଓଡ଼ିଶାର, ତାପରେ ବଲାଙ୍ଗୀରର ଏବଂ ଅବଶେଷରେ ନିଜ ଗାଁର ନେତାଟିଏ ହୋଇ ରହିଯିବେ ।

ଏକଦା ଏହି ବାଳଗୋପାଳମାନେ ଅନୁଗୁଳ ଓ ତାଳଚେର ଭିତରେ ଏମିତି ତିକ୍ତତା ସୃଷ୍ଟି କରିଥିଲେ ଯେ ଅନୁଗୁଳର ଛାତ୍ରମାନେ ତାଳଚେରକୁ ପରୀକ୍ଷା ଦେବାକୁ ଯିବାପାଇଁ ଶଙ୍କିତ ହେଉଥିଲେ । ଦେଶ ଓ ସମାଜର ମଙ୍ଗଳ ଚିନ୍ତା ନ କରି ବହୁ ସ୍ଥାନରେ ବହୁ ରାଜନୈତିକ ନେତା ଅଞ୍ଚଳ ଅଞ୍ଚଳ ଭିତରେ ବୈରତା ସୃଷ୍ଟି କରନ୍ତି, ଜାତି ଜାତି ଭିତରେ ଶତ୍ରୁତା ସୃଷ୍ଟି କରନ୍ତି ।

ତେଣୁ ଏହା ବାଳଗୋପାଳଙ୍କର ରାଜନୈତିକ ଭାଣ୍ଡାମୀର ଆଉ ଗୋଟିଏ ନୂତନ ଅଧ୍ୟାୟ ବୋଲି ବିଚାର କରାଯାଏ ।

ସାହାଣମେଳା - ୧.୧୧.୨୦୦୪

# ନିର୍ବାସିତା ବାଗ୍‌ଦେବୀ

ଅଳ୍ପ କେତେଦିନ ତଳେ ପଶ୍ଚିମବଙ୍ଗର ଶିକ୍ଷାମନ୍ତ୍ରୀ କାନ୍ତି ବିଶ୍ୱାସ ଗୋଟିଏ ଆଦେଶନାମା ଜାରି କରିଛନ୍ତି ଯେ ସରକାରୀ କିମ୍ବା ସରକାରୀ ସାହାଯ୍ୟପ୍ରାପ୍ତ ବିଦ୍ୟାଳୟମାନଙ୍କରେ/ଶିକ୍ଷାନୁଷ୍ଠାନରେ ସରସ୍ୱତୀ ବନ୍ଦନା ଗାନ କରାଯିବ ନାହିଁ । ଏହି ଆଦେଶ ପଛରେ କେଉଁଭଳି ମାନସିକତା କାର୍ଯ୍ୟ କରୁଛି ତାହା ବିଚାର୍ଯ୍ୟ ।

ହିନ୍ଦୁଧର୍ମ ଉଦାର ଏବଂ ହିନ୍ଦୁମାନେ ସହନଶୀଳ । ଏହାର ସୁଯୋଗ ନେଇ ଅତୀତରେ ଭାରତ ଓ ଭାରତୀୟଙ୍କ ଉପରେ ବହୁ ନିର୍ଯ୍ୟାତନା କରାଯାଇଛି । ଆକୁମାରୀ ହିମାଚଳର ଏକତ୍ୱବୋଧ ଆସେ କେଉଁଠୁ ? କମ୍ୟୁନିଷ୍ଟମାନଙ୍କର ନାସ୍ତିକତାବାଦରୁ ନୁହେଁ କିମ୍ବା ଚୀନ୍‌ର ସୈନ୍ୟଙ୍କୁ 'ମୁକ୍ତିବାହିନୀ' ଆଖ୍ୟା ଦେବାର ନୁହେଁ । ହଜାର ହଜାର ବର୍ଷର ସଂସ୍କୃତି ସମୃଦ୍ଧ ଭାରତ ବର୍ଷକୁ ବେଦ, ଉପନିଷଦ, ରାମାୟଣ ଓ ମହାଭାରତ ଆଦି ଏକତାବଦ୍ଧ କରି ରଖିଛନ୍ତି । ପ୍ରତି ଗୃହରେ, ଅନୁଷ୍ଠାନରେ, ସର୍ବସାଧାରଣରେ ପୂଜିତ ହେଉଥିବାର ଦେବାଦେବୀ ଏହି ଏକାତ୍ମବୋଧର ପ୍ରତୀକ, ଜାତୀୟ ଏକତାର ମେରୁଦଣ୍ଡ ।

ଆଜି ପଶ୍ଚିମବଙ୍ଗର କମ୍ୟୁନିଷ୍ଟ ଶାସକମାନେ ଖୁବ୍ ସନ୍ତର୍ପଣରେ ସେହି ଜାତୀୟ ଏକତାର ମୂଳ ଉତ୍ସ ଉପରେ କୁଠାରାଘାତ କରିଛନ୍ତି । ଆଉରଙ୍ଗଜେବ୍ ଓ ସିରାଜୌଦ୍ଦୁଲ୍ଲା ଅମଳରେ ହିନ୍ଦୁମାନଙ୍କ ଉପରେ ଲାଗୁ ହୋଇଥିବା ବିଭିନ୍ନ କଟକଣାଠୁ ଯେପରି ଏହି କମ୍ୟୁନିଷ୍ଟ କଟକଣା ଆହୁରି ଜଘନ୍ୟ । ଆହୁରି ପୀଡାଦାୟକ ।

ଏ ଦେଶରେ ରହି, ଏ ଦେଶରେ ପାଣି ପବନରେ ବଢ଼ି ଶତ୍ରୁ ଦେଶର ମଙ୍ଗଳ କାମନା କରୁଥିବା ମୁଷ୍ଟିମେୟ ସଂଖ୍ୟାଲଘୁଙ୍କୁ ସନ୍ତୁଷ୍ଟ କରିବାକୁ ଉଲ୍ଲସିତ କରିବାକୁ ଯାଇ କାନ୍ତି ବିଶ୍ୱାସ ଯେପରି ଭାରତୀୟ ଚେତନାସ୍ତରର ଏକତ୍ୱବୋଧ ଉପରେ, ଧର୍ମ ବିଶ୍ୱାସ ଉପରେ ଆଘାତ କରିଛନ୍ତି – ବିଦେଶୀ ଇଂରେଜ ସରକାର ମଧ୍ୟ ସେତିକି କରିନଥିଲା ।

ପୂର୍ବରୁ ତ ବାଗ୍‌ଦେବୀଙ୍କୁ କଳା ନାମରେ ଏମ୍.ଏଫ ହୋସେନ୍ ବିବସ୍ତ୍ରା କରିଥିଲେ । ଏହାର ପ୍ରତିବାଦ ହେବାରୁ ଦଳେ ଭଣ୍ଡ କଳାକାର ମଧ୍ୟ ତାଙ୍କୁ କଳା ନାମରେ ସମର୍ଥନ କଲେ । ତାଙ୍କ ବିଚାରରେ ନିଜର ମାତାଙ୍କର ଉଲଗ୍ନ ଚିତ୍ର ମଧ୍ୟ ଏକ କଳା ! ମାତ୍ର ହୁସେନ୍ ତାଙ୍କ ଧର୍ମର ମହମ୍ମଦଙ୍କୁ କିମ୍ବା ଅନ୍ୟ କୌଣସି ପୟଗମ୍ବରଙ୍କୁ ଏଭଳି ଭାବ୍‌ରେ ଚିତ୍ରିତ କରିବାକୁ ସାହସ କରି ପାରିବେ ନାହିଁ । ସେଠରେ ମୃତ୍ୟୁଦଣ୍ଡର ଫତୁଆ ଅଛି ।

ତେଣୁ ସମସ୍ତ ଅତ୍ୟାଚାର ହିନ୍ଦୁ ବିଶ୍ୱାସ ଉପରେ । ହିନ୍ଦୁ ଦେବାଦେବୀଙ୍କ ଉପରେ । କାରଣ ହିନ୍ଦୁ ଧର୍ମରେ ଫତୁଆ ନାହିଁ । ଯେତେବଡ ଅପରାଧ କଲେ ମଧ୍ୟ ଦଳେ ପଣ୍ଡିତମନ୍ୟ ମୂଢ଼ ତାହାର ଯୌକ୍ତିକତା ଦେଖାଇବାକୁ ବାହାରି ଆସିବେ ।

ବୈଦିକ ଯୁଗରୁ ଆରାଧ୍ୟା ବାଗ୍‌ଦେବୀ ପୂର୍ବରୁ ବିବସ୍ତ୍ରା ହୋଇ ଅପମାନିତା ହୋଇଥିଲେ । ମାତ୍ର ବର୍ତ୍ତମାନ ବଙ୍ଗଭୂମିରୁ ବିତାଡିତା ହେଲେ ଆଉ ଜଣେ ହୁସେନଙ୍କ ଦ୍ୱାରା ଏହା ବୋଧହୁଏ କମ୍ୟୁନିଜିମ୍‌ରେ ଏକ ଅନ୍ଧ ଆଦର୍ଶବୋଧ, ଏକ ବୀଭତ୍ସ ବିଚାର ।

ଆମେ ଅପେକ୍ଷା କରିବା; ବଙ୍ଗଳାର କମ୍ୟୁନିଷ୍ଟ ସରକାର ବଙ୍ଗଳାଦେଶର ଧର୍ମାନ୍ଧ ହିନ୍ଦୁ-ବିଦ୍ୱେଷୀ ସରକାର ସହିତ ହାତ ମିଳାଇ କେବେ ବଙ୍ଗଭୂମିରୁ 'ଦୁର୍ଗାପୂଜା' ବିରୁଦ୍ଧରେ ସରକାରୀ ଫତୁଆ ଜାରି କରିବେ ।

ହାୟରେ ଭାରତ ! ହାୟରେ ଭାରତୀୟତା ! !

ସାହାଣମେଳା - ୧୬.୧୦.୨୦୦୪

# ଉଧାର ସଂସ୍କୃତିର ଉର୍ବର ଭୂମି - ଓଡ଼ିଶା (୧)

ସାଲ୍‌ଗିରାହ-ପାଶ୍ଚାତ୍ୟ ସଭ୍ୟତାରେ ଗୋଟିଏ ଦମ୍ପତି ସ୍ୱାମୀ ସ୍ତ୍ରୀ ଭାବରେ ଗୋଟିଏ ବର୍ଷ କଟାଇଲେ ତାକୁ ବହୁତ ବଡ କଥା ମନେ କରି ଉତ୍ସବ ପାଳନ କରିନ୍ତି । କାରଣ ବିବାହ ବନ୍ଧନ ସେଠରେ କ୍ଷଣ ଭଙ୍ଗୁର । ଇଂଲଣ୍ଡ ଓ ଆମେରିକା ଭଳି ଦେଶରେ ବିଚରା ସ୍ୱାମୀଟିଏ ପତ୍ନୀଙ୍କୁ ସାରାଦିନ ହନି ହନି କହୁଥିବ । ତଥାପି ସେ ସମାଜରେ ଛାଡପତ୍ର ଦିଆନିଆ ବହୁଳ ଭାବେ ପ୍ରଚଳିତ । ଗୋଟିଏ ନାରୀର ଚାରିଟି ସନ୍ତାନ ଥିଲେ ଅନେକ ସ୍ଥାନରେ ପ୍ରତ୍ୟେକର ପିତା ଅଲଗା ଅଲଗା । ସେ ପରିବାରରେ ଅନ୍ତିମ ସ୍ୱାମୀଟି ସହିତ ପତ୍ନୀଙ୍କ ପ୍ରଥମା କନ୍ୟା ସନ୍ତାନର ପ୍ରେମ ଅଥବା ଭାଇଭଉଣୀଙ୍କ ଭିତରେ ଯୌନ ସମ୍ପର୍କ ଦେଖାଯିବା ଗୋଟିଏ ନିହାତି ସାଧାରଣ କଥା । ଚିନ୍ତା କରନ୍ତୁ ତ, ସେ ପରିବାରର ଅନ୍ତେବାସୀମାନେ ଆମ ରାସ୍ତାର ବୁଲା କୁକୁରମାନଙ୍କର ମୁକ୍ତ ଯୌନ ବିଳାସଠାରୁ ବିଶେଷ କିଛି ଫରକ ଅଛି କି? ବର୍ତ୍ତମାନ ପାଶ୍ଚାତ୍ୟ ସମାଜ ବିଜ୍ଞାନୀମାନେ ଭାରତୀୟ ସଂସ୍କୃତିରୁ ବହୁତ କିଛି ଆହରଣ କରି ମାର୍ଜିତ ହେଉଥିବାବେଳେ ସେମାନଙ୍କର ବର୍ଜିତ ପରମ୍ପରାର ଅଂଶ ବିଶେଷକୁ ନେଇ ଆମର ଯୁବକ ଯୁବତୀମାନେ ଯାହା ଚାଟି ଯାଉଛନ୍ତି ଦେଖିଲେ ବିକଳ ଲାଗେ, ଦୟା ଆସେ । ଏହି କୁପ୍ରଥା ରୂପେଲି ପରଦାର ରୂପଜୀବୀମାନଙ୍କ ମାଧ୍ୟମରେ ସମାଜରେ ପ୍ରବେଶ କରିଛି ।

ମାତ୍ର ଆମ ସଂସ୍କୃତିରେ ଥରେ ବିବାହ କଲେ ପତ୍ନୀ ସହ ଧର୍ମିଣୀ ହୋଇଯାଏ । ପତି-ପତ୍ନୀ ଜନ୍ମ ଜନ୍ମାନ୍ତରର ସାଥୀ ବୋଲି ବିଚାର କରାଯାଇଥାଏ । ଆମ ଆଗରେ ସାବିତ୍ରୀ-ସତ୍ୟବାନ, ରାମ-ସୀତା, ଧୃତରାଷ୍ଟ୍ର, ଗାନ୍ଧାରୀଙ୍କର ଉଦାହରଣ ରହିଛି । ଆଜି ମଧ୍ୟ ଭାରତୀୟ ସମାଜରେ ପତି-ପତ୍ନୀ ପରସ୍ପର ସୁଖ ଦୁଃଖ ବାଣ୍ଟି ଆଜୀବନ ପରସ୍ପର ପ୍ରତି ବିଶ୍ୱସ୍ତ ଭାବରେ କଟାଉଛନ୍ତି ।

ଫ୍ରେଣ୍ଡସ୍ ଡେ- ପାଶ୍ଚାତ୍ୟ ନଗ୍ନ ବଣିକ ସଭ୍ୟତାର ଆଉ ଏକ ଉଚ୍ଛିଷ୍ଟ ହେଲା ଫ୍ରେଣ୍ଡସ୍ ଡେ ଯାହା ଟି.ଭି ଓ ସିନେମା ମାଧ୍ୟମରେ ଭାରତୀୟ ଯୁବଗୋଷ୍ଠୀଙ୍କୁ ଆକର୍ଷଣ

କରୁଛି । ବନ୍ଧୁ ହେବାପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ଦିନ ନିର୍ଣ୍ଣୟ କରିବା ଏବଂ ପରସ୍ପର ବନ୍ଧୁ ଭାବାପନ୍ନ ବୋଲି ଘୋଷଣା କରିବାରେ ଯେତେଟା ଆନ୍ତରିକତା ନଥାଏ, ବେଶୀ ଦେଖାଇହେବାର ଲୌକିକତା ଥାଏ । କୃଷ୍ଣ ସୁଦାମାଙ୍କ ବନ୍ଧୁତ୍ୱ ବିଷୟ ଭାବନ୍ତୁ । ବନ୍ଧୁତ୍ୱର ବଳିଷ୍ଠ ନିଦର୍ଶନ ତା'ଠାରୁ ବଳି ଅଛି କି ? କର୍ଣ୍ଣ-ଦୁର୍ଯ୍ୟୋଧନ ବନ୍ଧୁତାରେ ଲେଶମାତ୍ର କପଟ ନଥିଲା । ମାତ୍ର ମୁଁ ତୁମର ବନ୍ଧୁ ବୋଲି ମୁହଁରେ ଘୋଷଣା କରୁଥିବା ଯୁବକ ଯୁବତୀମାନେ ସଂସାରର ଗୋଟାଏ ଧକ୍କାରେ ପରସ୍ପରର ଶତ୍ରୁ ହୋଇ ପରସ୍ପରର ପ୍ରାଣନାଶ କରିବା ଉଦାହରଣ ଆଜିକାଲି ବହୁଳ ଭାବରେ ଦେଖାଯାଏ । କେବଳ ଦେଖାଇହେବା ବ୍ୟତୀତ ଆଉ କିଛି ନାହିଁ ।

ହାପି ବାର୍ଥ ଡେ- ପାଶ୍ଚାତ୍ୟ ଅନ୍ତଃସାରଶୂନ୍ୟ ଅପସଭ୍ୟତାର ଆଉ ଗୋଟିଏ ଦୁଷ୍ଟ ସଂସ୍କରଣ ସିନେମା ଓ ଟି.ଭି ମାଧ୍ୟମରେ ଆମ ସମାଜରେ ଅନୁପ୍ରବେଶ କରିଛି- ବାର୍ଥ ଡେ କେକ୍ । ଜନ୍ମଦିନରେ ଆମ ସଂସ୍କୃତିରେ ମନ୍ଦିରରେ କିମ୍ବା ଦିଅଁ ଦେବତାଙ୍କ ସାଖରେ ସନ୍ତାନର ଶୁଭ ମନାସୀ ପୂଜା କରାଯାଏ । ଘରେ ମଧ୍ୟ କେହି କେହି ସତ୍ୟନାରାୟଣ ପୂଜା କରି ସାହି ପଡ଼ିଶା ତଥା ଜ୍ଞାତିଙ୍କ ମେଳରେ ସାତ୍ତ୍ୱିକରୀତିରେ ପାଳନ କରନ୍ତି । ଠାକୁରଙ୍କ ଉଦ୍ଦେଶ୍ୟରେ ଘିଅ ଦୀପ ଜାଳି ରଖାଯାଏ । ସନ୍ତାନଟି ନୂଆ ପୋଷାକ ପରିଧାନ କରି, ଦେବାଦେବୀ ତଥା ଗୁରୁଜନଙ୍କୁ ପ୍ରଣାମ କରି ଆଶୀର୍ବାଦ ଭିକ୍ଷା କରେ ।

ମାତ୍ର ଅପସଭ୍ୟତାରେ ଖାଇବାପାଇଁ ପ୍ରସ୍ତୁତ କେକ୍ ଉପରେ ମହମବତୀ ଗୁଡ଼ିଏ ଜଳାଇରଖି ତାଙ୍କୁ ଫୁଙ୍କି ଲିଭାଯାଏ । ଉପସ୍ଥିତ ଲୋକେ 'ହାପି ବାର୍ଥଡେ ଟୁ ୟୁ' କହି ତାଳି ମାରନ୍ତି । କେହି କେହି ନିର୍ଲଜ୍ଜ ବୀଭତ୍ସ ନୃତ୍ୟ ପରିବେଷଣ କରିବା ମଧ୍ୟ ବେଳେ ବେଳେ ଦେଖାଯାଏ । କବିସୂର୍ଯ୍ୟ ଲେଖିଛନ୍ତି – ''ଚାଲୁ ପୂର୍ବ ଅଙ୍ଗ ବୁଲାଇବକୀ, ତେବେ ସେ ମରାଳୀ ବୋଲାଇବ କି ?''

ନିଜର ସମସ୍ତ ପରମ୍ପରାକୁ ତ୍ୟାଗ କରି ଗୋଟିଏ ନିର୍ମୂଳୀ ସଂସ୍କୃତିକୁ ଆପଣେଇବାକୁ ଚେଷ୍ଟା କଲେ କେବଳ ଲୋକହସା ହେବା ସାର ହେବ ସିନା !

ଡାଡି-ମମି – ଆମ ସଂସ୍କୃତିରେ ପିତାମାତାଙ୍କୁ ସଭକ୍ତି ପୂଜା କରାଯାଏ । ସ୍ଥାନ ବିଶେଷରେ ପିତାମାତାଙ୍କୁ ବାପା, ମା, ବୋଉ, ପିତାଜୀ, ମାତାଜୀ ବୋଲି ସମ୍ବୋଧନ କରାଯାଏ । ମାତ୍ର ପାଶ୍ଚାତ୍ୟ ସଭ୍ୟତାରେ ଉଦ୍‌ବୁଦ୍ଧ ହୋଇ ପିତାମାତାଙ୍କୁ ଡାଡି-ମମି, ଡାଡ୍ ମମ୍ ଭଳି ନିରର୍ଥକ ସମ୍ବୋଧନ କରାଯାଇଛି । ସନ୍ତାନଟିଏ କାମନା କରି ଆମ

ସଂସ୍କୃତିରେ କେତେ ଦେବାଦେବୀଙ୍କୁ ମାନସିକ ଯଚାଯାଏ । ମାତ୍ର ପାଶ୍ଚାତ୍ୟ ଚିନ୍ତାରେ ସନ୍ତାନ ସନ୍ତତି ଏକ ଜୈବ ପ୍ରକ୍ରିୟାର ଆକସ୍ମିକ ଫଳଶ୍ରୁତି ମାତ୍ର । ସେହି ଦୃଷ୍ଟିରୁ ବିଚାର କରୁଥିବାରୁ ସନ୍ତାନର ପିତାମାତାଙ୍କ ପ୍ରତି ଭକ୍ତି ନଥାଏ । କେବଳ ଖାଦ୍ୟବସ୍ତ୍ର ଯୋଗାଇ ଦେଉଥିବା ଜଣେ ଭଦ୍ରବ୍ୟକ୍ତି ଦୃଷ୍ଟିରେ ସେମାନେ ଦେଖନ୍ତି । ସେହି କର୍ଦ୍ଦମାକ୍ତ ଅପସଭ୍ୟତା ରୂପେଲି ପରଦା ମାଧ୍ୟମରେ ଆମ ସମାଜରେ ପ୍ରବେଶ କଲାଣି ।

ଭାରତୀୟ ସଂସ୍କୃତି ଆର୍ଯ୍ୟ ମୁନିଋଷିମାନଙ୍କର ସଂସ୍କୃତି । ତାର ଚେର ଏତେ ଗଭୀରକୁ ଯାଇଛି ଯେ ହଜାର ହଜାର ବର୍ଷ ଭିତରେ ଶକ, ହୁଣ, ପଠାଣ, ମୋଗଲ ଏବଂ ଇଂରେଜମାନଙ୍କର ସାଂସ୍କୃତିକ ଆକ୍ରମଣ ଏହା ଆକୁମାରୀ ହିମାଚଳ ବଞ୍ଚିରହି ସମସ୍ତଙ୍କୁ ଗୋଟିଏ ସୂତ୍ରରେ ବାନ୍ଧିରଖିଛି । ମାତ୍ର ବର୍ତ୍ତମାନର ସାଂସ୍କୃତିକ ଆକ୍ରମଣ ସତ୍ତ୍ୱେ ଯେପରି ସେ ଚେରକୁ ଆମରି ଲୋକମାନଙ୍କ ଦ୍ୱାରା ଉପାଡି ଫିଙ୍ଗି ଦେବାରେ ଲାଗିଛି । ବେଳ ଥାଉଣୁ ଏହାକୁ ପ୍ରତିହତ ନ କଲେ ଆମେ ଗୋଟିଏ ଜାରଜ ସଭ୍ୟତାକୁ ଡାକି ଆଣିବା ସାର ହେବ ।

ସାହଣମେଳା - ୧୬.୯.୨୦୦୪

# ଉଧାର ସଂସ୍କୃତିର ଉର୍ବର ଭୂମି - ଓଡ଼ିଶା (୨)

ଆମ ସଂସ୍କୃତି ଓ ପରମ୍ପରାରେ ଗହ୍ମାପୂର୍ଣ୍ଣିମା  ତାର ମହତ୍ତ୍ୱ କେବେଠୁ ହରାଇ ସାରିଲାଣି । ଏହି ଦିନଟି ଓଡ଼ିଶାରେ ବଳଭଦ୍ରଙ୍କ ଜନ୍ମରୂପେ ପାଳନ କରାଯାଏ । ବଳଭଦ୍ରଙ୍କ ଆୟୁଧ ଲଙ୍ଗଳ ଏବଂ ସେ କୃଷିର ପ୍ରତୀକ ରୂପେ ପୂଜିତ ହୁଅନ୍ତି । ଏହି ଦିନରେ ଆମ ସଂସ୍କୃତିରେ ଗାଈ ଓ ବଳଦମାନଙ୍କୁ ଗାଧୋଇ ଦେଇ ତାଙ୍କ ମୁଣ୍ଡରେ ଫଗୁ ଓ ସିନ୍ଦୂର ଲଗାଯାଏ । ପିଠା ଓ କ୍ଷୀରି ଖାଇବାକୁ ଦିଆଯାଇ ଗୋ'ମାତାଙ୍କୁ ବନ୍ଦାପନା କରାଯାଏ । ତଦ୍ୱାରା ଭାରତର କୃଷି ସଭ୍ୟତାରେ ଗୋଜାତିର ଅବଦାନକୁ ସ୍ୱୀକାର କରାଯାଏ । ଏହି ଉପଲକ୍ଷ୍ୟେ ହାତରେ ଲାଲ୍ ରଙ୍ଗର ସୂତା ବନ୍ଧାଯାଏ । ମାତ୍ର ଅଧୁନା ସେ ପରମ୍ପରା ଲୋପ ପାଇ ରାକ୍ଷୀବନ୍ଧନ ନାମରେ ଭାଇ-ଭଉଣୀଙ୍କ ମଧ୍ୟରେ ଗୋଟାଏ ବ୍ୟବସାୟିକ ସମ୍ପର୍କ ପ୍ରତିଷ୍ଠିତ ହେଲାଣି । 'ରାକ୍ଷୀ' ଫିଲ୍ମ ଦେଖିବା ପରଠାରୁ ରାକ୍ଷୀ ଉତ୍ପୀଡନରେ ଓଡ଼ିଆ ସଂସ୍କୃତି ଉତ୍ପୀଡିତ ହୋଇଛି । ଅପସଂସ୍କୃତିର ଗୋଟାଏ ସ୍ରୋତ ଅପ୍ରତିହତ ଗତିରେ ମାଡି ଚାଲିଛି ।

ଏହି ପରପ୍ରେକ୍ଷୀରେ ଆଉ ଗୋଟିଏ କଳଙ୍କିତ ଦୁର୍ଘଟଣା ସ୍ମରଣ କରାଇ ଦିଆଯାଇପାରେ । ଗୁଣ୍ଡିଚା ଏବଂ ବାହୁଡା ଯାତ୍ରା ଓଡ଼ିଶାର ତଥା ହିନ୍ଦୁ ଜଗତର ପରମାରାଧ୍ୟ ଶ୍ରୀ ଜଗନ୍ନାଥଙ୍କର ପ୍ରସିଦ୍ଧ ଘୋଷଯାତ୍ରା ସମ୍ପର୍କିତ ଦୁଇଟି ମଧୁର ଶବ୍ଦ । ମାତ୍ର ଅଳ୍ପ କେତେବର୍ଷ ତଳେ ଓଡ଼ିଶା ସରକାରଙ୍କ କ୍ୟାଲେଣ୍ଡରରେ ତାହା 'ରଥଯାତ୍ରା' ଏବଂ 'ଓଲଟରଥ' ବୋଲି ଲେଖା ଥିଲା । ବଙ୍ଗଳାରେ 'ଉଲଟୋରଥ'ର ଆକ୍ଷରିକ ଓଡ଼ିଆ ଅନୁବାଦକାରୀ ଯେ ଅତ୍ୟନ୍ତ ଚତୁରତାର ସହିତ ଓଡ଼ିଆ ଓ ଓଡ଼ିଶାର ମୂଳଚ୍ଛେଦନର ଚେଷ୍ଟା କରିଥିଲେ, ଏହା କହିବା ନିଷ୍ପ୍ରୟୋଜନ ।

ଭାଲେଣ୍ଟାଇନ୍ ଡେ- ଅଳ୍ପ କେତେ ବର୍ଷ ହେଲା ଏହି ଭାଲେଣ୍ଟାଇନ୍ ଡେ ଭାରତ ତଥା ଓଡ଼ିଶା ମାଟିରେ ଚେର ଲମ୍ବାଇବାରେ ଲାଗିଛି । ପାଶ୍ଚାତ୍ୟ ଜଗତର ସମସ୍ତ ନିର୍ଲଜତା ସିନେମା ଓ ଟି.ଭି ମାଧ୍ୟମରେ ଘରେ ଘରେ ପ୍ରବେଶ କରୁଛି । ଆମ ସିନେ-ଜଗତର ତଥାକଥିତ ଜାରଜ-ସଭ୍ୟତାକୁ ଏକ ଆଦର୍ଶ ଭାବି ବହୁ ଉଚ୍ଛୃଙ୍ଖଳ

ସିନେ ପାଗଳ ଯୁବକ ଯୁବତୀ କେଉଁ ରସାତଳକୁ ଯାଉଛନ୍ତି – ତାହା ଦୈନିକ ସମ୍ବାଦ ପତ୍ରରୁ ପଢ଼ିବାକୁ ମିଳୁଛି । ରୂପେଲି ପରଦାର ବହୁ କଳଙ୍କିତ ନାୟକ, ନାୟିକା ଅଥବା ନଟ, ନଟୀମାନଙ୍କୁ ଦେଖି ଆକର୍ଷିତ ହେଉଥିବା ଯୁବପୀଢ଼ି ନିଜର ଉଦ୍‌ବେଳିତ ହୃଦୟକୁ କିଛିକାଳ ବହଲେଇ ପାରନ୍ତି, ମାତ୍ର ତାହା ଯେ ଜୀବନ ଚର୍ଯ୍ୟାର ବାସ୍ତବତା ସହିତ ସମ୍ପର୍କ ବିରହିତ କେତେଟା ଛାୟାଚିତ୍ର ମାତ୍ର– ସେତିକି ବୁଝିବାବେଳକୁ ଭୁଲ୍ ବାଟରେ ବହୁଦୂର ଆଗେଇ ଯାଇଥାନ୍ତି । ତଥାକଥିତ ପ୍ରେମର ବିପଣୀ – ଭାଲେଣ୍ଟାଇନ୍‌ର ଅସାର ଶୂନ୍ୟତା କେବଳ ଗଣିକାଳୟରେ ଦେଖାଯାଏ ।

ସେହି ଅପସଭ୍ୟତାକୁ ଟି.ଭି. ଓ ସିନେମା ମାଧ୍ୟମରେ କେତେ ଲୋକ ଘରେ ଘରେ ପୂରାଇ ଆମର ସୁସଂଯତ ଓ ସୁସଂହତ ସଂସ୍କୃତି ସମ୍ପନ୍ନ ସାମାଜିକ ତଥା ପାରିବାରିକ ଚଳଣିକୁ କଳୁଷିତ କରୁଛନ୍ତି ।

ଉଭଟ ନୃତ୍ୟ-ଆଜିକାଲି ସଚରାଚର ବିବାହ ପ୍ରୋସେସନ୍‌ର ଉଭଟ ନୃତ୍ୟ ଦେଖାଯାଉଛି । ଯୁବକମାନେ ପ୍ରଚୁର ମଦ୍ୟପାନ କରି ଦଳବଦ୍ଧ ଭାବରେ ଯେଉଁ ଅରୁଚିକର ଉଭଟ ତଥା ଉଚ୍ଛୃଙ୍ଖଳ ନୃତ୍ୟ ପରିବେଷଣ କରୁଛନ୍ତି, ତାହା ହିନ୍ଦୀ ସିନେମାରୁ ଆନୀତ ଏକ ଅଶିଷ୍ଟ ପରମ୍ପରାର ନକଲି ସଂସ୍କରଣ । ସିନେମାରେ ନିର୍ବନ୍ଧ ଓ ବିବାହରେ ବରକନ୍ୟାଙ୍କର ପିତାମାତମାନେ ନାଚିବା ହୁଏତ ଆନନ୍ଦର ପ୍ରତୀକାତ୍ମକ ପରିପ୍ରକାଶ ହୋଇପାରେ । ମାତ୍ର ଉଭଟ ନୃତ୍ୟ ଯେଉଁ ସାମାଜିକ ବିଶୃଙ୍ଖଳା ସୃଷ୍ଟି କରୁଛି କେତେ ସ୍ଥାନରେ ଆଇନ୍ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି କରୁଛି ତାର ସୀମା ନାହିଁ ।

ନୃତ୍ୟ ଓ ମଦ୍ୟପାନ ଦୁଇଟି ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଆମେ ଆଖିରେ ଦେଖୁଥାଇ ଓ ସମ୍ବାଦପତ୍ରରେ ପଢୁଥାଇ ଯେ ଏହି ଅଶିଷ୍ଟ ତଥା ଅଶାଳୀନ ନୃତ୍ୟ ଓ ବ୍ୟବହାରକୁ କେନ୍ଦ୍ର କରି କନ୍ୟାଘର ଗାଁରେ ବାଡାପିଟା ଲାଗୁଛି । କେତେବେଳେ ବୈବାହିକ ସମ୍ପର୍କ ସ୍ଥାପନ ପାଇଁ ଆସି ବରଯାତ୍ରୀମାନେ ନିସ୍ତୁକ ମାଡ ଖାଉଛନ୍ତି । ବର ଓ ବରପିତା ରୁଦ୍ଧ କୋଠରିରେ ଅବରୁଦ୍ଧ ଥିବା ଅବସ୍ଥାରେ କନ୍ୟାର ଅନ୍ୟ ପାତ୍ର ସହିତ ବିବାହ ସମ୍ପନ୍ନ ହେଉଛି । ବର ଶିଶୁପାଳ ହୋଇ ଫେରୁଛି ।

ଏହି ସମସ୍ତ ଅଶିଷ୍ଟ ପରମ୍ପରାକୁ ଆଦୌ ପ୍ରୋତ୍ସାହନ ମିଳିବା ଉଚିତ ନୁହେଁ ।

ସାହାଣମେଳା – ୨୪.୯.୨୦୦୪

# ଉଧାର ସଂସ୍କୃତିର ଉର୍ବର ଭୂମି - ଓଡ଼ିଶା (୩)

ଆମେ ଇତିହାସ ଅଧ୍ୟୟନ କଲେ ଦେଖୁ ଯେ ଶ୍ରୀ ଚୈତନ୍ୟଙ୍କ ଓଡ଼ିଶା ଆଗମନ ପରେ ବୀର ଓଡ଼ିଆମାନେ ରଣକ୍ଷେତ୍ର ପରିତ୍ୟାଗ କରି ଖୋଳ କରତାଳ ଧରି ଉଦ୍ଦଣ୍ଡ ନୃତ୍ୟ ଆରମ୍ଭ କରିଥିଲେ । ପାଇକର ମେଛା ପରିବର୍ତ୍ତେ ଶ୍ମଶ୍ରୁବର୍ଜିତ ନାରୀସୁଲଭ ମୁଖମଣ୍ଡଳରେ କୃଷ୍ଣପ୍ରେମ ସଂଗୀତ ଶୁଣାଗଲା । ବୀର କାହାଳୀ ଜାଗାରେ ମୃଦଙ୍ଗର କମ୍ପ୍ରଧ୍ୱନିରେ ପୁରପଲ୍ଲୀ ଅନୁରଣିତ ହେଲା । ତାହାଥିଲା ବୀର ଓଡ଼ିଆଙ୍କୁ କ୍ଲୀବ କରିଦେବାରେ ଇତିହାସର ଏକ ବିଡମ୍ବିତ ଅଧ୍ୟାୟ ।

ମାତ୍ର ଅଳ୍ପ କେତେବର୍ଷ ପୂର୍ବରୁ ଓଡ଼ିଶାରେ ଆରମ୍ଭ ହେଲା ସନ୍ତୋଷୀ ମା' ପୂଜା । ସ୍ତ୍ରୀ, ପୁରୁଷ ନିର୍ବିଶେଷରେ ଶୁକ୍ରବାର ଦିନ ଖଟା ନଖାଇବା, ଉପବାସ କରିବା, ବ୍ରତ ରଖିବା ଗୋଟାଏ ଫେସନରେ ପରିଣତ ହେଲା । କୌଣସି ବ୍ରତଚାରୀଙ୍କୁ ନିନ୍ଦିତ କରିବାର ଲକ୍ଷ୍ୟ ଏହି ଲେଖକର ନାହିଁ । ମାତ୍ର ସେ ସବିନୟ ପଚାରୁଛି - ଏହି ସନ୍ତୋଷୀ ମା' ପୂଜା କେଉଁ ସଂସ୍କୃତିରୁ ଆହରଣ କରାଯାଇ ସହର, ମଫସଲ ଆଦି ଚାରିଆଡେ ବ୍ୟାପିଗଲା କହିପାରିବେ କି ? ଏହା ଓଡ଼ିଶାର ନିଜସ୍ୱ ନୁହେଁ । ଓଡ଼ିଆର ମାଣବସା ଗୁରୁବାରରେ ମା' ଲକ୍ଷ୍ମୀଙ୍କର ଆରାଧନା ଆମେ ପାଶୋରି ଦେଇଛୁ । ଗୁରୁବାରଦିନ ମଦ ମାଂସ ଇତ୍ୟାଦି ଆକଣ୍ଠ ଭୋଜନ ବହୁ ତଥା କଥିତ ପରିବାରରେ ପ୍ରଚଳିତ ହୋଇ ଓଡ଼ିଶାର ସଂସ୍କୃତିକୁ ବଙ୍ଗୋପସାଗରରେ ଜଳମଗ୍ନ କରୁଥିବା ଅଧିକାଂଶ ତଥାକଥିତ ଅତ୍ୟାଧୁନିକ ଓଡ଼ିଆଙ୍କର ଶୁକ୍ରବାର ଦିନ ନିର୍ଲଜ ବ୍ରତ ଯେତିକି ହାସ୍ୟୋଦ୍ଦୀପକ ସେତିକି ଗ୍ଲାନିକର ନୁହେଁକି । ଏଠାରେ ପଡ଼ିଶା ଘର ତିଅଣ ଭାରି ସୁଆଦିଆ ମନୋଭାବ କାମ କରୁନାହିଁକି ?

ଓଡ଼ିଆ ଜନଜୀବନରେ ଆଉ ଗୋଟିଏ ଭୟଙ୍କର ଅପସଂସ୍କୃତିର ପ୍ରବେଶ ଘଟିଛି 'ବୋଲ୍‌ବମ' ମାଧ୍ୟମରେ ଅଳ୍ପ କେତେବର୍ଷ ଭିତରେ । ଶ୍ରାବଣ ମାସରେ ମହାଦେବଙ୍କର ଜଳାଭିଷେକ ଶାସ୍ତ୍ରସମ୍ମତ । ମାତ୍ର ତାହା ଯେଉଁ ଉପାୟରେ ଯେଉଁ ବାଟରେ କରାଯାଉଛି, ତଦ୍ଦ୍ୱାରା କେତେକ ଧାର୍ମିକ ତଥା ସାମାଜିକ ସମସ୍ୟା ସୃଷ୍ଟି ହେଉଛି । ଭକ୍ତମାନଙ୍କ ଦ୍ୱାରା ଦେବପୂଜନ ସର୍ବଜନ ସମ୍ମତ ବିଧି । ମାତ୍ର 'ବୋଲବମ୍'ରେ ଜଳନେଇ ଯାଉଥିବା ଲୋକମାନଙ୍କ ଭିତରେ ଅଠାନବେ ପ୍ରତିଶତ ଲୋକ ଦେଖାଣିଆ ଓ ପ୍ରଚାର ସର୍ବସ୍ୱ ।

ସେମାନଙ୍କଠାରୁ ଜଣାଯାଏ ଯେ ସେମାନଙ୍କର ପୋଷାକ ପରିଚ୍ଛଦ ଓ ପାଣି ବୋହିବା ବାହୁଙ୍ଗି ସଜାଇବାରେ ବେଶ୍ କିଛି ଟଙ୍କା ଖର୍ଚ୍ଚ କରିବାକୁ ପଡେ, ପ୍ରତିଦ୍ୱନ୍ଦିତା ଲାଗେ । କ୍ରମଶଃ ସମସ୍ତ ନଦୀଜଳ ପ୍ରଦୂଷିତ ହେଉଥିବା ସମସ୍ତେ ଜାଣନ୍ତି । ହିନ୍ଦୁଧର୍ମର ଦେବବିଶ୍ୱାସର ମୂଳମନ୍ତ୍ର ହେଲା ଦର୍ଶନ ଓ ଚରଣୋଦକ ସେବନ । ମାତ୍ର ଏହି ସଂକ୍ରମିତ ଜଳନେଇ ମନ୍ଦିରରେ ଦିଅଁଙ୍କୁ ଲାଗି କରିବା ଫଳରେ ପାଦୁକା ଆଉ ପୂର୍ବଭଳି ବିଶୁଦ୍ଧ ରହୁନାହିଁ । ପୁରୀ ଶ୍ରୀଲୋକନାଥଙ୍କ ମନ୍ଦିର ଭିତରେ ସଂକ୍ରମିତ ଜଳ ଢ଼ଳାଯିବାରୁ ପୋକ ଚାଲୁଥିବା ସମ୍ବାଦ ପତ୍ରରୁ ପଢ଼ିବାକୁ ମିଳିଲା । ମାତ୍ର ପୂଜକମାନେ ବୋଲ୍‌ବମ୍ ଅଥବା ସେହି ସମ୍ପର୍କରୁ ଆର୍ଥିକ ଲାଭ ପାଉଥିବାରୁ ମନ୍ଦିର ଓ ଚରଣୋଦକର ଶୁଦ୍ଧତା ପ୍ରତି ଆଖିବୁଜି ଦେଉଛନ୍ତି । ସମସ୍ତ ମନ୍ଦିରପାଇଁ ଏହି ସମସ୍ୟା ଲାଗି ରହିଛି ।

ତଥାକଥିତ ଭକ୍ତମାନଙ୍କ ଦ୍ୱାରା ରାସ୍ତାରେ ଗଞ୍ଜିକା-ପ୍ରମତ୍ତ କୋରସ 'ଗଞ୍ଜୋଡ ବାବା ପାର୍ କରେଗା', ପାର୍ବତୀ ହଜ୍‌ବ୍ୟାଣ୍ଡ ପାର୍ କରେଗା' ବଡ ଶ୍ରୁତିକଟୁ ଓ ଭକ୍ତି ବିବର୍ଜିତ ଅଶିଷ୍ଟ ଉଚ୍ଚାରଣ ବୋଧହୁଏ ।

ହଜାର ହଜାର ସଂଖ୍ୟାରେ ବୋଲ୍‌ବମ୍ ପାଣିନେଇ ଯିବାବେଳେ ରାସ୍ତା କଡରେ ମଳତ୍ୟାଗ କରୁଥିବାରୁ ଜାତୀୟ ରାଜପଥ ଓ ସର୍ବସାଧାରଣ ରାସ୍ତାର ବାତାବରଣ ଏହି ବର୍ଷାଦିନରେ ଦୁର୍ଗନ୍ଧଯୁକ୍ତ ହୋଇପଡୁଛି । ଏହି 'ବୋଲ୍‌ବମ୍' ଗୋଟିଏ ନିଛକ ଅଣଓଡ଼ିଆ ସଂସ୍କୃତି ବହନ କରେ । ତା'ଛଡା ଏଥିରେ ଯୋଗଦେଉଥିବା ବହୁ ଯୁବକ 'ଗଞ୍ଜେଇମାଡ'ର ଆକର୍ଷଣରେ ଆସୁଥିବା ସ୍ୱୀକାର କରନ୍ତି । ପ୍ରତିବର୍ଷ କେତେକ ବୋଲ୍‌ବମ୍ ଭକ୍ତ ଗାଡି ଦୁର୍ଘଟଣାରେ ପ୍ରାଣ ହରାଇବା ଜଣାଶୁଣା କଥା ।

ତେଣୁ ଆଗାମୀ ଦିନ ପାଇଁ ଆମର ନିବେଦନ - ଦିଅଁଙ୍କର ଏକ ପ୍ରତିନିଧିଙ୍କୁ ମୁଖ୍ୟ ମନ୍ଦିର ବାହାରେ ମାତ୍ର ପରିସର ଭିତରେ ସ୍ଥାପନା କରାଯାଉ । ଏହି ଭକ୍ତମାନଙ୍କ ଦ୍ୱାରା ଆନୀତ ଜଳ ମୁଖ୍ୟମନ୍ଦିର ଭିତରକୁ ନନେଇ ପ୍ରତିନିଧିଙ୍କୁ ଲାଗି କରାଯାଉ । ତାହେଲେ ପ୍ରତ୍ୟହ ଦର୍ଶନାର୍ଥୀଙ୍କର ଅସୁବିଧା ଦୂରହେବା ସଙ୍ଗେ ସଙ୍ଗେ ଦେବତାଙ୍କର ଚରଣୋଦକ ପ୍ରତି ସାଧାରଣ ଲୋକଙ୍କର କୁଣ୍ଠାଭାବ ରହିବ ନାହିଁ ।

ଆମ ସମାଜର କ୍ରମଶଃ ହରିହାଟ, ଭାଗବତ ସପ୍ତାହ ଇତ୍ୟାଦି ଲୋପ ପାଇ ଲୋକଦେଖାଣିଆ ମାଗିଅଣା ଉଧାର ସଂସ୍କୃତି କେତେଦୂର ଯାଏ ଆମକୁ କବଳିତ କଲାଣି ଦେଖିଲେ ମନରେ କ୍ଷୋଭ ଜାତ ହୁଏ - ଆଉ କେତେ ବର୍ଷ ପରେ ଓଡ଼ିଆର ନିଜସ୍ୱ ସଂସ୍କୃତି ବୋଲି ଦାବି କରିବାକୁ ଆଉ ଅବଶେଷ ଥିବତ ?

ସାହାଣମେଳା - ୧.୧୦.୨୦୦୪

# ଭାରତ ପାକିସ୍ଥାନ ଶାନ୍ତି ଆଲୋଚନା - ଏକ ବିଚାର

ଅତି ଆକସ୍ମିକ ଭାବରେ ପାକିସ୍ତାନ ଆଡକୁ ପୁଣିଥରେ ବନ୍ଧୁତ୍ୱର ହାତ ବଢ଼ାଇ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳ ବିହାରୀ ବାଜପେୟୀ ସମସ୍ତଙ୍କୁ ଚକିତ କରିଦେଇଛନ୍ତି । ବିଗତ ସମୟରେ ଶାନ୍ତି ପ୍ରତିଷ୍ଠା ପାଇଁ ସେ ଲାହୋର ଯାତ୍ରା କରିଥିବାବେଳେ ପାକିସ୍ଥାନର ତତ୍କାଳୀନ ସେନାମୁଖ୍ୟ ପରଭେଜ ମୁସାରଫ୍ କାରଗିଲ୍ ସୀମାନ୍ତରେ ଭାରତ ଆକ୍ରମଣ କରିଥିଲେ । ସେଥିରେ ବାହାର ଦେଶର ଭଡାଟିଆ ମୁସଲମାନ ସନ୍ତ୍ରାସବାଦୀଙ୍କ ସହିତ ପାକିସ୍ଥାନୀ ସୈନ୍ୟ ମିଶି ଲଢ଼େଇ କରିଥିଲେ । ପଛରୁ ଛୁରୀକାଘାତ କରିବା ଇସ୍‌ଲାମୀୟ ଆଦର୍ଶ ବୋଲି ଇତିହାସରୁ ପ୍ରମାଣିତ । ଅବସ୍ଥା ଚକ୍ରରେ ଆଜି ସେହି ମୁସାରଫ ପାକିସ୍ଥାନର ରାଷ୍ଟ୍ରପତି । ମୁସାରଫ ଜଣେ କଠୋରପନ୍ଥୀ ମୁସଲମାନ । ସେ ମୂଳତଃ ଭାରତୀୟ ହେଲେ ହେଁ ତାଙ୍କର ଭାରତ-ବିଦ୍ୱେଷ ସର୍ବଜନ ବିଦିତ ।

ପାକିସ୍ଥାନର ସୃଷ୍ଟିଠାରୁ ଭାରତ-ବିଦ୍ୱେଷ ଓ ହିନ୍ଦୁ-ବିଦ୍ୱେଷ ପାକିସ୍ଥାନୀ ମାନଙ୍କର ଅସ୍ଥିମଜ୍ଜାଗତ । କାଶ୍ମୀର ପ୍ରଶ୍ନନେଇ ସେ ଦେଶର ଅଶିକ୍ଷିତ ମୁସଲମାନ୍ ଓ ପଠାଣମାନଙ୍କୁ ଜେହାଦୀ ଅଫିମ ଦ୍ୱାରା ଏମିତି ନିଶାଗ୍ରସ୍ଥ କରାଇ ଦିଆଯାଏ ଯେ ଭାରତ ବିରୁଦ୍ଧରେ ପ୍ରତ୍ୟେକ ଆଲୋଚନା, ପ୍ରତ୍ୟେକ କାର୍ଯ୍ୟ ପାକିସ୍ଥାନର ମୁଖ୍ୟ ବୈଦେଶିକ ନୀତି ରୂପେ ଗୃହୀତ ହୁଏ । ତେଣୁ କୁଚକ୍ରୀ ମୁସାରଫ ଯେ ପୁଣି ସେହି ପୁରୁଣା ରେକର୍ଡକୁ ବଜାଇବେ, ଏଥିରେ ସନ୍ଦେହ ନାହିଁ ।

ମାତ୍ର ଏନ.ଡି.ଏ ସରକାରଙ୍କ ଆଭିମୁଖ୍ୟରେ ପୁରୁଣା କଂଗ୍ରେସିଆ ଏଘର ମାଉସୀ-ସେଘର ପିଉସୀ ନୀତି ଦେଖାଯାଉନାହିଁ । ବାଜପେୟୀ ସ୍ପଷ୍ଟ କରିଦେଇଛନ୍ତି ଯେ ଆଲୋଚନା ପାକିସ୍ଥାନ ଦଖଲରେ ଥିବା 'ଗୋଲାମ କାଶ୍ମୀର' ସମ୍ପର୍କରେ ହିଁ ଆରମ୍ଭ ହେବ । ସୂଚନାଯୋଗ୍ୟ ଯେ ପାକିସ୍ଥାନ ଦଖଲରେ ଥିବା କାଶ୍ମୀରକୁ ପାକିସ୍ଥାନ ଆଜାଦ୍ କାଶ୍ମୀର କହୁଛି । ମାତ୍ର ସେଠାରେ କେବେ ନିର୍ବାଚନ ହୁଏନାହିଁ । କେବଳ

ସୈନ୍ୟବାହିନୀର ଶାସନରେ ଥିବାରୁ ତାକୁ 'ଗୋଲାମ କାଶ୍ମୀର' କହିବା ଅଧିକ ଯୁକ୍ତିଯୁକ୍ତ ହେବ ।

ଉଭୟ ପକ୍ଷ ବର୍ତ୍ତମାନ ଯେ ଯାହାର କାଶ୍ମୀର ନୀତିରେ ଅଟଳ ରହିଥିବାବେଳେ ଆଲୋଚନାରୁ କିଛି ବାସ୍ତବ ଫଳ ମିଳିବା ସୁଦୂର ପରାହତ ମନେହୁଏ । ବିଶେଷକରି ପାକିସ୍ଥାନରେ ସୈନ୍ୟବାହିନୀ ସରକାରଙ୍କ ମୁଖ୍ୟ ଜଣେ ସେନାନାୟକ ଯେତେ କୌଶଳ କରି ରୂପ ପରିବର୍ତ୍ତନ କଲେ ହେଁ ସେନା ଶାସନର ସମସ୍ତ ବିଲକ୍ଷଣ ପ୍ରକାଶିତ ହେବା ସ୍ୱାଭାବିକ । ତେଣୁ ଆସନ୍ତା ଭାରତ ପାକିସ୍ଥାନ ଆଲୋଚନା ବିଗତ ଆଗ୍ରା ଆଲୋଚନାଠାରୁ କିଛି ପୃଥକ୍ ହେବ ବୋଲି ଆଶା କରିବା ବିଡମ୍ବନା ମାତ୍ର ।

ସାହାଣମେଳା - ୧୬.୭.୨୦୦୪

# 'ଜାଠ ରାଜନୀତିରେ ଧୂର୍ତ୍ତ କୋକି'

ଭାରତୀୟ ରାଜନୀତିରେ ବିଶ୍ୱାସଘାତକତା, ନୀତିହୀନତା, ଚାଟୁକାରୀତା ଇତ୍ୟାଦି ଆମେ ଜୟଚନ୍ଦ୍ର-ମହମ୍ମଦ ଘୋରୀଙ୍କ ଅନୈତିକ ବୁଝାମଣା ବେଳରୁ ଦେଖିଛେ । ତା ପରବର୍ତ୍ତୀ ଇତିହାସ ମୋଗଲ ଏବଂ ପଠାଣମାନଙ୍କର ଗୁପ୍ତଘାତକ ଦ୍ୱାରା ହତ୍ୟା ଓ ବିଶ୍ୱାସଘାତକତାରେ ରକ୍ତ ରଞ୍ଜିତ ହୋଇଛି । ଇଂରେଜ ଶାସନ କାଳରେ ପ୍ରତାରଣା, ମିଥ୍ୟାଚାର ଓ ଅତ୍ୟାଚାରର ଉଲ୍ଲଙ୍ଗ ପ୍ରୟୋଗ ଭାରତ ଦେଖିଛି । ବହୁ ଦେଶଦ୍ରୋହୀ ତଥା ସୁବିଧାବାଦୀ ମାନଙ୍କର କଳଙ୍କିତ କାହାଣୀ ଇତିହାସକୁ ମସୀଯୁକ୍ତ କରିଛି ।

ସ୍ୱାଧୀନ ଭାରତର ବହୁଘଟଣ ବିଘଟଣ ପରେ ୧୯୭୭ ମସିହାରେ ପ୍ରଥମଥର ପାଇଁ ଦୀର୍ଘ ୩୦ ବର୍ଷର କଂଗ୍ରେସ ଶାସନ ଦୁର୍ନୀତି ଓ କୁଶାସନ ପାଇଁ ଭୁଷୁଡ଼ି ପଡ଼ିଲା । ବହୁଦଳର ବହୁନେତାଙ୍କ ସଙ୍ଗମରେ ସୃଷ୍ଟି ହୋଇଥିବା ଜନତା ଦଳ ଶାସନକୁ ଆସିଲା । ମାତ୍ର ଅଳ୍ପ କେତେମାସ ପରେ କେନ୍ଦ୍ର ମନ୍ତ୍ରୀମଣ୍ଡଳର ଗୃହମନ୍ତ୍ରୀ ଜାଠନେତା ଚୌଧୁରୀ ଚରଣ ସିଂହଙ୍କର ଅନୈତିକ ଉଚ୍ଚାଭିଳାଷ ଯୋଗୁ ସେ ଶାସନର ଇତି ହେଲା । ନୀତିବାନ୍ ମୋରାରଜୀ ଦେଶାଇଙ୍କ ଇସ୍ତଫା ପରେ ଚରଣସିଂହ ଯେଉଁ ଚକ୍ରାନ୍ତରେ ପ୍ରଧାନମନ୍ତ୍ରୀ ହୋଇଥିଲେ, ସେହି ଚକ୍ରାନ୍ତର ଶିକାର ହୋଇ ପାର୍ଲାମେଣ୍ଟ ଭବନ ଦେଖିବା ପୂର୍ବରୁ ଗାଦିଚ୍ୟୁତ ହେଲେ ।

ବର୍ତ୍ତମାନ କେନ୍ଦ୍ରରେ ୨୪ଟି ଦଳକୁ ଏକତ୍ରିତ କରି ତାର ନେତୃତ୍ୱ ନେଉଥିବା ବାଜପେୟୀଙ୍କ ମନ୍ତ୍ରୀମଣ୍ଡଳରୁ ପୂର୍ବତନ କୃଷିମନ୍ତ୍ରୀ ଅଜିତ୍ ସିଂହଙ୍କ ଇସ୍ତଫା ବହୁ ଘଟଣାର କୌତୁକ ଅଭିନୟ ଦେଖାଉଛି ।

ଅଜିତ୍ ସିଂହ ହେଉଛନ୍ତି ଚୌଧୁରୀ ଚରଣସିଂହଙ୍କ ସୁପୁତ୍ର । କେନ୍ଦ୍ର ମନ୍ତ୍ରୀପରିଷଦରୁ ଇସ୍ତଫାଦେବା ସଙ୍ଗେ ସଙ୍ଗେ ସେ ବିବୃତି ଦେଲେ ଯେ କେନ୍ଦ୍ରରେ ଏନ.ଡି.ଏ ସରକାର କୃଷକମାନଙ୍କ ପାଇଁ କିଛି କରୁନାହିଁ । ଉତ୍ତରପ୍ରଦେଶରେ ଗୋଟିଏ ହରିତ୍‌ପ୍ରଦେଶ ଗଠନ କରିବା ପାଇଁ ତାଙ୍କର ପ୍ରସ୍ତାବକୁ କେନ୍ଦ୍ର ସରକାର ଗ୍ରହଣ କରୁନାହାନ୍ତି । ତାଙ୍କର ଉଦ୍ଦେଶ୍ୟ ତାଙ୍କର ପ୍ରତିପତ୍ତିଥିବା ଜାଠ୍ ଅଞ୍ଚଳକୁ ନେଇ ଗୋଟିଏ ପ୍ରଦେଶ ଗଠିତ ହେଲେ ସେ ସେଠାରେ ମୁଖ୍ୟମନ୍ତ୍ରୀ ହୋଇପାରନ୍ତେ ।

ଆଜିର ରାଜନେତାମାନଙ୍କୁ ପ୍ରତ୍ୟେକ କାର୍ଯ୍ୟରେ ଗୋଟାଏ ଆଳ ଦରକାର । ତାଙ୍କୁ ଗୋଟାଏ ଆଳ ମିଳିଗଲା । ମାତ୍ର ତାଙ୍କର ଅସଲ ସ୍ୱରୂପ ପଦାରେ ପଡ଼ିଲା- ଯେଉଁଦିନ ସେ ମୁଲାୟାମ୍ ସିଂ ଯାଦବ ଓ ସୋନିଆ ଗାନ୍ଧୀଙ୍କୁ ସାକ୍ଷାତ କରି ତାଙ୍କୁ ସହଯୋଗ କରିବାକୁ ପ୍ରତିଶ୍ରୁତି ଦେଲେ । କେବଳ ସେତିକି ନୁହେଁ- ନିଜର

ବିଶ୍ୱାସନୀୟତା ପ୍ରମାଣ ଦେବାକୁ ଯାଇ ତାଙ୍କର ଦଳର ୫ ଜଣ ମନ୍ତ୍ରୀ ଉତ୍ତରପ୍ରଦେଶର ମିଳିତ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେଲେ । ରାଜନୀତିରେ ଧୂର୍ତ୍ତବୁଦ୍ଧି ସମ୍ପନ୍ନ ଅଜିତ୍‌ସିଂହ ନିଜର ବିଧାୟକମାନଙ୍କୁ ନେଇ ଭୋପାଳର ଗୋଟିଏ ଆଡମ୍ବରପୂର୍ଣ୍ଣ ହୋଟେଲ୍‌ରେ ଲୁଚାଇ ରଖିଲେ । ତଥାପି ସାମ୍ବାଦିକମାନେ କୌଣସିମତେ ତା'ର ଟେରପାଇ ସେମାନଙ୍କୁ ସାକ୍ଷାତ କରିବାକୁ ଚାହିଁବାରୁ ସେମାନେ ବୁଲିବାକୁ ଆସିଛନ୍ତି ବୋଲି ଜଣାଇଲେ । କାଳେ ମାୟାବତୀ ଏହି ଅର୍ଥଲିପ୍ସୁ ଓଲିଆମାନଙ୍କୁ କିଣିଦେବେ, ସେହି ଭୟରେ ଗୋଟିଏ କଂଗ୍ରେସ ଶାସିତ ରାଜ୍ୟରେ ବିଧାୟକମାନଙ୍କୁ ଲୁଚାଇ ରଖିବା ଭାରତରେ ଯଥେଷ୍ଟ ଆଲୋଡନ ସୃଷ୍ଟି କଲା । ତେଣୁ ପୁନରାୟ ସେମାନଙ୍କୁ ଶ୍ରୀନଗରକୁ ନେଇ ଗୋଟାଏ ପଞ୍ଚତାରକା ହୋଟେଲରେ ଲୁଚାଇ ରଖିଛନ୍ତି ।

ବର୍ତ୍ତମାନ ପ୍ରଶ୍ନ ହେଉଛି-ପଞ୍ଚତାରକା ହୋଟେଲ୍‌ରେ ଏତେ ଲୋକଙ୍କୁ ମାସାଧିକ କାଳ ରହିବା, ଖାଇବା ଓ ରାସ୍ତାଖର୍ଚ୍ଚରେ ଖୁବ୍ କମ୍‌ରେ ୧ କୋଟି ଟଙ୍କା ବ୍ୟୟ ହୋଇସାରିଲାଣି । ଏହି ଅର୍ଥ ଆସିଲା କେଉଁଠୁ ?

ଅତୀତରେ ସୁଖରାମଙ୍କ ଘରୁ ସି.ବି.ଆଇ ରେଡ ବେଳେ ୪ କୋଟି ଟଙ୍କା ନଗଦ ଜବତ ହେବାବେଳେ ଏହି ଅଜିତ୍ ସିଂହ ମନ୍ତବ୍ୟ ଦେଇଥିଲେ- ରାଜନୀତି କରୁଥିବା ଲୋକଙ୍କ ପାଖରେ ଖର୍ଚ୍ଚପାଇଁ ଏମିତି ୪/୫କୋଟି ଟଙ୍କା ରହିବାଟା ସାଧାରଣ କଥା । ମାତ୍ର ଦେଶବାସୀଙ୍କର ଜାଣିବାର ଅଧିକାର ଅଛି, ଏ ବିପୁଳ ଅର୍ଥ ଆସିଲା କେଉଁଠୁ ? ଗରିବ ଦେଶର ଗରିବ ରାଜକୋଷକୁ ଲୁଣ୍ଠନ କରି ଏହି ଦୁର୍ନୀତିଖୋର ରାଜନେତାମାନେ ପଞ୍ଚତାରକା ହୋଟେଲରେ ମେଦବୃଦ୍ଧି କରୁଛନ୍ତି । ଏହି ଘଟଣାର ସି.ବି.ଆଇ. ତଦନ୍ତ ହେବା ନିହାତି ଜରୁରୀ । ତା ଛଡା ବିଧାୟକମାନେ ତସ୍କରଭଳି ଯଦି ଅନ୍ୟରାଜ୍ୟରେ ଲୁଚି ଲୁଚି ବୁଲନ୍ତି ତେବେ ସେମାନେ ଦରମା ଭତ୍ତା ପାଇବାର ହକ୍‌ଦାର ନୁହନ୍ତି ।

ଗୋଟିଏ ଦିଗରେ ଛେଳିମେଣ୍ଢା ଭଳି ବିଧାୟକମାନଙ୍କୁ ଲୁଚାଇ ରଖି ଅଜିତ୍‌ସିଂହ ମାୟାବତୀଙ୍କ ସରକାରଙ୍କୁ ଭାଙ୍ଗିବାକୁ ଦାବି କରୁଛନ୍ତି । ତତ୍‌ସଙ୍ଗେ ସଙ୍ଗେ କଂଗ୍ରେସ, କଲ୍ୟାଣ ସିଂହ ଓ ମୁଲାୟାମ ସିଂହ ଯାଦବଙ୍କ ସହିତ ତାଙ୍କ ଦଳର କେତେଜଣଙ୍କୁ ମନ୍ତ୍ରୀ କରାଯାଇପାରେ, ତାର ଦର କଷୁଛନ୍ତି । ସେ ଭୁଲିଯାଉଛନ୍ତି ଯେ, ଗଣତାନ୍ତ୍ରିକ ସଂଖ୍ୟା ଖେଳରେ ଏବେ ମଧ୍ୟ ମାୟାବତୀ ବସପା ଓ ବିଜେପି ଦଳର ବିଧାୟକମାନଙ୍କର ନେତ୍ରୀ ଅଛନ୍ତି ଏବଂ ତାଙ୍କ ପଛରେ ସଂଖ୍ୟାଗରିଷ୍ଠ ବିଧାୟକଙ୍କ ସହମତି ଅଛି । ଅନ୍ୟର ଘରେ ନିଆଁ ଲଗାଇବାକୁ ଚେଷ୍ଟିତ ଆର.ଏଲ.ଡି ନେତାଙ୍କର ନିଜ ଘରେ ନିଆଁ ଲାଗିବାର ସଙ୍କେତ ମିଳିସାରିଲାଣି । ଖାଲି ଜଳି ଉଠିବା ବାକି ଅଛି, ମାତ୍ର ବିଳମ୍ବ ନାହିଁ ।

ସାହାଣମେଳା - ୧.୭.୨୦୦୪

# ଆଉ ଜଣେ କାନ୍ତିଲାଲ୍

ଏକଦା ଓଡ଼ିଆ ସଂସ୍କୃତି ଓ ଭାଷା ଉପରେ ପ୍ରଚଣ୍ଡ ଆକ୍ରମଣ କରିଥିବା କାନ୍ତିଲାଲ୍ ଭଟ୍ଟାଚାର୍ଯ୍ୟ ଆଜି ଜୀବିତ ନଥିଲେ ହେଁ ତାଙ୍କର ଅପଖ୍ୟାକ୍ଷାତି ଓଡ଼ିଆ ଭାଷାର ଇତିହାସରେ ଲିପିବଦ୍ଧ । ବର୍ତ୍ତମାନର ଓଡ଼ିଆ ଭାଷା କ୍ଷୁଦ୍ରଗଳ୍ପ, ପ୍ରବନ୍ଧ, କବିତା ତଥା ନାଟକରେ ଯେ କୌଣସି ଭାରତୀୟ ଭାଷା ଠାରୁ ଆଦୌ ନ୍ୟୁନ ନୁହେଁ । ତଥାପି କଳେ ବଳେ କୌଶଳଳେ ସେହି କାନ୍ତିଲାଲମାନଙ୍କର ଆକ୍ରମଣ ଓଡ଼ିଆ ଭାଷା ଓ ସଂସ୍କୃତି ଉପରେ ଏବେବି ପରୋକ୍ଷରେ ଚାଲୁଥିବା ଜଣାଯାଏ । ସେମାନେ ଓଡ଼ିଶା ଭିତରେ ବା ବାହାରେ ଯେକୌଣସି ସ୍ଥାନରେ କ୍ଷମତାରେ ରହିଲେ ଓଡ଼ିଆ ଭାଷା ଓ ସଂସ୍କୃତିର ସ୍ୱାର୍ଥରେ ପ୍ରତିବନ୍ଧକ ହେବାକୁ ପ୍ରୟାସ କରିଥାଆନ୍ତି ।

ଭାରତ ସରକାରଙ୍କ ଉଦ୍ୟମରେ 'ନାଲକୋ' ଓଡ଼ିଶାର ବର୍ତ୍ତମାନ ସର୍ବବୃହତ୍ ଲାଭଦାୟକ ଅନୁଷ୍ଠାନ । ପ୍ରତିବର୍ଷ ନାଲ୍‌କୋ ତରଫରୁ ଓଡ଼ିଶାର ଭିନ୍ନ ଭିନ୍ନ ପତ୍ରପତ୍ରିକାମାନଙ୍କୁ ଦୁର୍ଗାପୂଜା ଅବସରରେ ବିଜ୍ଞାପନ ମାଧ୍ୟମରେ ଯତ୍ ସାମାନ୍ୟ ଆର୍ଥିକ ଅନୁଦାନ ଦିଆଯାଇ ଆସୁଥିଲା । କିନ୍ତୁ ଚଳିତ ବର୍ଷ ଏହାର ବ୍ୟତିକ୍ରମ ଦେଖିବାକୁ ମିଳିଛି । ଏହି ବର୍ଷ ଦୁର୍ଗାପୂଜାରେ ଆବେଦନ କରିଥିବା ପତ୍ରପତ୍ରିକାର ସମ୍ପାଦକମାନଙ୍କୁ ବିଜ୍ଞାପନ ମଞ୍ଜୁରୀ ପାଇଁ ସଂଶ୍ଳିଷ୍ଟ ବିଭାଗ ସୁପାରିଶ କରିଥିବାବେଳେ ଏହି କାର୍ଯ୍ୟାଳୟରେ ବିଜ୍ଞାପନ ପ୍ରଦାନକାରୀ ଅଧିକାରୀ ଉକ୍ତ ଫାଇଲ୍‌ରେ ନକାରାତ୍ମକ ଆଦେଶ ପ୍ରଦାନ କଲେ । ବିଭିନ୍ନ ପତ୍ରିକାର ସମ୍ପାଦକମାନେ ଏପରି ନିଷ୍ପତ୍ତିରେ ଅସନ୍ତୁଷ୍ଟ ହୋଇ କୁହାକୁହି ହେଉଥିଲେ ଯେ, 'ନାଲ୍‌କୋ'ରେ ଆଉଜଣେ 'କାନ୍ତିଲାଲ୍' ଦାୟିତ୍ୱରେ ଅଛନ୍ତି । ଅଧିକାରୀ ଜଣକ ହୁଏତ କାନ୍ତିଲାଲ୍ ହୋଇ ପାରନ୍ତି ଅଥବା ତାଙ୍କର ଉତ୍ତରପୁରୁଷ । କିନ୍ତୁ ତାଙ୍କ ଦ୍ୱାରା ସଂସ୍କୃତିର ବିକାଶ ପରିବର୍ତ୍ତେ ଓଡ଼ିଆ ମାରଣ ସମ୍ଭବ ହେଲାବୋଲି ବୁଝିବାକୁ ହେବ । ନିଜର କ୍ଷମତାକୁ ନେଇ ଓଡ଼ିଆ ପତ୍ରପତ୍ରିକା ପ୍ରତି ଯେପରି ପଦକ୍ଷେପ ନେଲେ ତାହାକୁ ଦେଖିଲେ ମନେହେବ ଆଉ ଜଣେ କାନ୍ତିଲାଲ ଭଟ୍ଟାଚାର୍ଯ୍ୟ ନାଲକୋରେ ପାଦ ଦେଇଛନ୍ତି ।

ସାହାଣମେଳା – ଅକ୍ଟୋବର ୨୦୦୬

# ୟୁନିଫର୍ମ୍

ସମ୍ବାଦରୁ ପ୍ରକାଶ ଯେ କେତେକ କଲେଜରେ ବିଶେଷତଃ ସ୍ୱୟଂ ଶାସିତ କଲେଜରେ +୩ ସ୍ତରରେ ଡ୍ରେସ୍ କୋର୍ଡର ପ୍ରଚଳନ କରାଯାଉଛି । ଯଦି ସେହି କଲେଜରେ +୨ ମଧ୍ୟ ସଂଯୁକ୍ତ ଥାଏ, ତେବେ ସେମାନଙ୍କ ପାଇଁ ମଧ୍ୟ ଏକା ଆଇନ ଲାଗୁହେବା ଉଚିତ । କେବଳ ସେତିକି ନୁହେଁ ଅଧ୍ୟାପକ ଏବଂ ଅଧ୍ୟାପିକାମାନଙ୍କ ପାଇଁ ମଧ୍ୟ ''ଡ୍ରେସ୍ କୋର୍ଡ'' ଲାଗୁହେବା ଉଚିତ ।

ଏ ସମ୍ପର୍କରେ ସ୍ମରଣ କରାଯାଇପାରେ ଯେ ବାଳିକା ବିଦ୍ୟାଳୟମାନଙ୍କରେ ତଥା ବାଳକ ଅଥବା ସହଶିକ୍ଷା ବିଦ୍ୟାଳୟମାନଙ୍କରେ ଛାତ୍ର ଛାତ୍ରୀମାନଙ୍କ ପାଇଁ ''ଡ୍ରେସକୋର୍ଡ'' ପ୍ରଚଳିତ ଅଛି । ମାତ୍ର ଶିକ୍ଷକ ତଥା ଶିକ୍ଷୟିତ୍ରୀମାନଙ୍କ ପାଇଁ ସେହି ଆଇନ୍ ନୁହେଁ । ଅର୍ଥାତ୍ ଆମେ ଯାହା କହୁଛୁ କର, ମାତ୍ର ଆମେ ଯାହା କରୁଛୁ କରନାହିଁ ।

କୋମଳମତି ବାଳକ ବାଳିକାମାନଙ୍କ ପାଇଁ ଏକ ପ୍ରକାର ପୋଷାକ ପ୍ରଚଳନ କଲାବେଳେ ଆମ ଶିକ୍ଷାଦାତାଗଣ ବିଶେଷତଃ ଶିକ୍ଷୟିତ୍ରୀମାନେ ବିଭିନ୍ନ ଫେସନର ଶାଢ଼ି ପିନ୍ଧି, ହେୟାର ଷ୍ଟାଇଲ୍ କରି ସ୍କୁଲ୍‌କୁ ଆସୁଛନ୍ତି । ଦେଖିଲେ ମନେ ହୁଏ, ଏଇ ବୋଧହୁଏ ସୁଟିଂ ସେଟ୍‌କୁ ଯାଉଛନ୍ତି କିମ୍ବା ଫେରିଲେ । ମୋନଙ୍କ ପାଇଁ ସୁନ୍ଦର ଏବଂ ମାର୍ଜିତ ପୋଷାକ ପିନ୍ଧିବାକୁ ଆଇନ କରାଯାଉ । ଏହି ପ୍ରସଙ୍ଗରେ ପ୍ରକାଶ ଯୋଗ୍ୟ ଯେ ମୋର ଜ୍ୟେଷ୍ଠା କନ୍ୟା ୧ ୯ ୭ ୯ ମସିହାରେ ଅନୁଗୁଳ ସରକାରୀ ବାଳିକା ବିଦ୍ୟାଳୟରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଲା । ସେଠାରେ ଛାତ୍ରୀମାନଙ୍କ ପାଇଁ ନୀଳବର୍ଣ୍ଣର ପୋଷାକ ପିନ୍ଧିବା ପାଇଁ ଆଇନ ଥାଏ । ତେବେ ପ୍ରଥମଦିନ ଆଡମିଶନ୍ ପରେ ମତେ କୁହାଗଲା ଯେ ଅନୁମୋଦିତ ପୋଷାକ ପିନ୍ଧି ସେ ସ୍କୁଲ୍‌କୁ ଆସିବ । ସେଦିନ ପ୍ରଥମ ଦିନ ବୋଲି କ୍ଷମା କରିଦିଆଗଲା । ମୁଁ ଅଫିସ୍‌ରେ ଯାଇ ପ୍ରଧାନ ଶିକ୍ଷୟିତ୍ରୀଙ୍କୁ କହିଲି – ''ମାଡାମ୍, ଛାତ୍ରୀମାନେ ଅବୋଧ କିଶୋରୀ । ସେମାନଙ୍କ ପାଇଁ ଡ୍ରେସ୍‌କୋର୍ଡ ପ୍ରଚଳନ

କଲେ ଠିକ୍ ଅଛି । ମାତ୍ର ଆପଣମାନେ ? ଶିକ୍ଷୟିତ୍ରୀମାନେ ଯୁବତୀ, ତରୁଣୀ, ବିଗତ ଯୌବନା ନିର୍ବିଶେଷରେ ଚିତ୍ରିତ ପ୍ରଜାପତି ଭଳି ପୋଷାକ ନ ପିନ୍ଧି ଗୋଟିଏ ପ୍ରକାରର ମାର୍ଜିତ ପୋଷାକ ପିନ୍ଧୁନାହାନ୍ତି କାହିଁକି ?'' ସେ ପ୍ରଶ୍ନର ଉତ୍ତର ସେଦିନ ମିଳିନଥିଲା ।

ଆଜି ମଧ୍ୟ 'ଡ୍ରେସକୋର୍ଡ' ପ୍ରଚଳନ ଥିବା ଅନୁଷ୍ଠାନର ଶିକ୍ଷକ/ଶିକ୍ଷୟିତ୍ରୀମାନଙ୍କୁ ସେହି ପ୍ରଶ୍ନ ମୁଁ ପଚାରୁଛି । ବର୍ତ୍ତମାନ କଲେଜ ସ୍ତରରେ 'ଡ୍ରେସକୋର୍ଡ' ଲାଗୁହେବା ବେଳେ ମୋର ସେହି ଗୋଟିଏ ପ୍ରଶ୍ନ – ଆଇନ ପ୍ରଣୟନ କରୁଥିବା ଲୋକେ ପ୍ରଥମେ ସେହି ଆଇନ ମାନନ୍ତୁ ।

ସାହାଣମେଳା – ୨୦.୭.୨୦୦୪

ବି.ଦ୍ର. : ଅବଶ୍ୟ ଏହା ମଧ୍ୟରେ ହାଇସ୍କୁଲରେ ଶିକ୍ଷକ / ଶିକ୍ଷୟିତ୍ରୀମାନଙ୍କ ପାଇଁ ଡ୍ରେସ୍ କୋର୍ଡ ଲାଗୁହେଲାଣି ।

# ଭକ୍ତି ଓ ଭଗବାନ

ଅଳ୍ପ କେତେଦିନ ତଳେ ଚୋଟିଏ ଚାଞ୍ଚଲ୍ୟକର ସମ୍ବାଦ ସମ୍ବାଦପତ୍ରରୁ ଜଣାପଡ଼ିଲା । କେନ୍ଦ୍ରାପଡାର ସୁପ୍ରସିଦ୍ଧ ବଳଦେବଜିଉ ମନ୍ଦିରରେ ସାତଜଣ ଶ୍ୱେତାଙ୍ଗ ଇସ୍କନ ଭକ୍ତ ପ୍ରବେଶ କରିଥିବାରୁ ତାହା ଏକ ପ୍ରଧାନ ଆଲୋଚ୍ୟ ବିଷୟ ହୋଇଥିଲା ଏବଂ ସେଥିପାଇଁ ମନ୍ଦିରକୁ ଶୋଧ କରାଗଲା ।

ମନେରଖିବାକୁ ହେବ ଯେ ଇସ୍କନ୍ ଭକ୍ତମାନେ ହିନ୍ଦୁ ଏବଂ ସେମାନେ ଯେ କୌଣସି ଜଣେ ନୈଷ୍ଠିକ ହିନ୍ଦୁଠାରୁ କୌଣସି ଗୁଣରେ ଆଚାର ବ୍ୟବହାରରେ କମ୍ ନୁହନ୍ତି । ସେମାନେ ନିରାମିଷ ଆହାର କରନ୍ତି । ଆଚରଣରେ ମଧ୍ୟ ସେମାନେ ତୁଳସୀମାଳି ବେକରେ ପକାନ୍ତି, ନାମାବଳି କାନ୍ଧରେ ପକାଇବା ସଙ୍ଗେ ସଙ୍ଗେ ଚନ୍ଦନ ଓ ତିଳକ ଚିତା ଧାରଣ କରନ୍ତି । ସେମାନେ ନିଷ୍ଠାପର ଭାବେ ସନ୍ଧ୍ୟା କରନ୍ତି । ଘଣ୍ଟ ଘଣ୍ଟାଧ୍ୱନି ମଧ୍ୟରେ କୃଷ୍ଣ ବଳରାମଙ୍କ ମନ୍ଦିରରେ ଆରତୀ କରନ୍ତି । ଭଗବତ୍ ଗୀତା ତଥା ବେଦପାଠ କରନ୍ତି । ସମଗ୍ର ପୃଥିବୀରେ ବର୍ତ୍ତମାନ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଏହି ଇସ୍କନ୍ ଭକ୍ତଙ୍କ ଯୋଗୁ ସମ୍ଭବ ହୋଇଛି । ହିନ୍ଦୁ ଧର୍ମର ପ୍ରସାର କରି ସମଗ୍ର ବିଶ୍ୱରେ ତା'ର ଉତ୍କର୍ଷତାକୁ ପ୍ରତିପାଦନ କରିପାରିଛନ୍ତି ଏହି ଇସ୍କନ ଭକ୍ତମାନେ ।

ଆଉ ଜଣେ ସୋଭିଏଟ୍ ରୁଷ୍‌ରେ ଜନ୍ମିତା ଏଲଭିରା ଶ୍ରୀକୃଷ୍ଣ ଏବଂ ଶ୍ରୀଜଗନ୍ନାଥଙ୍କର ଏକାନ୍ତ ସମର୍ପିତ ଭକ୍ତ ଇସ୍କନ ସଂପ୍ରଦାୟର ଅନ୍ତର୍ଗତ । ତାଙ୍କର ପରିବର୍ତ୍ତିତ ନାମ ଅବନ୍ତିକା ଦେବଦାସୀ । ସେ ସାରା ପୃଥିବୀରେ ଜଗନ୍ନାଥ ତତ୍ତ୍ୱ ଓ ଧର୍ମ ପ୍ରଚାରକୁ ଜୀବନର ଲକ୍ଷ୍ୟ ବୋଲି ଗ୍ରହଣ କରିଛନ୍ତି । ତାଙ୍କର ପ୍ରଭୁଙ୍କ ପ୍ରତି ଭକ୍ତିର ନିଦର୍ଶନ ସ୍ୱରୂପ ସେ ଲଳିତ କଣ୍ଠରେ ଗୀତ ଗୋବିନ୍ଦ ଗାନ କରି ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରି ଦେଇଥିଲେ । ଅଥଚ ଶ୍ୱେତାଙ୍ଗିନୀ ଆଳରେ ତାଙ୍କୁ ମଧ୍ୟ ମନ୍ଦିରରେ ପ୍ରବେଶ କରାଇ ଦିଆଗଲାନାହିଁ ।

ଆମ୍ଭେମାନେ ଇସ୍କନ୍ ମନ୍ଦିରରେ ବିନା ବାଧାରେ ପ୍ରବେଶ କରି ପାରୁଥିବା ବେଳେ ଇସ୍କନ ଭକ୍ତଙ୍କୁ ମନ୍ଦିର ପ୍ରବେଶ କରାଇ ନଦେବା ଘୋର ଅନ୍ୟାୟ ନୁହେଁ

କି ? କୌଣସି ଶ୍ୱେତାଙ୍ଗ କେବେ ହିନ୍ଦୁ ମନ୍ଦିର ଅପବିତ୍ର ବା ଧ୍ୱଂସ କରିଥିବାର ପ୍ରମାଣ ନାହିଁ । ଅଥଚ କୃଷ୍ଣକାୟ ମୁସଲ୍‌ମାନ ଓ ପଠାଣମାନେ ଅତୀତରେ ବହୁ ହିନ୍ଦୁ ମନ୍ଦିର ଧ୍ୱଂସ କରିଥିଲେ, ଏବେ ମଧ୍ୟ ସେ ପ୍ରଚେଷ୍ଟା ଅବ୍ୟାହତ ରଖିଛନ୍ତି ।

ଇସ୍କନ୍ ଭକ୍ତମାନଙ୍କର ହିନ୍ଦୁ ମନ୍ଦିର ପ୍ରବେଶ ଅଧିକାର ଉପରେ ଏକ ଜାତୀୟ ବିତର୍କ ପାଇଁ ମୁଁ ବୁଦ୍ଧିଜୀବୀମାନଙ୍କୁ ଆହ୍ୱାନ କରୁଛି । ମୁକ୍ତିମଣ୍ଡପ ପଣ୍ଡିତ ସଭା, ପୁରୀର ଠାକୁର ରାଜା, ଶଙ୍କରାଚାର୍ଯ୍ୟଙ୍କୁ ମଧ୍ୟ ଅନୁରୋଧ କରୁଛି ସେମାନେ ଏ ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରି ହିନ୍ଦୁ ଭାବରେ ସେମାନଙ୍କ ପ୍ରତି ଥିବା ବାଛ ବିଚାର ନୀତି ପରିହାର କରନ୍ତୁ । ସେମାନଙ୍କୁ ମନ୍ଦିର ପ୍ରବେଶ ଅନୁମତି ପ୍ରଦାନ କଲେ ହିନ୍ଦୁଧର୍ମର ପ୍ରଭୁତ ଉନ୍ନତି ସାଧିତ ହେବ । ସେମାନଙ୍କ ପ୍ରଚେଷ୍ଟାରେ ଶ୍ରୀଜଗନ୍ନାଥ ସଂସ୍କୃତି ସାରା ବିଶ୍ୱରେ ପ୍ରସାର ଲାଭ କରିବ । ଏହାକୁ ହିନ୍ଦୁ ଧର୍ମର ଏକ ସ୍ୱତଃପ୍ରବୃତ୍ତ ସଂପ୍ରସାରଣ ମିଶନ୍ ବୋଲି ବିଚାର କରି କାର୍ଯ୍ୟପନ୍ଥା ଗ୍ରହଣ କରାଯିବାକୁ ମୋର ଅନୁରୋଧ ।

ସାହାଣମେଲା - ୧୪.୯.୨୦୦୪

# ସରକାରୀ ଲାଞ୍ଚ

ଲାଞ୍ଚ ପୁଣି ସରକାରଙ୍କ ଦ୍ୱାରା । କଥାଟା ଶୁଣିଲାମାତ୍ରେ ଆପଣଙ୍କୁ ଖରାପ ଲାଗିପାରେ । ମାତ୍ର ଏହା ଆମ ଦେଶରେ ଏକ ନିଛକ ସତ୍ୟ ।

ମାତ୍ର ଅଳ୍ପ କେତେ ଦିନ ତଳେ ଆମ ଓଡ଼ିଶାର କୃଷକମାନଙ୍କୁ ମୋବାଇଲ୍ ଫୋନ ମାଗଣାରେ ବଣ୍ଟାଗଲା । ଯଦି ଗରିବ କୃଷକଟିଏ ମୋବାଇଲ୍ ଫୋନ୍‌ଟିଏ କିଣି ପାରିବ ନାହିଁ ବୋଲି ତାକୁ ଫୋନ୍‌ଟିଏ ଦିଆଗଲା, ତେବେ ସେ ଫୋନ୍‌ଟି ନିଶ୍ଚୟ ତା' ପୁଅ କି ଝିଅ ହାତରେ ଥିବ । କୃଷକ ହାତରେ କେବେହେଲେ ନଥିବ । ଏହି ସବୁ ସତ୍ୟକୁ ପରୀକ୍ଷା କରି ଦେଖିଲେ ଉପଲବ୍ଧି କରିହେବ ।

ପୁଣି ମାଗଣା ଛତା, ସାଇକେଲ୍ ଲାପଟପ୍, ଜୋତା ବଣ୍ଟା ଚାଲିଛି । ଏ ଟଙ୍କା କ'ଣ ବାଣ୍ଟିବା ଲୋକର ନିଜସ୍ୱ ସମ୍ପତ୍ତିରୁ ନା ଦଳର ପାଣ୍ଠିରୁ? ଏ ପ୍ରଶ୍ନର ସରଳ ଉତ୍ତର- ନା । ଏହା ସରକାରୀ ରାଜକୋଷରୁ । ଭୋଟ ପାଇଁ ଏହା ଏକ ପ୍ରକାର ଲାଞ୍ଚ ନୁହେଁ ତ ଆଉ କ'ଣ ?

କେତେକ ରାଜ୍ୟରେ ଭୋଟ୍ ପୂର୍ବରୁ ରାଜନେତାମାନେ ମଙ୍ଗଳସୂତ୍ର, ଲାପଟପ୍, ବ୍ୟକ୍ତିବିଶେଷଙ୍କୁ ଉପହାର ଦେବାର ପ୍ରତିଶ୍ରୁତି ଦେଉଛନ୍ତି । ଏସବୁ ଯଦି ଦଳୀୟ ପାଣ୍ଠିରୁ ବା କାହରି ବ୍ୟକ୍ତିଗତ ସମ୍ପତ୍ତିରୁ ଦିଆଯାଏ, ତେବେ ସର୍ବସାଧାରଣଙ୍କର ହୁଏତ ବିଶେଷ କିଛି କହିବାର ନଥାନ୍ତା । ମାତ୍ର ନିଜର ସ୍ୱାର୍ଥ ପାଇଁ ଦେଶର ରାଜକୋଷ ଲୁଣ୍ଠନ ଏକ ଗର୍ହିତ ସାମାଜିକ ଅପରାଧ । ଜନ ସମୁଦାୟ ଏହାକୁ ଭୋଟ୍ ସମୟରେ ପ୍ରଥମେ ବିଚାରକୁ ନେବା ଉଚିତ । ପୁଣି ଭୋଟ୍ ପାଇଁ ଦୁଇଟଙ୍କାରେ ଚାଉଳ, ଏକଟଙ୍କାରେ ଚାଉଳ ବା ଗହମ ଯୋଗାଇବା ପ୍ରତିଶ୍ରୁତି ମିଳୁଛି । କେତେକ ରାଜ୍ୟରେ ଏହା ମଧ୍ୟ ସୀମିତ ପରିସରରେ ହେଲେ ହେଁ କାର୍ଯ୍ୟକାରୀ ହେଉଛି । ଫଳତଃ ଲୋକମାନଙ୍କୁ ଏହା କର୍ମକୁଣ୍ଠ ଓ ମାଗିଖିଆ କରିଦେବା ସଙ୍ଗେ ସଙ୍ଗେ ଜାତୀୟ ଶ୍ରମ ଶକ୍ତିର ବହୁଳ ଅପଚୟ ଘଟାଇଛି । ଦେଶବାସୀଙ୍କୁ କର୍ମଠ ହେବାର ପ୍ରେରଣା ଦେବା ପରିବର୍ତ୍ତେ ମାଗିଖିଆ କରି ଦିଆଯାଉଛି ।

କ୍ଷୁଦ୍ର ସ୍ୱାର୍ଥ ପାଇଁ ଦେଶର ଅନିଷ୍ଟ ଘଟାଇବା ରାଜନେତାମାନଙ୍କର ଏକ ଅଭ୍ୟାସରେ ପରିଣତ ହେଲାଣି । ପୃଥିବୀରେ ସର୍ବତ୍ର ଦେଶର ସ୍ୱାର୍ଥ ଓ ଦେଶରକ୍ଷାକୁ ପ୍ରାଥମିକତା ଦିଆଯାଉଥିବାବେଳେ ଆମ ଭାରତରେ ବିଭେଦ ଓ ବିଭାଜନ ସୃଷ୍ଟି କରି ଭୋଟ୍ ହାତେଇବାର ପ୍ରକ୍ରିୟା ଜାରି ରହିଛି । ଏହାର ସଦ୍ୟତମ ଉଦାହରଣ ହେଲା ଉତ୍ତରପ୍ରଦେଶର ବାପ-ପୁଅ ଶାସନରେ ମୁସଲମାନ ତୋଷଣ ।

ଉତ୍ତରପ୍ରଦେଶର ମୁଖ୍ୟମନ୍ତ୍ରୀ ଅଖିଳେଶ ଯାଦବ ଘୋଷଣା କରିଛନ୍ତି ପ୍ରତି ମୁସଲମାନ ପରିବାରର ଝିଅ ବିଭାଘର ପାଇଁ ପଚାଶ ହଜାର ଟଙ୍କାର ଆର୍ଥିକ ସାହାଯ୍ୟ ସରକାରଙ୍କ ତରଫରୁ ମିଳିବ । ମାତ୍ର ହିନ୍ଦୁ ଝିଅମାନେ ଏ ଦେଶରେ ସେ ସୁବିଧାରୁ ବଞ୍ଚିତା ହେବେ କାହିଁକି ? ଏହା ମୁସଲମାନ ଭୋଟ ହାତେଇବାର ଏକ କୌଶଳ ନୁହେଁକି ? ଈଶ୍ୱର ଏମାନଙ୍କୁ ସଦ୍‌ବୁଦ୍ଧି ଦିଅନ୍ତୁ । ଏମାନେ ଥରେ ହେଲେ ଦେଶ କଥା ଚିନ୍ତା କରନ୍ତୁ ।

ସାହାଣମେଳା - ୨.୯.୨୦୦୪

# ଆତଙ୍କବାଦୀଙ୍କ କବଳରେ ଭାରତ

ବର୍ତ୍ତମାନର ପରିସ୍ଥିତିକୁ ଅନୁଧ୍ୟାନ କଲେ ଜଳଜଳ ଦେଖାଯାଏ ଯେ ସମଗ୍ର ଭାରତବର୍ଷ ଆତଙ୍କବାଦୀଙ୍କ କବଳରେ କବଳିତ । ନିକଟରେ ଘଟିଯାଇଥିବା ମୁମ୍ବାଇରେ ଆତଙ୍କବାଦୀମାନେ ଯେଉଁ ଲୋକହର୍ଷଣକାରୀ ହତ୍ୟାକାଣ୍ଡ ଓ ଭୟର ବାତାବରଣ ସୃଷ୍ଟି କଲେ ତାକୁ ରୋକାଯାଇ ପାରିଥାନ୍ତା ।

ସେପ୍ଟେମ୍ବର ମାସରେ ମୁମ୍ବାଇରେ ସନ୍ତ୍ରାସବାଦୀଙ୍କ ଆକ୍ରମଣର ସମ୍ଭାବନା ଥିବାର ଏଟିଏସ୍‌କୁ ସତର୍କ କରିଥିଲେ । ଆମେରିକା ତରଫରୁ ମଧ୍ୟ ଆତଙ୍କବାଦୀଙ୍କ ସମ୍ଭାବ୍ୟ ଆକ୍ରମଣ ବିଷୟରେ ପୂର୍ବ ସୂଚନା ମିଳିଥିଲା । ଏପରିକି ମତ୍ସ୍ୟଜୀବୀମାନେ ପୋଲିସ୍‌କୁ ସୂଚନା ଦେଇଥିଲେ ଯେ କେତେଜଣ ଅଚିହ୍ନା ଲୋକ ଜଳପଥରେ ମୁମ୍ବାଇରେ ପ୍ରବେଶ କରିଛନ୍ତି । ସେମାନେ ପଚାରିବାରୁ – 'ନିଜ କାମ ନିଜେ କର, ଆମ କଥାରେ ମୁଣ୍ଡ ଖେଳାଅନାହିଁ' ବୋଲି କହିଥିଲେ । ମାତ୍ର ସେ କଥାକୁ ସ୍ଥାନୀୟ ପୋଲିସ୍ ଏଟିଏସ୍ କିମ୍ବା ମହାରାଷ୍ଟ୍ର ସରକାର କେହି ଗୁରୁତ୍ୱ ଦେଲେ ନାହିଁ । ସରକାରଙ୍କ ପାଖରେ ଦେଶର ନିରାପତ୍ତା ଅପେକ୍ଷା ଆସନ୍ତା ନିର୍ବାଚନ ପୂର୍ବରୁ ବିଜେପିକୁ ବଦନାମ କରିବା ସେମାନଙ୍କ ପାଇଁ ବେଶି ଗୁରୁତ୍ୱପୂର୍ଣ୍ଣବୋଧ ହେଲା । ପୋଲିସ୍ ତ ସହଜେ ଦୁର୍ନୀତିରେ ବୁଡି ରହିଛି । ସମଗ୍ର ଏଟିଏସ ସଂସ୍ଥା ଏବଂ ପୋଲିସ୍ ବାହିନୀକୁ ମାଲେଗାଓଁ ବିସ୍ଫୋରଣ ପଛରେ ଡାହାଳ କୁକୁର ପରି ଲଗାଇ ଦିଆଯାଇଥିଲା । ଜଣେ ନିଷ୍ଠାପର ପୋଲିସ୍ ଅଫିସର ହେମନ୍ତ କର୍‌କରେ ମୁଖ୍ୟମନ୍ତ୍ରୀ ତଥା ଗୃହମନ୍ତ୍ରୀଙ୍କ ବଚସ୍କର ସାଜିଗଲେ । ଦୈନିକ ସମ୍ବାଦପତ୍ର ଓ ଟି.ଭିରେ ପ୍ରଜ୍ଞା ସିଂ ଠାକୁର, ପୁରୋହିତ ପାଣ୍ଡେ ଇତ୍ୟାଦିଙ୍କ ବିଷୟରେ ସମ୍ବାଦ ଓ ଫଟୋ ପ୍ରଦର୍ଶନ ଚାଲିଲା । 'ହିନ୍ଦୁ-ସନ୍ତ୍ରାସବାଦୀ' ବୋଲି ଗଣମାଧ୍ୟମରେ ବାରମ୍ବାର ପ୍ରଚାର କରି ହିନ୍ଦୁ ଓ ହିନ୍ଦୁତ୍ୱକୁ ଜନନେତ୍ରରେ ନିନ୍ଦିତ କରିବା ପ୍ରଚେଷ୍ଟାରେ ଭାରତ ସରକାର ତଥା ମହାରାଷ୍ଟ୍ର ସରକାର ଲାଗିପଡିଲେ । ଆମର କାମଳ ବ୍ୟାଧିଗ୍ରସ୍ତ 'ମିଡିଆ' ମଧ୍ୟ ସେହି ସ୍ୱରରେ ସ୍ୱର ମିଳାଇ ଚାଲିଲେ ।

ମାତ୍ର ମୁମ୍ବାଇ ବିସ୍ଫୋରଣ ପରେ ସେହିମାନେ ବିବୃତ୍ତି ଦେଲେ ଯେ ଆତଙ୍କବାଦୀର ଜାତି ନାହିଁ । ଦୁଇଦିନ ଆଗରୁ ହିନ୍ଦୁ ଆତଙ୍କବାଦୀ ବୋଲି ଚିତ୍କାର

କରୁଥିବା ନେତାମାନେ, ଗଣମାଧ୍ୟମ ହଠାତ୍ ସେକୁଲାର୍ ହୋଇଗଲେ । ବିଶ୍ୱବ୍ୟାପି ଇସ୍‌ଲାମ୍ ସନ୍ତ୍ରାସବାଦ ଚାଲିଥିଲାବେଳେ କେବଳ ଭାରତରେ ମୁସଲ୍‌ମାନ ସନ୍ତ୍ରାସବାଦୀ କହିବାକୁ କୁଣ୍ଠିତ ମିଡ଼ିଆ ଓ ରାଜନେତାମାନେ କହି ଚାଲିଲେ-ସନ୍ତ୍ରାସବାଦୀର ଜାତି ନାହିଁ । ମୁସଲ୍‌ମାନ ଭୋଟ୍ ହରାଇବାର ଆଶଙ୍କାରେ ଉପା ସରକାର ଆଉ କେତେ ନିରୀହ ରକ୍ତପାତ ବରଦାସ୍ତ କରିବ ?

ନ୍ୟୁୟର୍କର ୱ୍ୱଲର୍ଡ ଷ୍ଟ୍ରିଟ୍ ଜର୍ଣ୍ଣାଲ୍ ସଂପାଦକୀୟରେ ଭାରତର ଉପା ସରକାରକୁ ଘୋର ନିନ୍ଦା କରି କହିଛନ୍ତି ଯେ, କେତେକ କ୍ଷୁଦ୍ର ନ୍ୟସ୍ତ ସ୍ୱାର୍ଥ ଦଳକୁ ନେଇ ନିଜର ସରକାରକୁ ବଞ୍ଚାଇବାକୁ ପ୍ରଧାନମନ୍ତ୍ରୀ ସର୍ବଦା ବ୍ୟସ୍ତ । ତେଣୁ ସନ୍ତ୍ରାସବାଦ ବିରୂଦ୍ଧରେ କୌଣସି ଆଇନ୍ ପ୍ରଣୟନ କରିବାକୁ ସେ ଅକ୍ଷମ ।

ଅଥଚ ସନ୍ତ୍ରାସବାଦୀମାନ ଭାରତରେ ଧ୍ୱଂସଲୀଳା ସୃଷ୍ଟିକରି ସହଜରେ ପାକିସ୍ତାନ ଓ ବାଙ୍ଗଲାଦେଶକୁ ଖସିଯାଉଛନ୍ତି । ଭାରତରେ ଏହି କୁଖ୍ୟାତ ସନ୍ତ୍ରାସବାଦୀମାନେ ପାକିସ୍ତାନରେ ସୈନିକ ଓ ଆଇଏସଆଇ ମାର୍ଫତ୍‌ରେ ରାଜ ଅତିଥି ସମ୍ମାନ ଲାଭ କରୁଛନ୍ତି । ଗତ ୩୦.୧୧.୨୦୦୮ 'ଆଜତକ'ରେ ପ୍ରସାରିତ ମହାରାଷ୍ଟ୍ରର ଗୃହମନ୍ତ୍ରୀ ଆର.ଆର.ପାଟିଲ୍‌ଙ୍କୁ 'ସିଧିବାତ'ରେ ପ୍ରଭୁ ଚାଓଲାଙ୍କ ସାକ୍ଷାତକାର ପ୍ରଣିଧାନ ଯୋଗ୍ୟ ।

ପ୍ରଭୁ ଚାଓଲା ପଚାରିଲେ- ବାରମ୍ବାର ସନ୍ତ୍ରାସବାଦୀମାନଙ୍କ ଆକ୍ରମଣକୁ ପ୍ରତିହତ କରିବାପାଇଁ 'ପୋଟା' ଆଇନ୍ ଲାଗୁ କରାଯିବା ଉଚିତ୍ କି ନୁହେଁ ?

ପାଟିଲ୍‌ଙ୍କ ଉତ୍ତର ଥିଲା ନା । ତେବେ ସନ୍ତ୍ରାସବାଦୀଙ୍କ ବିରୁଦ୍ଧରେ ପୋଟାକୁ ଛାଡି ନୋଟା କି ଟୋଟା କରାଯାଇପାରେକି ? ଉତ୍ତରରେ ସେ କହିଲେ- ଆମେ ସନ୍ତ୍ରାସବାଦ ବିରୁଦ୍ଧରେ 'ମୋକା' ପ୍ରୟୋଗ କରୁଛୁ । ସୂଚନା ଯୋଗ୍ୟ ଯେ ମାଲେଗାଓଁ ବିସ୍ଫୋରଣରେ ତଥାକଥିତ ହିନ୍ଦୁ ସନ୍ତ୍ରାସବାଦୀଙ୍କ ବିରୁଦ୍ଧରେ ପ୍ରଥମ କରି ମୋକା ଲାଗୁ ହୋଇଛି । ଯେପରିକି ତାହାହିଁ ଥିଲା ମହାରାଷ୍ଟ୍ରରେ ପ୍ରଥମ ସନ୍ତ୍ରାସବାଦ ।

ସଦ୍ୟତମ ସମ୍ବାଦରୁ ପ୍ରକାଶ, ସେହି ଘଟଣା ଉପରେ କେନ୍ଦ୍ର ଗୃହମନ୍ତ୍ରୀ, ମହାରାଷ୍ଟ୍ରର ଗୃହମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଇସ୍ତଫା ଦେଇଛନ୍ତି । ମାତ୍ର କେବଳ ଇସ୍ତଫା ଦେଇ ଜନମତକୁ ବିଭ୍ରାନ୍ତ କରାଯାଉଛି । ଏହି ଅଘଟଣ ପାଇଁ ଦାୟୀ ତଟରକ୍ଷୀ ବାହିନୀ, ପୋଲିସ୍, ଏଟିଏସ ତଥା ରାଜନେତାଙ୍କ ବିରୁଦ୍ଧରେ ଦେଶଦ୍ରୋହ ଅପରାଧରେ ବିଚାର ହେବା ଉଚିତ ।

ସାହାଣମେଳା – ୧୮.୧୨.୨୦୦୪

# ଅରାଜକତାର ଅନ୍ୟରୂପ

୪.୬.୨୦୦୮ରେ ଦିନ ୨ ଟାବେଳେ ଟିଭିରେ ସମ୍ବାଦ ପ୍ରଚାରିତ ହେଲା ଯେ, ପେଟ୍ରୋଲ୍ ଲିଟର୍ ପିଛା ୫ ଓ ଡିଜେଲ୍ ଲିଟର ପିଛା ୩ ଟଙ୍କା ବଢ଼ିଲା । ତା'ଛଡା ଜାଳେଣୀ ଗ୍ୟାସ୍ ସିଲିଣ୍ଡର ପିଛା ଟ. ୫୦.୦୦ ବଢ଼ିଲା । ଏହି ବଢ଼ତି ଦର ରାତି ୧୨ଟା ପରଠାରୁ ଲାଗୁହେବ । ଆମର କଳାବଜାରୀପ୍ରିୟ ଉପା ସରକାରଙ୍କ ଏହି ଘୋଷଣା ରାତିରେ ପ୍ରଚାର କରାଯାଇପାରିଥାନ୍ତା । ମାତ୍ର ସମ୍ବାଦ ପ୍ରଚାର ହେବାମାତ୍ରେ ସମସ୍ତ ପେଟ୍ରୋଲ୍‌ପମ୍ପ ଓ ଗ୍ୟାସ ଦୋକାନ ବନ୍ଦ । ତେଲ ଟ୍ୟାଙ୍କର ଆସି ପମ୍ପରେ ଠିଆ ହୋଇଛି ମାତ୍ର ଅନଲୋଡ ହେଉନାହିଁ । ଏହାର କାରଣ ହେଲା, ପମ୍ପ କେତେ ଘଣ୍ଟାପାଇଁ ବନ୍ଦ କରିଦେଲେ ଅବଶିଷ୍ଟ ପେଟ୍ରୋଲ୍ ଓ ଡିଜେଲ୍‌ରୁ ଲକ୍ଷାଧିକ ଟଙ୍କା ଲାଭ ହୋଇଯିବ । ଅବଶିଷ୍ଟ ସିଲିଣ୍ଡରରୁ ଲକ୍ଷାଧିକ ଟଙ୍କା ଲାଭ ଘରେ ପଶିଯିବ । ତେଣିକି ଜନତା ଯାହା ହଇରାଣ ହେଉଛି ହେଉ ।

ରାସ୍ତା ଉପରେ ଲୋକେ ଗାଡି ପେଲି ପେଲି ନେବାର ଦୃଶ୍ୟ ଅତୀବ କଷ୍ଟଦାୟକ ବୋଧ ହେଲା । ଯେଉଁ ୨/୩ଟି ପେଟ୍ରୋଲ୍ ପମ୍ପ ରାଜଧାନୀରେ ଖୋଲାଥିଲା- ସେଠାରେ ଅକଳ୍ପନୀୟ ଭିଡ । କେତେକ ଲୋକ ନିତାନ୍ତ ଆବଶ୍ୟକତାରେ ଲାଇନ୍‌ରେ ଥିବାବେଳେ ଆଉ କେତେକ ଗୋଟିଏ ରୁଗ୍ଣ ମାନସିକତା ନେଇ ଲାଇନରେ ଥିଲେ ଯେ ଦର ବଢ଼ିବା ପୂର୍ବରୁ କିଛି କିଣିଦେବା । ଭାବି ଦେଖନ୍ତୁ, କାଲିଠାରୁ ତ ସବୁଦିନ ଅଧିକ ଦର୍‌ରେ କିଣିବେ ନା ଗାଡି ବିକିଦେବେ ? ଅଥଚ ଏହି କ୍ଷୁଦ୍ରାତିକ୍ଷୁଦ୍ର ଲାଭ ପାଇଁ ବହୁତ ଲୋକ ଭିଡ କରିଥିବା ବେଳେ ପ୍ରକୃତ ଗାଡି ଗଡାଇ ଗଡାଇ ଆଣିଥିବା ଲୋକଟି ଶାରୀରିକ ତଥା ମାନସିକ ଅତ୍ୟାଚାରରର ଶିକାର ହେଲେ । ତା'ଛଡା ରିଜର୍ଭରେ ଚାଲୁଥିବା ଗାଡିବାଲାଙ୍କର ହୀନସ୍ତା କହିଲେ ନସରେ ।

ଖୋଦ୍ ରାଜଧାନୀରେ ଲୋକମାନଙ୍କର ଏ ବିପତ୍ତି ବେଳେ ପ୍ରଶାସନର କିଛି କର୍ତ୍ତବ୍ୟ ଥିବାଭଳି ବୋଧ ହେଉନାହିଁ । ଜିଲ୍ଲା ପ୍ରଶାସନ ପାଖରେ ଖବର ଯେ ନ

ପହଞ୍ଚିଥିବ ତାହା ନୁହେଁ । ମାତ୍ର ସବୁବେଳେ ଶାସକମାନଙ୍କର ଚାମଚାଗିରି କରିବାଠାରୁ ନିଜର ସ୍ୱାର୍ଥ ପାଇଁ ବ୍ୟବସ୍ଥା କରୁଥିବା କମିଶନରେଟ୍ ତଥା ପ୍ରଶାସନିକ ଅଫିସରମାନେ ଜନସାଧାରଣଙ୍କର ଏଭଳି ବିପତ୍ତି ବେଳେ କୁଆଡେ ଗଲେ ?

ଓଡ଼ିଶା ଓଡ଼ିଆମାନଙ୍କୁ ନେଇ ଏକ ଶାନ୍ତିପ୍ରିୟ ରାଜ୍ୟବୋଲି ଜନସାଧାରଣଙ୍କୁ ଏଭଳି ଅତ୍ୟାଚାରର ଶିକାର ହେବାକୁ ପଡ଼ିଲା । ଅନ୍ୟାନ୍ୟ କୌଣସି ରାଜ୍ୟ ହୋଇଥିଲେ ପେଟ୍ରୋଲ୍ ଟାଙ୍କିମାନ ଭଙ୍ଗାରୁଜା ନିଶ୍ଚୟ ହୋଇଥାନ୍ତା । ତା'ପରେ ପ୍ରଶାସନର ନିଦ ଭାଙ୍ଗିଥାଆନ୍ତା । ରାଜ୍ୟରେ ଯେ ଗୋଟିଏ ସରକାର ଅଛି ଏ ଧାରଣା ଗତ କାଲିର ଏହି ଘଟଣାରୁ ଲୋକଙ୍କ ମନରେ ସନ୍ଦେହ ସୃଷ୍ଟି ହେବା ସ୍ୱାଭାବିକ ନୁହେଁ କି ?

ଆମର ଦାବି ସରକାର ତଦନ୍ତ କରନ୍ତୁ । କେଉଁ କେଉଁ ପେଟ୍ରୋଲ୍ ପମ୍ପ ଗତକାଲି ବନ୍ଦ ଥିଲା ଏବଂ ପ୍ରତ୍ୟେକ ପେଟ୍ରୋଲ୍ ପମ୍ପକୁ ଅନ୍ୟୁନ ୧ ଲକ୍ଷ ଟଙ୍କା ଜୋରିମାନା କରନ୍ତୁ କିମ୍ବା ସେମାନଙ୍କ ଲାଇସେନ୍ସ ବାତିଲ୍ କରନ୍ତୁ । ଜନସାଧାରଣଙ୍କୁ ସର୍ବନିମ୍ନ ନ୍ୟାୟ ପ୍ରଦାନ କରନ୍ତୁ । ତା'ପରେ ଗ୍ୟାସ୍ ଦୋକାନଗୁଡିକୁ ମଧ୍ୟ ସେହି ଦୃଷ୍ଟିରେ ଦଣ୍ଡବିଧାନ କରାଯାଉ ।

ରାଜ୍ୟରେ ଗୋଟିଏ ସରକାର ଅଛି ବୋଲି ଲୋକେ ଜାଣନ୍ତୁ ।

# ବିଭାଜିତ ବାମପନ୍ଥୀ

ଏହା ଏକ ଜଣାଶୁଣା କଥା ଯେ ଚୋର, ଡକାଏତ ଏବଂ ବାମପନ୍ଥୀମାନଙ୍କ ମଧ୍ୟରେ ଜାତି ଓ ଧର୍ମ ନେଇ ବିଭେଦ ନଥାଏ । ସମସ୍ତଙ୍କର ଗୋଟିଏ ମାତ୍ର ଲକ୍ଷ୍ୟ ଲକ୍ଷ୍ୟ ହାସଲ । ମାତ୍ର ୧୯୯୩ ମସିହାରେ ଗ୍ୟାଙ୍ଗଷ୍ଟାର ଦାଉଦ୍ ଇବ୍ରାହିମ୍‌ର ହିନ୍ଦୁମାନଙ୍କ ବିରୁଦ୍ଧରେ ବୀଭତ୍ସ ହତ୍ୟାକାଣ୍ଡ ପରେ ତା ଦଳରେ ଥିବା ଛୋଟା ରାଜନ୍ ଭଳି କେତେକ ହିନ୍ଦୁ ଦାଉଦ୍ ଦଳରୁ ବାହାରି ଯାଇ ନିଜ ଦଳ ସୃଷ୍ଟି କଲେ ଓ ଦାଉଦର ବିରୁଦ୍ଧରେ କାମ କଲେ । ଧର୍ମ ବିଭେଦ ଏଭଳି ଏକ ସମ୍ବେଦନଶୀଳ ଘଟଣା ଯାହା ଥରେ ସୃଷ୍ଟିହେଲେ ଏକାଠି ରହିବା ଆଉ ସମ୍ଭବ ହୁଏ ନାହିଁ । ଭାରତର ବିଭାଜନ ଓ ପାକିସ୍ଥାନର ସୃଷ୍ଟି ଧର୍ମ ବିଦ୍ୱେଷର ଏକ ପ୍ରକୃଷ୍ଟ ଉଦାହରଣ ।

ଭାରତରେ ବାମପନ୍ଥୀଙ୍କ ଆନ୍ଦୋଳନ ବେଶ୍ ପୁରାତନ ହେଲେ ହେଁ ନକସଲ୍ ଆନ୍ଦୋଳନ ସେ ତୁଳନାରେ ଅର୍ବାଚୀନ । ପଶ୍ଚିମବଙ୍ଗରେ ନକ୍‌ସଲ୍ ବାଡିରୁ ସୃଷ୍ଟି ହୋଇଥିବା ଏହା ବହୁ ଶ୍ରୁତିମଧୁର ସ୍ଲୋଗାନମାନ ଦେଇ ବହୁ ଯୁବକ ଯୁବତୀଙ୍କୁ ଆକୃଷ୍ଟ କରିପାରିଲା ଏବଂ ବନ୍ୟା ବିତ୍ପାତ ଭଳି ଭାରତର ବହୁରାଜ୍ୟରେ ନିଜର କାୟା ବିସ୍ତାର କଲା । 'ମାଓବାଦୀ' ପଥଭ୍ରଷ୍ଟ ବାମପନ୍ଥୀମାନଙ୍କର ଚାଇନାରୁ ଏକ ବୌଦ୍ଧିକ ଆମଦାନୀ ।

ଅଶିକ୍ଷା, ସାମାଜିକ ନ୍ୟାୟରେ ବୈଷମ୍ୟ ଏବଂ ଦାରିଦ୍ର୍ୟର ଭିତ୍ତିଭୂମି ଉପରେ ଏହି ଆନ୍ଦୋଳନ ପର୍ଯ୍ୟବେସିତ ହୋଇଥିଲେ ହେଁ କାଳକ୍ରମେ ଏହାର କର୍ଣ୍ଣଧାରମାନେ ନୀତି ଓ ଆଦର୍ଶରୁ ବିଚ୍ୟୁତ ହୋଇଥିବାର ନଜିର କମ୍ ନୁହେଁ । ତା'ଛଡା ସହମତିରେ ହେଉ କିମ୍ବା ବଳାତ୍କାରରେ ହେଉ ନକ୍ସଲମାନଙ୍କ ସହିତ ଯୋଗ ଦେଉଥିବା ନାରୀକର୍ମୀମାନଙ୍କୁ ଯୌନ ନିର୍ଯ୍ୟାତନା ଦିଆଯାଉଥିବାର ମଧ୍ୟ ଜଣାଯାଏ । କାଳକ୍ରମେ ବହୁସ୍ଥାନରେ ଏହି ଆନ୍ଦୋଳନ ସୁବିଧାରେ ବିପୁଳ ଅର୍ଥାଗମର ବାଟ ଆପଣେଇ ନେଲା । ଧରାପଡ଼ିଥିବା ଆନ୍ନା ରେଡିର ଲକ୍ଷ ଲକ୍ଷ ଟଙ୍କାର ବ୍ୟାଙ୍କ ବାଲାନସ୍ ଏବଂ ତାର ପ୍ରେମିକା ନାଚିକା ଜାମୁଡା ଉପାଖ୍ୟାନ ଆମ ଓଡ଼ିଶାରେ ସମସ୍ତେ ଜାଣନ୍ତି । ପୁଣି ସଦ୍ୟ ପ୍ରକାଶିତ ସମ୍ବାଦରେ ମାଓବାଦୀ ନେତା ସୁନୀଲ ଓରଫ୍ ସବ୍ୟସାଚୀ ପଣ୍ଡାଙ୍କ ବିପୁଳ ସମ୍ପତ୍ତି ଆହରଣ ସେହି ଧାରଣାକୁ ପୁଷ୍ଟ କରିବାକୁ ଯଥେଷ୍ଟ ଖୋରାକ ଯୋଗାଇଛି ।

ହାଇଦର, ସୁଲେମାନ, ଅନୀଲ ଛୋଟରାଜନ୍ ଇତ୍ୟାଦି ଗ୍ୟାଙ୍ଗଷ୍ଟାରମାନେ ବଡ ବଡ ଶିଳ୍ପପତି, କଣ୍ଟ୍ରାକ୍ଟର, ସ୍ଥାନୀୟ ସରକାରୀ କର୍ମଚାରୀମାନଙ୍କୁ ହତ୍ୟା ଧମକ ଦେଇ, ବେଳେବେଳେ ହତ୍ୟା କରି ଦାଦାବଟି ଆଦାୟ କଲାଭଳି ମାଓବାଦୀମାନେ

ମଧ୍ୟ ସେହି ଏକା ବାଟରେ ବିପୁଳ ସମ୍ପତ୍ତି ହାସଲ କଲେ । ତେଣୁ ମଧ୍ୟଯୁଗର ବର୍ଗୀ ପିଣ୍ଡାରୀମାନଙ୍କର ଏକ ଆଧୁନିକ ସଂସ୍କରଣ ରୂପେ କାଳକ୍ରମେ ସେମାନଙ୍କୁ ଜନସାଧାରଣ ଘୃଣା ଦୃଷ୍ଟିରେ ବିଚାର କଲେଣି । ଜନତାର ସହଯୋଗ ନଥାଇ କୌଣସି ଆନ୍ଦୋଳନ କେବେହେଲେ ଉଧେଇ ପାରେନାହିଁ ।

ଫୁଲବାଣୀରେ ସ୍ୱାମୀ ଲକ୍ଷ୍ମଣାନନ୍ଦ ଏବଂ ତାଙ୍କର ସହକର୍ମୀମାନଙ୍କୁ ହତ୍ୟା ପରେ ମାଓବାଦୀମାନେ ଯେତେବେଳେ ସେ ଦାୟିତ୍ୱ ନିଜ ମୁଣ୍ଡକୁ ନେଲେ ସେତେବେଳେ ମାଓବାଦ ଉପରେ ସନ୍ଦେହ ସୃଷ୍ଟି ହେବାକୁ ଲାଗିଲା । ମାତ୍ର କାଳକ୍ରମେ ପୁରୀର ଶଙ୍କରାଚାର୍ଯ୍ୟ ଓ ଆଉ କେତେକ ଧର୍ମାଚାର୍ଯ୍ୟଙ୍କୁ ହତ୍ୟା ଧମକ ପତ୍ର ମିଳିଲାପରେ ପରିଷ୍କାର ହୋଇଗଲା ଯେ ଏହା ମାଓବାଦୀଙ୍କ ଗୋଟିଏ ଭଡାଟିଆ ଗୋଷ୍ଠୀର କାମ । ଫୁଲବାଣୀର ପାଣ ଖ୍ରୀଷ୍ଟିଆନ୍‌ମାନେ ଯୋଗଦେଇଥିଲେ ମଧ୍ୟ ସେମାନଙ୍କର ଖ୍ରୀଷ୍ଟିଆନ୍ ପ୍ରେମ ଏବଂ ହିନ୍ଦୁ ବିଦ୍ୱେଷର ଅନ୍ତ ଘଟିନାହିଁ । ତା'ଛଡା କେତେକ ଧୂର୍ତ୍ତ ରାଜନେତା ଏବଂ ଚର୍ଚ୍ଚର ବିପୁଳ ଅର୍ଥ ମଧ୍ୟ ମାଓବାଦୀମାନଙ୍କୁ ପଥଭ୍ରଷ୍ଟ କରାଇଥିବାର ଜଣାଯାଏ ।

ଚର୍ଚ୍ଚମାନଙ୍କ ପାଇଁ ବିଦେଶରୁ ଆସୁଥିବା ଅର୍ଥର ଏକ ମୋଟା ଅଙ୍କ ମାଓବାଦୀମାନଙ୍କ ହାତକୁ ସହଜରେ ଚାଲିଯାଇ ସେହି ପାଣ-ଖ୍ରୀଷ୍ଟିଆନମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ଧର୍ମ-ବିଦ୍ୱେଷ ସୃଷ୍ଟି କରାଯାଇଛି । ମାଓବାଦୀ ଚର୍ଚ୍ଚ ପାଖରେ ବନ୍ଧା ପଡ଼ିଯାଇଥିବାର ପ୍ରଚାର ମିଥ୍ୟା ନୁହେଁ ବୋଲି ତାର ପ୍ରମାଣ ଏବେ ମିଳିଗଲା ।

ଫଳତଃ ତାର ପ୍ରତି ଜବାବରେ ମାଓବାଦରେ ବିଭାଜନ ଘଟି ଗତ ୩ ତାରିଖରେ ଏମ-୨ ନାମ ଏକ ଦଳ ଜନ୍ମଲାଭ କଲା । ଯଦି ସେମାନଙ୍କ ଦ୍ୱାରା ଉଗ୍ର ଖ୍ରୀଷ୍ଟିଆନ୍ ନେତା ତଥା ଚକ୍ରାନ୍ତକାରୀ ଫାଦରମାନଙ୍କର ହତ୍ୟାକାଣ୍ଡ ସଂଘଟିତ ହୁଏ, ତେବେ ମାଓବାଦୀଙ୍କ ଭିତରେ ଗ୍ୟାଙ୍ଗୱାର ଆରମ୍ଭ ହୋଇଯିବ ଏବଂ ଏହି ଧର୍ମ ବିଦ୍ୱେଷ ପୁଣି ଓଡ଼ିଶା ସାରା ବ୍ୟାପିଯିବ । ଏଥିପାଇଁ ପ୍ରଶାସନ ମଧ୍ୟ କମ୍ ଦାୟୀ ନୁହେଁ । ପୂର୍ବରୁ ବହୁବାର ଲକ୍ଷ୍ମଣାନନ୍ଦଙ୍କ ଉପରେ ଆକ୍ରମଣ ହୋଇଥିଲେ ମଧ୍ୟ ସେଥିପ୍ରତି ପ୍ରଶାସନ ଆଦୌ ଗୁରୁତ୍ୱ ଦେଲାନାହିଁ ।

ବର୍ତ୍ତମାନ ଧର୍ମାନ୍ତରୀକରଣକୁ କଠୋର ହସ୍ତରେ ବନ୍ଦ କରିବା ସଙ୍ଗେ ସଙ୍ଗେ ବିଦେଶରୁ ଆସୁଥିବା ଅର୍ଥର ବିନିଯୋଗ ଉପରେ ତଦନ୍ତ କରାଯାଉ । ଧର୍ମୀୟ ସଂପ୍ରୀତି ନଷ୍ଟ ନହେବାକୁ ପ୍ରଶାସନ ବଦ୍ଧ ପରିକର ରହୁ ଏବଂ ସ୍ୱାମୀ ଲକ୍ଷ୍ମଣାନନ୍ଦଙ୍କ ହତ୍ୟା ଷଡଯନ୍ତ୍ରର ପଛରେ ଥିବା ଖଳନାୟକମାନଙ୍କୁ ଆରେଷ୍ଟ କରି ଲୋକଙ୍କର ବିଶ୍ୱାସଭାଜନ ହେଉ । ନଚେତ୍ ଏମ-୨ର ପ୍ରାଧାନ୍ୟକୁ ବୋଧହୁଏ ଅନ୍ୟ କୌଣସି ବାଟରେ ରୋକି ହେବ ନାହିଁ । ଶାନ୍ତ ଫୁଲବାଣୀରେ ଶାନ୍ତ ପରିବେଶକୁ ପାଣ ଓ ପାଣ ଖ୍ରୀଷ୍ଟିଆନମାନଙ୍କ ଦ୍ୱାରା ନଷ୍ଟ ହେବାକୁ ଦିଆନଯାଉ ।

–ସାହାଣମେଳା – ୧୨.୨.୨୦୦୫

# ଦିଲ୍ ପାକିସ୍ତାନୀ

ହିନ୍ଦି ସିନେମାରେ ଗୋଟିଏ ଲୋକପ୍ରିୟ ସଙ୍ଗୀତ ଅଛି - ''ମେରା ଜୁତା ହେ ଜାପାନୀ... ଦିଲ୍ ହିନ୍ଦୁସ୍ତାନୀ'' । ମାତ୍ର ଭାରତର ସଂଖ୍ୟାଲଘୁ ବିଭାଗମନ୍ତ୍ରୀ ଅବଦୁଲ୍ ରହେମନ୍ ଆନ୍ତୁଲେଙ୍କ ବିବୃତ୍ତି ଦେଖିଲେ ଜଣାପଡେ, ତାଙ୍କର ଦିଲ୍ ପାକିସ୍ତାନୀ ।

ଗତ ୨୬.୧୧ରେ ପାକିସ୍ତାନ ପ୍ରାୟୋଜିତ ସନ୍ତ୍ରାସବାଦୀମାନେ ଜଳପଥରେ ଆସି ମୁମ୍ବାଇ ସହରରେ ସନ୍ତ୍ରାସବାଦର ଯେଉଁ ବୀଭତ୍ସ ଧ୍ୱଂସ ଲୀଳା ସୃଷ୍ଟି କଲେ; ସେଥିରେ କେବଳ ଭାରତ କାହିଁକି ସମଗ୍ର ବିଶ୍ୱ ସ୍ତବ୍ଧ ହୋଇଗଲା । କେତେକ ବିଦେଶୀ ନାଗରିକଙ୍କ ସମେତ ପ୍ରାୟ ୨୦୦ ଲୋକ ମୃତ୍ୟୁ ବରଣ କଲେ ଓ ୩୦୦ ଲୋକ କ୍ଷତବିକ୍ଷତ ହେଲେ । କୋଟି କୋଟି ଟଙ୍କାର ସମ୍ପତ୍ତି ନଷ୍ଟ ହେଲା ।

ଭାରତ, ଆମେରିକା ତଥା ବ୍ରିଟେନ୍‌ର ଅନୁସନ୍ଧାନକାରୀ ସଂସ୍ଥାମାନେ ଧରା ପଡ଼ିଥିବା ଆତଙ୍କବାଦୀ କାସବକୁ ଜେରା କରି ସେଥିରେ ପାକିସ୍ତାନ ସେନା ଓ ଆଇଏସଆଇର ସଂପୃକ୍ତିର ପ୍ରମାଣ ଥିବାର ପ୍ରକାଶ କଲେ । ଏପରିକି ପାକିସ୍ତାନର ପୂର୍ବତନ ପ୍ରଧାନମନ୍ତ୍ରୀ ନୱାଜ ସରିଫ୍ କାସବ୍‌ର ଗାଁକୁ ଯାଇ ତା ବାପା ମା'ଙ୍କୁ ସେନାବାହିନୀ ଘେରି ରହିଥିବାର ଘୋଷଣା କଲେ । ତା' ସତ୍ତ୍ୱେ ପାକିସ୍ତାନର ଛଦ୍ମବେଶୀ ଗଣତାନ୍ତ୍ରିକ ସରକାର ସତ୍ୟକୁ ସ୍ୱୀକାର କରୁନାହିଁ । କାରଣ ପାକିସ୍ତାନର ଅସଲ ଶାସନ ଡୋରି ଏବେବି ସୈନ୍ୟ ବାହିନୀ ହାତରେ । ପାକିସ୍ତାନର ଜାତୀୟ ଚରିତ୍ର ହେଲା ଭାରତ ଓ ଭାରତୀୟଙ୍କ ବିରୁଦ୍ଧରେ ସଂହାରଲୀଳା ଚଳାଇ ରଖିବା ତଥା ବିଭିନ୍ନ ନାମରେ ଆତଙ୍କବାଦୀ ସୃଷ୍ଟି କରିବା ।

ପାକିସ୍ତାନର ଟେଲିଭିଜନ୍ ଘୋଷଣା କରିଚାଲିଲା ବମ୍ବେର ଧ୍ୱଂସଲୀଳା ପାକିସ୍ତାନକୁ ବଦନାମ କରିବାକୁ ଭାରତୀୟ ସୈନ୍ୟବାହିନୀ ଦ୍ୱାରା ସୃଷ୍ଟି କରାଯାଇଛି । ମାଲେଗାଓଁ ବିସ୍ଫୋରଣର ତଦନ୍ତ ଦାୟିତ୍ୱରେ ଥିବା ହେମନ୍ତ କାରକାରେଙ୍କୁ ହତ୍ୟା କରି ସମସ୍ତ ତଦନ୍ତ କାଗଜପତ୍ର ଧ୍ୱଂସ କରିଦେବାକୁ ଷଡ଼ଯନ୍ତ୍ର ରଚନା କରାଯାଇଛି । ଠିକ୍

ସେତିକିବେଳେ ଭାରତର ଜଣେ ମନ୍ତ୍ରୀ ଆନ୍ତୁଲେ ସେହି କଥାକୁ ଦୋହରାଇଛନ୍ତି । ଆନ୍ତୁଲେ କହିଲେ- ହେମନ୍ତ କାର୍‌କାରେ ସନ୍ତ୍ରାସବାଦୀଙ୍କ ଗୁଳିରେ ମରିନାହାନ୍ତି । ତାଙ୍କର ମୃତ୍ୟୁ ମାଲେଗାଓଁ ବିସ୍ଫୋରଣ ସହିତ ସଂଯୁକ୍ତ ।  ସେ ଟାର୍ଗେଟ୍‌ରେ ଥିଲେ । ତାଙ୍କ ମୃତ୍ୟୁ ବିଷୟରେ ତଦନ୍ତ କରାଯିବ । ମାଲଗାଓଁ ସମ୍ପର୍କିତ ହିନ୍ଦୁ ସନ୍ତ୍ରାସବାଦୀଙ୍କୁ ଲକ୍ଷ୍ୟ କରି ସେ ବିବୃତ୍ତି ଦେଲେ ।

ଏହାଦ୍ୱାରା ପାକିସ୍ତାନର ଉକ୍ତିକୁ ସେ ସମର୍ଥନ କରିଥିବାର ପାର୍ଲାମେଣ୍ଟର ଉଭୟ ଗୃହରେ ଘୋର ପ୍ରତିବାଦର ଝଡ ଉଠିଲା । କଂଗେସ ଦଳ ଖୁବ୍ ଅପଦସ୍ତ ହେଲେ । ତଥାପି ଆନ୍ତୁଲେଙ୍କୁ ସମର୍ଥନ କରିବାକୁ କଂଗ୍ରେସ୍‌ରେ କେତେକ ବିଲୁଆ ନେତା ରଡ଼ି କଲେ । ଆନ୍ତୁଲେ ଇସ୍ତଫା ଦେଲେ । ଗୃହମନ୍ତ୍ରୀ ବିବୃତି ଦେଲେ ଆନ୍ତୁଲେଙ୍କ ବିବୃତିରେ ସତ୍ୟତା ନାହିଁ । ମାତ୍ର ସନ୍ତ୍ରାସବାଦୀ ପ୍ରେମୀ କଂଗ୍ରେସ ସରକାର ତାଙ୍କ ଇସ୍ତଫା ଗ୍ରହଣ କଲେ ନାହିଁ । ଏହାଦ୍ୱାରା ଜଣାପଡ଼ିଲା ଯେ ଭାରତର ମନ୍ତ୍ରୀମଣ୍ଡଳରେ ସଦସ୍ୟ ଅଛନ୍ତି ଯାହାଙ୍କର ଦିଲ୍ ପାକିସ୍ତାନୀ । ସୀମା ସେପଟେ ବିରାଦରଙ୍କ ପ୍ରେମରେ ସେ ଭାରତର ଅନିଷ୍ଟ ଚିନ୍ତା ମଧ କରିପାରନ୍ତି ।

ଅତ୍ୟନ୍ତ ପରିତାପର ବିଷୟ ତାଙ୍କ ଭଳି ''ଦିଲ୍ ପାକିସ୍ତାନୀ'' ବ୍ୟକ୍ତିଙ୍କର ଭାରତରେ ଅଭାବ ନାହିଁ ।

ଏହି ପରିପ୍ରେକ୍ଷୀରେ ୨୩.୧୨.୨୦୦୮ ତାରିଖ 'ସମ୍ବାଦ'ର ସଂପାଦକୀୟ ଦ୍ରଷ୍ଟବ୍ୟ । ସତ୍ୟ ହେଉ କିମ୍ବା ଲଘୁ ପରିହାସ ହେଉ 'ସମ୍ବାଦ' ଲେଖିଛନ୍ତି – ପାକିସ୍ତାନର ପ୍ରେସିଡେଣ୍ଟ ଭାରତର ପ୍ରଧାନମନ୍ତ୍ରୀଙ୍କୁ ଫୋନ କରି କହିଲେ – ଆମ ନଓ୍ୱାଜ୍ ସରିଫଙ୍କୁ ଆପଣ ନିଅନ୍ତୁ, ଆନ୍ତୁଲେଙ୍କୁ ଆପଣ ଦିଅନ୍ତୁ । ଅର୍ଥାତ୍ ସରିଫ୍ ସତକଥା କହିବାରୁ ପାକିସ୍ତାନରେ ତାଙ୍କର ସ୍ଥାନ ନାହିଁ ଅଥଚ ହିନ୍ଦୁ ଓ ହିନ୍ଦୁସ୍ଥାନ ବିରୁଦ୍ଧରେ କହୁଥିବାରୁ ଆନ୍ତୁଲେଙ୍କୁ ତାଙ୍କ ଦେଶ ସ୍ୱାଗତ କରିବାକୁ ପ୍ରସ୍ତୁତ ।

ଇଏ ହେଲା ପାକିସ୍ତାନ ଦୃଷ୍ଟିରେ ଆନ୍ତୁଲେଙ୍କ ଅସଲ ସ୍ୱରୂପ । ତଥାପି କଂଗ୍ରେସ ସଂଖ୍ୟାଲଘୁ ଭୋଟ୍ କମିଯିବାର ଆଶଙ୍କାରେ ତାଙ୍କ ଇସ୍ତଫା ଗ୍ରହଣ କଲା ନାହିଁ ।

ବାଃ ଆନ୍ତୁଲେ ବାଃ । ତୁମ ଭଳି ଭାରତୀୟ ଭାରତରେ ବହୁ ସଂଖ୍ୟାରେ ଥିଲେ ଆଉ ବୈଦେଶିକ ଆକ୍ରମଣର ଆବଶ୍ୟକତା କ'ଣ ?

ସାହାଣମେଳା – ୮.୧.୨୦୦୯

# ହରଡ଼ଘଣା

ହରଡ କେବେ ଘଣାରେ ପେଷାଯାଏ ନାହିଁ । କାହିଁକିନା ଘଣା ଶବ୍ଦଟିତେଲି ଓ ତେଲ ସହତ ଓତପ୍ରୋତଃ ଭାବେ ଜଡ଼ିତ । ଘଣାରେ ଆମ ଜାଣିବାରେ ରାଶି, ସୋରିଷ, ପେଶି ଓ ନଡ଼ିଆକୁ ପେଡି ତେଲ ବାହାର କରାଯାଏ । ମାତ୍ର ହରଡ ଗୋଟାଏ ତୈଳବୀଜ ଜାତୀୟ ପଦାର୍ଥ ନହୋଇଥିବା ଦୃଷ୍ଟେ ତା'ପାଇଁ ଘଣା ସର୍ବାଦୌ ନିଷ୍ପ୍ରୟୋଜନ । ତା' ସତ୍ତ୍ୱେ ଆମ ଭଷାରେ ଏଭଳି ଗୋଟାଏ ଅଖାଡୁଆ ଶବ୍ଦ ସୃଷ୍ଟି ହେଲା କେମିତି ? କିଏ ତା'ର ସୃଷ୍ଟିକର୍ତ୍ତା ଆମେ ଜାଣି ନଥାଇ । ତଥାପି ଆମେ ସମସ୍ତେ ସେ ଶବ୍ଦକୁ ବ୍ୟବହାର କରୁଛେ । ଯେପରି 'ପୁଅ ଏଥର ହରଡ଼ଘଣାରେ ପଡ଼ିଛି' । 'ସରକାର ହରଡ ଘଣାରେ ଇତ୍ୟାଦି' । ଏହାର ଆକ୍ଷରିକ ଅର୍ଥ ଏମନ୍ତ ବେଟପିଆ ହେଲେ ହେଁ ମୁସ୍କିଲ୍‌ରେ ପଡ଼ିବା କିମ୍ବା ଫସିଯିବା ଅର୍ଥରେ ଏହି ଶବ୍ଦଟିର ପ୍ରୟୋଗ କରାଯାଇଥାଏ ବୋଲି ଆମର ଦୃଢ଼ ମତ ।

ତେବେ ହରଡଘଣାର ସ୍ୱରୂପଟା ଦେଖନ୍ତୁ । ସୁଦୂର ମାଲକାନ୍‌ଗିରିର ଗାଁ'ମାନଙ୍କରେ ମୁଖ୍ୟତଃ ଆଦିବାସୀମାନେ ବାସ କରନ୍ତି । ସମ୍ବଲପୁର କିମ୍ବା ଦେବଗଡ଼ ଜିଲ୍ଲାର ସୁଦୂର ଗାଁ ଗହଳିରେ ବାସ କରୁଥିବା ସରଳ, ନିରୀହ ଆଦିବାସୀମାନେ ଏବେ ହରଡଘଣାରେ ପଡ଼ିଛନ୍ତି । ମାଓବାଦୀମାନେ ଅସ୍ତ୍ରଶସ୍ତ୍ର ଧରି ଆଦିବାସୀ ଅଧ୍ୟୁଷିତ ଗାଁମାନଙ୍କରେ ପହଞ୍ଚି ଖାଇବାକୁ ମାଗିଲେ । ପ୍ରାଣ ଭୟରେ ଯାହାଘରେ ଯାହା ଥିଲା ଲୋକେ ଖାଇବାକୁ ଦେଲେ । ତା'ପରେ ସେମାନଙ୍କ ଘରେ ଜୋର ଜବରଦସ୍ତ ରହିଲେ । ଦିନେ ଦୁଇଦିନ ରହି 'ମାଓ-ତତ୍ତ୍ୱ' ପ୍ରଚାର କଲେ ।

ଆମ ଭାରତରେ କମ୍ୟୁନିଷ୍ଟଆଙ୍କ ଦୂରଦୃଷ୍ଟିକୁ ଧନ୍ୟବାଦ ଦେବା କଥା । କାରଣ ଚାଇନାରେ ବର୍ଷା ହେଲେ ଏମାନେ ଭାରତରେ ଛତା ଖୋଲି ଧରନ୍ତି । ଭାରତରେ ସବୁ ତତ୍ତ୍ୱ ଥାଉଥାଉ ସେଗୁଡାକୁ ପୁରୁଣାକାଳିଆ କହି ମାଓ-ସେ ତୁଙ୍ଗଙ୍କ ହତ୍ୟା-ତତ୍ତ୍ୱର ପୃଷ୍ଟପୋଷକତା କରନ୍ତି । ତେବେ ପୋଲିସ ସେମାନଙ୍କର ତଲାସୀ ନେବାବେଳେ ଖବର ପାଇଲା କି ଅମୁକ ଗାଁରେ ମାଓବାଦୀମାନେ ଖାଇପିଇ ରହି ନିଜର ଧର୍ମ ପ୍ରଚାର କରିଥିଲେ ଦୁଇଦିନକାଳ ।

ମାଓବାଦୀମାନଙ୍କୁ ଖାଦ୍ୟ ଓ ଆଶ୍ରୟ ଦେଇଥିବା ଅପରାଧରେ ପୋଲିସ୍ ଗାଁସାରା ଲୋକଙ୍କୁ ଜେରା କରି କେତେକଙ୍କୁ ଥାନାକୁ ଭିଡ଼ିନେଲା । ସେଠାରେ କବଲା କବଲି କରି ହେଉ କିମ୍ବା ଥାର୍ଡ ଡିଗ୍ରୀ ପ୍ରୟୋଗ କରି ହେଉ କିଛି ତଥ୍ୟ ସଂଗ୍ରହ କଲାପରେ ସେମାନଙ୍କୁ ଛାଡ଼ିଦେଲା । କିମ୍ବା ଦୁଇ ଚାରି ଜଣଙ୍କୁ ମାଓବାଦୀଙ୍କ ସାହାଯ୍ୟକାରୀ ବୋଲି କୋର୍ଟକୁ ଚାଲାଣ କଲା ।

ପୋଲିସ୍ କବଳରୁ ରକ୍ଷା ପାଇ ଲୋକେ ଗାଁକୁ ଫେରିବା ପରେ ମାଓବାଦୀମାନେ ଆସି ପୋଲିସ୍‌ର ଇନଫର୍ମର ସନ୍ଦେହ କରି ଗୁଳିକରି କେତେଜଣଙ୍କୁ ହତ୍ୟା କଲେ । ଗୋଟାଏ ପାଖରେ ମାଓବାଦୀଙ୍କ ଅତ୍ୟାଚାର ତ ଅନ୍ୟ ପାଖରେ ପୋଲିସ୍‌ର ରାଜଦଣ୍ଡ । ପାଣିରେ କୁମ୍ଭୀର ଓ କୂଳରେ ବାଘ । ବିଚରା ଜନ୍ତୁଟିର ଅବସ୍ଥା ଯାହା- ଏହି ମୁଲକମାନଙ୍କରେ ରହୁଥିବା ଲୋକମାନଙ୍କର ଅବସ୍ଥା ଠିକ୍ ସେଇଆ । ଏହାକୁ କହନ୍ତି ହରଡଘଣା, ପେଷି ହୋଇ ଗୁଣ୍ଡ ହୋଇଯିବ ପଛେ ତେଲ ଟୋପାଏ ବାହାରିବ ନାହିଁ । ଅଥଚ...

ମନ୍ତ୍ରୀ ଡାକି ପଠାଇ ଆଦେଶ ଦେଲେ- ଏ କାମଟା ଏମିତି କର । ବିଚରା ତଳିଆ କର୍ମଚାରୀଟିର ଯୁ' ନାହିଁ ନା କରିବାକୁ । ମାତ୍ର ସବୁକାମ ତଳିଆ କର୍ମଚାରୀଙ୍କ ଦସ୍ତଖତରେ ହେଲା । ମଲେଇ ଖାଇଲେ ମନ୍ତ୍ରୀ । କାଳକ୍ରମେ ଘଟଣାଟି ଲିକ୍ ହୋଇଯିବାରୁ ବିରୋଧୀ ଦଳିଆ ମାତିଲେ । କଥାକୁ ଗଣ୍ଠି କଲେ । ଅଗତ୍ୟା ନିରପେକ୍ଷ ତଦନ୍ତ ପାଇଁ ସରକାର ବସାଇଲେ ତଦନ୍ତ କମିଶନ । ସେଠାରେ ମଲା ବିଚରା ତଳିଆ କର୍ମଚାରୀଟି ଯେ କି ବିନା ସ୍ୱାର୍ଥରେ ମନ୍ତ୍ରୀଙ୍କ ହୁକୁମ୍‌ରେ କାର୍ଯ୍ୟ କରିଥିଲା । ମନ୍ତ୍ରୀ ଖସିଗଲେ । ବିଚରା କର୍ମଚାରିଟି ଫସିଗଲା ହରଡଘଣାରେ ।

ବିଧାୟକ ତାଙ୍କ ଏରିଆରେ ପୋଷ୍ଟିଂ ହୋଇଥିବା ଇଞ୍ଜିନିୟରଙ୍କୁ ବାଧ କଲେ - ଫଲସ୍ ବିଲ୍ କରି ମତେ ଦଶଲକ୍ଷ ଟଙ୍କା ଦିଅ । ମୋର ଦରକାର ଅଛି । ନା- କହିଲେ ସଙ୍ଗେ ସଙ୍ଗେ ବଦଳି ପାଇଁ ସୁପାରିଶ କରିଦେବେ । ହଁ କଲେ ଦୀପ ତେଜିଲେ ହାତ ବି ତେଲିଆ । ମିଛରେ ମିଛରେ ରାସ୍ତା ନ ଥାଇ ରାସ୍ତା ତିଆରି ହେଲା । ପୋଖରୀ ଖୋଳା ହେଲା । ଟଙ୍କା ମୁଖ୍ୟତଃ ଗଲା ବିଧାୟକ ବାପୁଡ଼ା ହାତକୁ । ଦୁର୍ନୀତି ପ୍ରବୀଣ, ପ୍ରବଳ ପରାକ୍ରମୀ ସର୍ବଗିଳା ବିଧାୟକମାନେ ପ୍ରାୟ ଅଧିକାଂଶ ବିଭାଗର ଅଧିକାରୀମାନଙ୍କୁ ଧମକ ଦେଇ କାର୍ଯ୍ୟ, ଅ-କାର୍ଯ୍ୟ କରାଇଥାନ୍ତି । ମାତ୍ର ପରେ ଖୋଳତାଡ ହେଲେ ମଲା ବିଚରା କର୍ମଚାରୀଟି । ବିଧାୟକଟି ଧୂଆମୂଳା ସର୍ବବ୍ୟାଧିହର ଭୋଟ ରାଜନୀତିରେ

ଟଙ୍କା ଫୋପାଡି ପୁଣି ଜିତିଲେ । ମନ୍ତ୍ରୀ ହେଲେ । ଆହୁରି ଲୁଟିଲେ । କର୍ମଚାରୀଟି ପଡ଼ିଲା ହରଡଘଣାରେ । ଶିକ୍ଷାମନ୍ତ୍ରୀ ବୋର୍ଡ କର୍ତ୍ତୃପକ୍ଷଙ୍କୁ ଡାକି ପଠାଇ କହିଲେ-ମୋ' ପୁଅ ମାଟ୍ରିକ୍ ପରୀକ୍ଷା ଦେଇଛି, ଟିକିଏ ଦେଖିବ । ଡେଲିଆମାନଙ୍କ ଭିତରେ ଲାଗିଗଲା କମ୍ପିଟିସନ୍ । ମନ୍ତ୍ରୀଙ୍କ ପୁଅର ମାର୍କ ବଢ଼ାଇବାକୁ ବେଷ୍ଟ ଟେନ୍‌ରେ ପାଶ କରାଇବା ଯାଏ । ତେଣେ ପୁଅ କହିଲା - ବାପା ! ମୁଁ ମୋଟ୍ ଅଶି ନମ୍ବର ଉତ୍ତର ଦେଇଛି । ମୋର ସେ ବିଷୟରେ ବୟାଅଶି ନମ୍ବର ରହିଲା କେମିତି ?

ମନ୍ତ୍ରୀଙ୍କ ବୁଦ୍ଧିର ଭଣ୍ଡାର ଖୋଲିଗଲା । କହିଲେ – ପୁଅରେ ! ଖୋସାମତିଆମାନେ ଏତେଦୂର ଆଗେଇଯିବେ ବୋଲି ମୋର ବିଶ୍ୱାସ ନଥିଲା । ଇଏ ତ ତତେ ଓ ମତେ ଫସେଇଦେଲେ । ତୁ ରି-ଆଡିସନ୍ ପାଇଁ ଦରଖାସ୍ତ କର । ହେଲେ କଥାଟି କୌଣସି ସୂତ୍ରରୁ ପ୍ରଘଟ ହୋଇଗଲା । କର୍ମଚାରୀ ପଡିଲେ ହରଡଘଣାରେ । କାରଣ ତାଙ୍କ ଦସ୍ତଖତରେ ଆଦେଶନାମା ଜାରି ହୋଇଛି । ମନ୍ତ୍ରୀ ସମ୍ବାଦପତ୍ରରେ ବିବୃତ୍ତି ଦେଲେ ମାର୍କିଂରେ ସନ୍ଦେହ ପ୍ରକାଶ କରି ମୋ' ପୁଅ ରିଆଡିସନ୍ ପାଇଁ ଦରଖାସ୍ତ କରିଛି । ସେଥିରେ ସେ ତ ଉଚ୍ଚମାନର ନୈତିକତା ପ୍ରଦର୍ଶନ କରିଛି । ସେଥିରେ ଆଉ ଅସଂଗତି କେଉଁଠି ରହିଲା ? ସେ ବିଷୟରେ ଅନୁସନ୍ଧାନ କରି ରିପୋର୍ଟ ଦେବାକୁ ଆଦେଶ ଦିଆଯାଇଛି । ଦୋଷୀ ଯେ ହେଉନା କାହିଁକି କଠୋର ଦଣ୍ଡବିଧାନ କରାଯିବ ।

ଜନତା କହିଲେ- ମନ୍ତ୍ରୀ ପୁଅ ଭବିଷ୍ୟତରେ ମନ୍ତ୍ରୀ ହେବାର ଲକ୍ଷଣଗୁଡାକ ଏବେଠୁ ଜଣାପଡ଼ିଲାଣି ।

ଘର କରି ମତାନ୍ତର କାହାଘରେ ନାହିଁ ? ନୟନାଦେବୀଙ୍କ ସେମିତି ବେଶୀଗୁଡାଏ ସଂପୃକ୍ତିକୁ ନେଇ ବୋହୂ ପ୍ରତିବାଦ କଲା । ଆଗକାଳର କଥା ଅଲଗା । ଶହେବର୍ଷ ଆଗରୁ ଗୌରୀ ବୟସରେ ପିତାମାତା କନ୍ୟାଦାନ କରି ଧର୍ମ ଅର୍ଜନ କରୁଥିଲେ । ତା'ପରେ ଆସିଲା ଆଉ ଗୋଟିଏ ଯୁଗ ଯେତେବେଳେ କି ଝିଅମାନେ ଷୋହଳରୁ ଅଠରବର୍ଷ ବୟସରେ ବାହାହୋଇ ବୋହୂପଣିଆ କରୁଥିଲେ । ସେମାନଙ୍କର ମନରେ ଶାଶୂଘର ଲୋକଙ୍କ ପ୍ରତି ଭୟ ଓ ଭକ୍ତି ରହୁଥିଲା । ପିଲାବେଳରୁ ଆସୁଥିବାରୁ ପୋଷାମାନୁଥିଲେ ।

ଆଜିକାଲି ତିରିଶି ବର୍ଷ ଯାଏ ଅଧାବୟସ ବାପଘରେ ସାରି ପ୍ରେମରାଜ୍ୟରେ ଥରେ ଅଧେ କିମ୍ବା ବହୁବାର ଧୋକା ଖାଇ, ଧକ୍କା ଖାଇ ସବୁ ପ୍ରକାର ଅଭିଜ୍ଞତା ହାସଲ କରି ଶାଶୂଘରକୁ ଯାଉଛନ୍ତି । ବୁଢ଼ୀ ଶୁଆ ପୋଷା ନମାନିଲା ପରି ଏମାନେ ଆଉ ପୋଷା ମାନୁନାହାନ୍ତି । ତହିଁକି ପୁଣି ସରକାର ସେମାନଙ୍କ ହାତରେ ନୂଆ ନୂଆ

ଦିବ୍ୟାସ୍ତ୍ରମାନ ଧରାଇ ସେମାନଙ୍କୁ ଶାଶୂ-ଶ୍ୱଶୁର ସଂହାରିଣୀ ବେଶରେ ସଜାଇ ଦେଲେଣି । ସେ କଥା ଆଉ ବୃଦ୍ଧା ନୟନାଦେବୀଙ୍କୁ ସେତେଟା ଜଣାନାହିଁ । ତେବେ ଶାଶୂ ହିସାବରେ ପୁଅ ନଥିବାବେଳେ ବୋହୂକୁ ଅଣ୍ଡିରା ଚଣ୍ଡିରାଙ୍କ ସହିତ ହେଁ ହେଁ ଫେଁ ଫେଁ ହେବାକୁ ବାରଣ କରନ୍ତେ- ଶନିଗ୍ରହ ଚଳନ ତାଙ୍କ କୋଷ୍ଠୀରେ ସପ୍ତମରୁ ଅଷ୍ଟମକୁ ହେଲା । ବୋହୂ ଆଉ ଶାଶୂର ଶିରୀ ଦେଖିଲା ନାହିଁ । ପୁଣି ପୁଅ କାନରେ ମିଛସତ କହି ତା'ର ଡିଫେନ୍‌ସ ଲାଇନଟାକୁ ବହୁତ ଷ୍ଟ୍ରଙ୍ଗ କରିଦେଲା ।

ନୟନାଦେବୀ ଏ ପରିସ୍ଥିତିରେ କରିବେ କ'ଣ ? ସତ କହିଲେ ମଲେ । ପୁଅର ବିଶ୍ୱାସ ହରାଇବେ । ନ କହିଲେ ବୋହୂର ଅତ୍ୟାଚାର ଦିନକୁଦିନ ବଳି ପଡୁଛି ।

ଜାଣିବା ଶୁଣିବା ଲୋକେ କହିଲେ- ବୁଢ଼ୀଟା ହରଡଘଣାରେ ପଡ଼ିଛି । ଚାରିଆଡେ ଆଲୋଚନା ହେଉଛି- ଭାରତ ସରକାର ହରଡଘଣାରେ ପଡ଼ିଛି । ଆମେରିକା ସହିତ ବନ୍ଧୁତା କରିବାକୁ ଯାଇ ଅଣୁଚୁକ୍ତିରେ ସ୍ୱାକ୍ଷର କରିଦେଲେ । ଏଥିରେ ଚାଇନା ଉତ୍‌କ୍ଷିପ୍ତ ହେଲା । ଆରେ- ଆମେରିକା ଆସି ଆମ ଘର ଦୁଆର ମୁହଁରେ ପହଞ୍ଚିଗଲାଣି । ଭାରତରେ ଆମ ଅନ୍ନରେ ପ୍ରତିପାଳିତ ଭକୁଆମାନେ କରୁଛନ୍ତି କ'ଣ ? ଟଙ୍କା ଖାଉଚ, ସବୁ ସୁବିଧା ହାସଲ କରୁଚ । ଆମ ଦେଶକୁ ମିଛିମିଛିଆ ନିମନ୍ତ୍ରଣରେ ବୁଲିବାକୁ ଆସୁଛ । ଅଥଚ କାମବେଳକୁ ନିଦା ସେଇଠୁ ସରକାରଙ୍କ ନିୟନ୍ତ୍ରଣକାରୀ ଦଳ ମାତିଲେ। 'ପାଦେ ଆଗେଇଲେ ସରକାର ଭାଙ୍ଗିଦେବୁ । ଆମ ଖାଇବା ବନ୍ଦ । ତୁମ ଲୁଟ୍‌ତରାଜ ବନ୍ଦ । ଭାବିଚିନ୍ତି କାମ କର । ଆମ ମାଲିକଙ୍କୁ କ୍ଷତି ପହଞ୍ଚାଇବା ଭଳି କାମ କଲେ ଆମେ ସରକାର ଭାଙ୍ଗିଦେବୁ ।'

ତେଣେ ସରକାରୀ ହାତୀମାନେ ବିଚାର କଲେ- ସତେତ, ସରକାର ଭାଙ୍ଗିଗଲେ ଏ ସୁଯୋଗ ସବୁ ମିଳିବ କେଉଁଠୁ ? କିଏ ଜାଣେ ଲୋକଙ୍କ ମତିଗତି କ'ଣ ? ଯଦି ଆମକୁ ହେଙ୍ଗୁ ଶୁଙ୍ଘେଇ ଦେଲେ ! ଆଗକୁ ଗଲେ ସରକାର ଭାଙ୍ଗିବା ଭୟ, ପଛକୁ ଫେରିଲେ ଆମେରିକା ପାଖରେ ପତିଆରା ନଷ୍ଟ । ଗୋଟାଏ ଦେଶର ବଦ୍‌ନାମ ! ଚୁକ୍ତି କରି ଭାଙ୍ଗିଲେ । ପ୍ରିନ୍‌ସପୁଲ୍‌କୁ ମାର ଗୋଲି । ଆଗ ଗାଦି ଥାଉ । ଦେଶ ପଛେ ନର୍କକୁ ଯାଉ । ଏହାକୁ କହନ୍ତି ହରଡଘଣା ।

ସାହାଣମେଲା - ୨୯.୫.୨୦୦୪

# କଂଗ୍ରେସ୍‌ର ରାଜନୀତି

ଭାରତରେ ରାମସେତୁ ସମ୍ପର୍କରେ କେନ୍ଦ୍ର ସରକାରଙ୍କ ସତ୍ୟପାଠକୁ ନେଇ ଦେଶବ୍ୟାପୀ ଯେଉଁ ଝଡ ସୃଷ୍ଟି ହୋଇଛି ତା'ର ପରିଣାମ ସୁଦୂର ପ୍ରସାରୀ । ବର୍ତ୍ତମାନ କେନ୍ଦ୍ରରେ ଉପା ସରକାରଙ୍କୁ ମୋଗଲ ଶାସନର ଛଦ୍ମ ଗଣତାନ୍ତ୍ରିକ ପ୍ରତିରୂପ କୁହାଯାଇପାରେ । ଏକଦା ଭାରତର ସ୍ୱାଧୀନତା ହାସଲ ପାଇଁ ସଂଗ୍ରାମ କରିଥିବା କଂଗ୍ରେସର ସତ୍ତା ଆଉ ଭାରତରେ ନାହିଁ । ଆଜି ଭାରତରେ ଯେଉଁ କଂଗ୍ରେସ ପାର୍ଟି ଅଛି – ତାହା କଂଗ୍ରେସର ଭୂତ । ଜାତି ଓ ଧର୍ମ ଭିତ୍ତିରେ ଭାରତର ବିଭାଜନ ଦିନରୁ କଂଗ୍ରେସ ହିନ୍ଦୁସ୍ଥାନର ବୃହତ୍ ଅଂଶ ହିନ୍ଦୁ ମାନଙ୍କ ପ୍ରବଣତା ଉପରେ ଧର୍ମୀୟ ଭାବନା ଉପରେ ଆଘାତ କରିଚାଲିଛି । ତେଣୁ ତା'ର ପ୍ରତିବାଦରେ ହିନ୍ଦୁ ମହାସଭା, ଶିବସେନା, ଆର.ଏସ.ଏସ ଭଳି ଜାତୀୟବାଦୀ ପନ୍ଥାର ସୃଷ୍ଟି । ଏହି ଦଳ ମାନଙ୍କ ଉପସ୍ଥିତି ପ୍ରତି ଭାରତର କଂଗ୍ରେସ ମୁସଲମାନ ଓ ଖ୍ରୀଷ୍ଟିଆନମାନେ ତଥା ସେମାନଙ୍କର ସ୍ୱାର୍ଥନ୍ୱେଷୀ ସହଯୋଗୀମାନେ ସବୁବେଳେ ଖଡଗହସ୍ତ ହେଲେହେଁ ଭବିଷ୍ୟତରେ ଭାରତର ସତ୍ତା ସେହିମାନଙ୍କ ହାତର ରହିବା ଅବଶ୍ୟମ୍ଭାବୀ । ନଚେତ୍ ହିନ୍ଦୁ ଓ ହିନ୍ଦୁସ୍ଥାନ ନିଶ୍ଚିହ୍ନ ହୋଇଯିବାର ଭୟ ଲୋକମାନଙ୍କ ମନରେ ସୃଷ୍ଟି ହେଲାଣି ।

ବର୍ତ୍ତମାନର ଶାସନର ପ୍ରକୃତ ମୁଖ୍ୟା ହେଲେ ଜଣେ ସ୍ୱଳ୍ପ ଶିକ୍ଷିତା ବିଦେଶିନୀ ଖ୍ରୀଷ୍ଟିଆନ ମହିଳା ସୋନିଆ ଗାନ୍ଧି । ତାଙ୍କର ମୁଖ୍ୟ ପରାମର୍ଶଦାତାମାନେ ମଧ୍ୟ ମୁସଲମାନ ଏବଂ ଖ୍ରୀଷ୍ଟିଆନ୍ । ଅନ୍ୟାନ୍ୟ ହିନ୍ଦୁ ସହଯୋଗୀମାନେ ବଚସ୍କର ମାତ୍ର । ସେମାନେ କ୍ଷୁଦ୍ର ଭୌତିକ ଲାଭ ଆଶାରେ ନିଜର ବିବେକ ଓ ବୁଦ୍ଧିକୁ ସୋନିଆଙ୍କ ଚରଣ ତଳେ ବନ୍ଧା ପକାଇ ଦେଇଛନ୍ତି । ଆମର ପ୍ରଧାନମନ୍ତ୍ରୀ ଜଣେ ଶିଖ୍ । ତେଣୁ ହିନ୍ଦୁ ଓ ହିନ୍ଦୁ ଧର୍ମକୁ ଯେତେ ଗୌଣ କରାଯାଇପାରେ– ହିନ୍ଦୁତ୍ୱ ଉପରେ ଶାସନକଳ ଦ୍ୱାରା ଯେତେ ନିର୍ମମ ପ୍ରହାର କରାଯାଇପାରେ, କରାଯାଉଛି । ହିନ୍ଦୁମାନଙ୍କୁ ସଂକୀର୍ଣ୍ଣ ଜାତି ଭେଦରେ, ବିଭିନ୍ନ ଆଳରେ ଭାଗ ଭାଗ କରି ଦୁର୍ବଳ କରିଦିଆଯାଉଛି ।

ଏକ ଜାତୀୟ ପ୍ରଶ୍ନ ଉପରେ ପ୍ରସ୍ତୁତ କରାଯାଇଥିବା ସତ୍ୟପାଠ ସୋନିଆଙ୍କ ଇଙ୍ଗିତ ବିନା, ବିଭାଗୀୟ ମନ୍ତ୍ରୀ ଅମ୍ବିକା ସୋନିଙ୍କ ନିର୍ଦ୍ଦେଶ ବିନା ପ୍ରସ୍ତୁତ କରାଯାଇ ନପାରେ । ମର୍ଯ୍ୟାଦାପୁରୁଷ ପୁରୁଷୋତ୍ତମ ରାମଚନ୍ଦ୍ରଙ୍କ ସ୍ଥିତିକୁ ଅସ୍ୱୀକାର କରିବା ଅର୍ଥ ରାମାୟଣ ଓ ମହାଭାରତକୁ ଗାଲୁଗପ କହି ହୁରୁଡାଇବା ସଙ୍ଗେ ସମାନ । ଏ ଦେଶର

ସାହିତ୍ୟ, ସଂସ୍କୃତି, କଳା, ମଠ, ମନ୍ଦିର ସବୁକିଛିକୁ ଗୋଟାଏ ସତ୍ୟପାଠ ଜରିଆରେ ଏ ଅସ୍ୱୀକାର କରିବାର ଧୃଷ୍ଟତା କରିଥିବା ବ୍ୟକ୍ତିମାନେ ନିଶ୍ଚୟ ପ୍ରଚଣ୍ଡ ହିନ୍ଦୁ ବିରୋଧୀ ଅଣହିନ୍ଦୁ କିମ୍ବା ନିଜର ଚାକିରି ହରାଇବା ଭୟରେ ଭୀତତ୍ରସ୍ତ କୌଣସି କାପୁରୁଷ ହିନ୍ଦୁ । ଏହାର ଲକ୍ଷ୍ୟ ହେଲା-ରାମଚନ୍ଦ୍ରଙ୍କୁ ଅସ୍ୱୀକାର କରିଦେଲା ପରେ ରାମଜନ୍ମଭୂମି ଅଯୋଧ୍ୟାର ବିବାଦ ଆପେ ଆପେ ତୁଟିଯିବ ।

ଏ ଦେଶ ଉପରେ ଆକ୍ରମଣ କରିଥିବା କୁଚକ୍ରୀ ବାବର ନାମରେ ଥିବା ବାବରୀ ମସଜିଦ୍‌ର ଦାବି ଆପେ ଆପେ ଏକ ଐତିହାସିକ ସତ୍ୟ ରୂପେ ପ୍ରତିଷ୍ଠିତ ହୋଇଯିବା ପାଇଁ ଏ ପ୍ରକାର ପରିକଳ୍ପନା ଉଦ୍ଦିଷ୍ଟ ନୁହେଁ ତ ? ଭାରତ ସ୍ୱାଧୀନତା ହାସଲ ପରେ କଂଗ୍ରେସ ବ୍ୟତୀତ ଯେ କୌଣସି ସ୍ୱାଭିମାନୀ ଜାତୀୟବାଦୀ ସରକାର ଗଠିତ ହୋଇଥିଲେ ମୋଗଲ ଓ ପଠାଣ ଶାସନରେ ଭାରତର ସାଂସ୍କୃତିକ ଐତିହ୍ୟ ମାନଙ୍କୁ ଯେଭଳି ବିକୃତ ଓ ବିକଳାଙ୍ଗ କରାଯାଇଥିଲା, ତାକୁ ପୁଣିଥରେ ସଜାଡ଼ି ଦିଆଯାଇଥାନ୍ତା । ମାତ୍ର କଂଗ୍ରେସର ଛଦ୍ମ ଧର୍ମନିରପେକ୍ଷ ଚାମଚାଗିରି ରାଜନୀତି ଏ ଦେଶକୁ ଆଣି ବର୍ତ୍ତମାନର ଏଭଳି ସ୍ଥିତିରେ ପହଞ୍ଚାଇଛି ।

ଯଦି ସତ୍‌ସାହସ ଅଛି-ଭାରତ ସରକାର ଶପଥପାଠ କରି ଘୋଷଣା କରିପାରିବେ କି-ମହମ୍ମଦ ମିଛ, ଯୀଶୁଖ୍ରୀଷ୍ଟ ନାମରେ କେହି କେବେ ନଥିଲେ, ଗୁରୁ ନାନକ ପ୍ରସଙ୍ଗ ଏକ କଳ୍ପନା ମାତ୍ର । ନା-ପାରିବେ ନାହିଁ । କେବଳ ହିନ୍ଦୁମାନଙ୍କ ଉଦାରତାର ସୁଯୋଗ ନେଇ ସେମାନଙ୍କର ଧର୍ମୀୟ ଭାବନା ଉପରେ ଆଘାତ କରି ପାରିବେ ।

ଆଉଜଣେ ପାଗଳ ଫିଦା ହୋସେନ୍ ହିନ୍ଦୁଦେବାଦେବୀଙ୍କୁ ବିବସ୍ତ୍ରା କରି ଚିତ୍ର ଅଙ୍କନ କଲେ । ତାକୁ ମଧ୍ୟ ଦଳେ କଳାପ୍ରେମୀ ନିର୍ଲଜ୍ଜ ଭାରତୀୟ ହିନ୍ଦୁ କଳା ନାମରେ ସମର୍ଥନ ଦେଲେ । ଅନ୍ୟ କୌଣସି ଧର୍ମକୁ, ତାଙ୍କ ଇସ୍‌ଲାମକୁ ସେଭଳି ବିକୃତ କରିଥିଲେ ସେ ଆଜିଯାଏ ବଞ୍ଚି ରହିପାରି ନଥାନ୍ତେ । ଏହା ସତ୍ୟ ନୁହେଁ କି ?

ବର୍ତ୍ତମାନ ସରକାରଙ୍କ ସତ୍ୟପାଠ ବିରୁଦ୍ଧରେ ଦେଶବ୍ୟାପୀ ପ୍ରତିକ୍ରିୟା ସୃଷ୍ଟି ହେବାରୁ ସରକାର ସେ ସତ୍ୟପାଠକୁ ପ୍ରତ୍ୟାହାର କଲେ ସତ୍ୟ ମାତ୍ର ସେଥିରୁ ହିନ୍ଦୁ ସମ୍ପ୍ରଦାୟ ପ୍ରତି ତାଙ୍କର ମନୋଭାବ ଓ ବିଚାର ସ୍ପଷ୍ଟ ହୋଇଗଲା । ସମୟ ଆସିଛି, ଆଜି ହିନ୍ଦୁସ୍ଥାନର ପ୍ରତ୍ୟେକ ହିନ୍ଦୁ ପିତାମାତାର ସନ୍ତାନ ଶପଥ ନିଅନ୍ତୁ- ଏଭଳି ଏକ ବିଧର୍ମୀ, ବିଦେଶୀ ଭାବନା ଭିତ୍ତିକ ସରକାରଙ୍କୁ ମୂଳୋତ୍ପାଟନ କରି ନିଜେ ସମ୍ମାନର ସହିତ ନିଜ ଦେଶରେ ବଞ୍ଚିବା ଶିଖନ୍ତୁ । ନଚେତ୍ ଲାଜରେ ଆତ୍ମହତ୍ୟା କରନ୍ତୁ ।

ସାହାଣମେଳା - ୨୭.୯.୨୦୦୫

# ଅଜେୟ ଅଭିମନ୍ୟୁ

ଜନମତ ଗଣନା ବେଳକୁ ଚତୁର୍ଦ୍ଦିଗରେ ଦୁର୍ଗମାନ, ଉତ୍ତୁଙ୍ଗ ଦୁର୍ଗର ପାଚେରିମାନ ଧସି ପଡ଼ିବାର ଶବ୍ଦ କାନରେ ପଡୁଛି । ତା ସହିତ କାନରେ ପଡୁଛି ମରି ପଡୁଥିବା ସୈନିକଟିର ବିକଳ ଚିତ୍କାର ସାଙ୍ଗକୁ ଜିତି ଯାଉଥିବା ସଂଗ୍ରାମୀର ଉଲ୍ଲାସ ଧ୍ୱନି । ସେଥିରେ ଶତ୍ରୁ ମିତ୍ର ଭେଦଭାବ ନାହିଁ । ସେ ଶବ ବିଜେପିର, କଂଗ୍ରେସର ବିଜେଡ଼ିର କିମ୍ବା ଆଉ କାହାର । ମାତ୍ର ଯୁଦ୍ଧ ଭୂମିରେ ନିଶ୍ଚଳ ନିଷ୍କମ୍ପ ଭାବରେ ଠିଆ ହୋଇଥିବା ବ୍ୟକ୍ତି ଜଣକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଛଡା ଆଉ କେହି ନୁହନ୍ତି ।

ସେ ସ୍ୱର୍ଗତଃ କଳିଙ୍ଗବୀର ବିଜୁ ପଟ୍ଟନାୟକଙ୍କର ପୁତ୍ର ହୋଇଥିଲେ ହେଁ ବିଜୁବାବୁ ତାଙ୍କ ଜୀବନ କାଳରେ କେବେ ହାତ ଧରି ରାଜନୀତିର ପିଚ୍ଛିଳ ପଥରେ ଚାଲିବା ଶିଖାଇ ନଥିଲେ । ତେଣୁ ତାଙ୍କ ହାରଜିତ୍‌ରେ ବିଜୁ ଲିଗାସି ଆଦୌ ନାହିଁ । ମାତ୍ର ୫ ବର୍ଷ ପୂର୍ବରୁ ଯେଉଁ ନବୀନଙ୍କୁ ଡାକିହାକି ହାତଧରି କେତେଜଣ ବିଜୁବାବୁଙ୍କ ଅନୁଗତ ଓଡ଼ିଶା ରାଜନୀତିକୁ ଆଣିଥିଲେ, ଆଜି ସେମାନେ ସମସ୍ତେ ତାଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ, ବିତାଡିତ । ତାଙ୍କର ନିର୍ମଳ ଶାସନ ଏବଂ ଦୁର୍ନୀତି-ବିରୋଧ ଅଭିଯାନରେ ବେସାଲିସ୍ କାର୍ଯ୍ୟ କଳାପ ଯୋଗୁ । କାର୍ଯ୍ୟାନୁଷ୍ଠାନ ଯୋଗୁ ସେ ପ୍ରାୟତଃ ନିଃସଙ୍ଗ ହୋଇ ପଡ଼ିଥିଲେ ହେଁ ତାଙ୍କର ଲକ୍ଷ୍ୟପୂରଣ ଦିଗରେ ଅଗ୍ରଗତିକୁ ଅପ୍ରତିହତ ରଖିଛନ୍ତି, ଯାହା ଜଣାଯାଏ ଓଡ଼ିଶାର ଜନସାଧାରଣଙ୍କ ହୃଦୟରେ ସେ ଏକ ସମ୍ମାନଜନକ, ଶ୍ରଦ୍ଧାପୂର୍ଣ୍ଣ ସ୍ଥାନ ସୃଷ୍ଟି କରିପାରିଛନ୍ତି ।

ଦୁର୍ନୀତି ବିରୁଦ୍ଧରେ ତାଙ୍କର ସାହସିକ ପଦକ୍ଷେପ ଓଡ଼ିଶା ଇତିହାସରେ ଲିପିବଦ୍ଧ ହୋଇଗଲା । ତିନି ତିନି ଜଣ ରାଜ୍ୟର କ୍ୟାବିନେଟ୍ ସ୍ତରର ମନ୍ତ୍ରୀଙ୍କୁ ମନ୍ତ୍ରୀତ୍ୱରୁ ନିକାଲି ଦେବା ତାଙ୍କ ଦୁଃସାହସିକତାର ପରିଚୟ ଦିଏ । ଠିକ୍ ସେହିଭଳି ବାଚସ୍ପତି ଶରତ କରଙ୍କୁ ଟିକେଟ୍ ନ ଦେବା ତାଙ୍କର ଉଚ୍ଚ ନୈତିକତାବୋଧକୁ ପରିପୁଷ୍ଟ କରେ । ମନ୍ତ୍ରୀତ୍ୱ ରହୁ କି ଯାଉ, ଦଳ ରହୁ କି ଯାଉ, କୌଣସି ପ୍ରଲୋଭନ ପ୍ରତି ଭ୍ରୂକ୍ଷେପ ନ କରି ଦୃଢ଼ ପଦକ୍ଷେପ ଗ୍ରହଣ କରିବା ତାଙ୍କ ଚରିତ୍ରର, ତାଙ୍କର ନିଷ୍ଠାପ୍ରତି ଅନମନୀୟକତାର ଆଉ ଏକ ଲକ୍ଷଣ ।

କ୍ଷମତାରେ ରହିଲେ ଶାସକକୁ କେତେକ ଅପ୍ରୀତିକର ପଦକ୍ଷେପ ଗ୍ରହଣ କରିବାକୁ ପଡେ । ତଦ୍ଦ୍ୱାରା ବହୁଲୋକ କ୍ଷୁବ୍ଧ ହୁଅନ୍ତି ଏବଂ ଜନମତ କେତେକ ପରିମାଣରେ ଶାସନକ ଦଳ ବିରୁଦ୍ଧରେ ଯାଏ । ଏହାକୁ ଆଣ୍ଟି ଇନକମ୍ବେନ୍‌ସୀ ଫ୍ୟାକ୍ଟର କୁହାଯାଏ । ମାତ୍ର କେତେମାସ ପୂର୍ବେ ସେହି କାରଣରୁ ରାଜସ୍ଥାନ, ମଧ୍ୟପ୍ରଦେଶ ଏବଂ ଛତିଶଗଡ଼ର କଂଗ୍ରେସ ଶାସନ ଭୁଷୁଡ଼ି ପଡ଼ିଲା ଏବଂ ବି.ଜେ.ପି କ୍ଷମତାକୁ ଆସିଲା । ଚଳିତ ନିର୍ବାଚନର ଫଳାଫଳକୁ ଆନ୍ଧ୍ରପ୍ରଦେଶର ଚନ୍ଦ୍ରବାବୁ ନାଇଡୁଙ୍କର ଅବସ୍ଥା ମଧ୍ୟ ଦିଗବିଜୟ ସିଂହ, ଅଶୋକ ଘେଲଟ୍ ଏବଂ ଅଜିତ୍ ଯୋଗୀ ସହିତ ସମାନ ହୋଇଗଲା । ମାତ୍ର ଓଡ଼ିଶାରେ ନବୀନ ବାବୁଙ୍କ ଶାସନକୁ ଆଣ୍ଟି ଇନକମ୍ବେନ୍‌ସୀ ଫ୍ୟାକ୍ଟର ଦୋହଲାଇ ପାରିନାହିଁ ।

ଏଥର ନିର୍ବାଚନରେ ସରକାରୀ କର୍ମଚାରୀମାନେ ଏବଂ ଶିକ୍ଷକ ସଂଘ ଖୋଲାଖୋଲି ଶାସକ, ବିଜେଡି ବିଜେପି ବିରୁଦ୍ଧରେ ପ୍ରଚାର କରିଥିଲେ । ଭୋଟ୍ କାର୍ଯ୍ୟରେ ମୁତୟନ ଥାଇ ଅନୈତିକ ଉପାୟରେ ଭୋଟରମାନଙ୍କୁ ପ୍ରଭାବିତ କରିଥିବାର ଉଦାହରଣ ସମ୍ବାଦପତ୍ର ପୃଷ୍ଠାରୁ ଦେଖିବାକୁ ମିଳିଲା । ତଥାପି ଜନସାଧାରଣଙ୍କର ସ୍ନେହ ଓ ସଦିଚ୍ଛା ନବୀନବାବୁଙ୍କ ପ୍ରତି ଅତୁଟ ରହିଥିବାର ପ୍ରମାଣ ଭୋଟ୍ ଗଣତି ଫଳାଫଳରୁ ପ୍ରକାଶ ।

କେବଳ ସେତିକି ନୁହେଁ, ଚଳିତ ନିର୍ବାଚନରେ ତାଙ୍କର ସ୍ଲୋଗାନ ଥିଲା ଶାସନରୁ ଦୁର୍ନୀତି ଦୂରୀକରଣ ଏବଂ ଓଡ଼ିଶାର ପ୍ରଗତି । ମାତ୍ର ବିରୋଧୀ କଂଗ୍ରେସ୍, ଓଜିପି ଏବଂ କମ୍ୟୁନିଷ୍ଟଙ୍କର ଆଭିମୁଖ୍ୟ ଥିଲା "ନବୀନ ହଟାଅ" । ବହୁ ପୁରାତନ ନେତା ନବୀନଙ୍କୁ ଭୋଟ ପୂର୍ବରୁ ସ୍ୱାର୍ଥ ବ୍ୟାହତ ହେତୁ ଛାଡି ଚାଲିଗଲେ । ବହୁ ତଥାକଥିତ ଦୁର୍ନୀତି ପୁଷ୍ଟ ନେତାମାନେ ତାଙ୍କ ବିରୁଦ୍ଧରେ ସମ୍ମିଳିତ ଭାବରେ ଜୋରଦାର ଲଢ଼େଇ କରି ତାଙ୍କୁ ଧରାଶାୟୀ କରିଦେବାର ବୃଥା ଆସ୍ଫାଳନ କଲେ । ମାତ୍ର ମହାଭାରତ ଅଭିମନ୍ୟୁ ଭଳି ସେ ସମସ୍ତ ସମ୍ମିଳିତ ଆକ୍ରମଣକୁ ପ୍ରତିହତ କରି ନବୀନ ପଟ୍ଟନାୟକ ପୁନଶ୍ଚ ହସ ହସ ମୁଖରେ ଓଡ଼ିଶାର ଶାସନ କ୍ଷେତ୍ରରେ ଅପ୍ରତିଦ୍ୱନ୍ଦ୍ୱୀନେତା ଭାବରେ ନିଜକୁ ପ୍ରତିଷ୍ଠିତ କରାଇ ପାରିଛନ୍ତି । ତାଙ୍କର ତଥାକଥିତ ପ୍ରତିଦ୍ୱନ୍ଦ୍ୱୀମାନଙ୍କର କାଳିମାମୟ ଅତୀତ ସେମାନଙ୍କୁ କ୍ଷମତାର ସୂର୍ଯ୍ୟାଲୋକ ଠାରୁ ପୁଣି କେତେବର୍ଷ ପାଇଁ ଅନ୍ଧକାର ଗର୍ଭକୁ ନିର୍ଦ୍ଦୟ ଭାବରେ ଠେଲି ଦେଇଛି ।

ଆଗକୁ ସମୟ କହିବ – ନବୀନବାବୁ ଓଡ଼ିଶାର ଉନ୍ନତି କଳ୍ପେ କେଉଁ କେଉଁ ପଦକ୍ଷେପ ନେବେ ଏବଂ ତାକୁ ସାକାର କରିବାକୁ କେତେଦୂର ସମର୍ଥ ହେବେ ।

ନିତ୍ୟନୂତନ – ୧୫.୧.୨୦୦୫

# ଗଣତନ୍ତ୍ରର କୂର୍ମାବତାର

ବହୁ ରାଜନୈତିକ ପଣ୍ଡିତ, ବହୁ ରାଜନୀତି-ବିଶାରଦଗଣ ଗଣତନ୍ତ୍ରର ସଂଜ୍ଞା ନିରୂପଣ କରିଯାଇଥିବାରୁ ମୁଁ ଆଉ ସେ ଆଡକୁ ଦୃଷ୍ଟି ଦେଉନାହିଁ । ମାତ୍ର ଗଣତନ୍ତ୍ର ଯେ ଏକ ନିର୍ବୋଧମାନଙ୍କର ସରକାର ସେଥିରେ ଆଉ କାହାରି ସନ୍ଦେହ ରହିବା ଉଚିତ୍ ନୁହେଁ । କାରଣ ମୁଣ୍ଡ ଗଣତି ବା ହାତ ଗଣତିର ଶାସନରେ ଗୁଣ ତଥା ମୂଲ୍ୟବୋଧ କ୍ରମଶଃ ଲୀନ ହୋଇଗଲାଣି । ବିଶେଷତଃ ଭାରତୀୟ ଗଣତନ୍ତ୍ର ପ୍ରତି ଏହା ପ୍ରଯୁଜ୍ୟ । ଏଠାରେ ଗଣତନ୍ତ୍ର ନାମରେ ଜଣତନ୍ତ୍ର କେମିତି ଚାଲେ ଭାରତୀୟମାନେ ସ୍ୱାଧୀନତା ପରଠାରୁ ଅଙ୍ଗେ ନିଭାଇଛନ୍ତି । ଏହି ଜଣତନ୍ତ୍ର ଭିତରେ ବଂଶତନ୍ତ୍ର ଓ ଧନତନ୍ତ୍ର ଏମିତି ଭାବରେ ଆଇନ୍ ଆଖିରେ ଧୂଳି ପକାଇ ତାର କରାମତି ଦେଖାଉଛି ଯେ ବୁଦ୍ଧିଜୀବୀମାନେ, ଜ୍ଞାନୀମାନେ ଜୁଳୁଜୁଳୁ କରି ଅସହାୟ ଭାବରେ ଚାହିଁ ରହିଛନ୍ତି ସିନା, କିଛି କରି ପାରୁନାହାନ୍ତି ।

ଭାରତ ସ୍ୱାଧୀନତା ପାଇବାଠାରୁ ଦୀର୍ଘ ୪୬ ବର୍ଷ ଧରି କେନ୍ଦ୍ରରେ ଓ ବିଭିନ୍ନ ରାଜ୍ୟରେ କଂଗେସ ଶାସନ କାଳରେ କଳାବଜାରୀ, ଦୁର୍ନୀତି, ବଂଶବାଦ, ନକଲିନେତା ମାନଙ୍କର ଗାଦି ଦଖଲ ଇତ୍ୟାଦି ଜନଜୀବନର ପ୍ରତି ରନ୍ଧ୍ରରେ ପ୍ରବେଶ କରିଗଲା । ଯେଉଁମାନେ ନୀତି ନିୟମ ଆଳରେ ଦଳରୁ ବାହାରିଗଲେ, ସେମାନେ ଏକୁଟିଆ ହୋଇଗଲେ । ଗୋଟିଏ ଭଲ ଲୋକର ଜାଗା ଖାଲି ହେଲେ ଦଳେ ଠକ ସେହି ଜାଗାକୁ ମାଡ଼ି ବସିଲେ । ସ୍ତାବକତାକୁ ପ୍ରାଥମିକତା ଦିଆଗଲା । ଗଣତନ୍ତ୍ରକୁ ତଳିତଳାନ୍ତ କରାଗଲା ।

ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହାର ଲାଲ୍ ନେହେରୁଙ୍କ ଦୀର୍ଘ କାଳ ଶାସନରେ ସେ ତାଙ୍କର କନ୍ୟା ଇନ୍ଦିରାଙ୍କୁ ଥଇଥାନ କରିଗଲେ । କାଳକ୍ରମେ ଇନ୍ଦିରାଙ୍କ ଶାସନ କାଳରୁ ନେହେରୁ-ଗାନ୍ଧି ପରିବାରର ପାରିବାରିକ ଶାସନ ଭାରତରେ ଚାଲିବା ଆରମ୍ଭ ହେଲା । ଏହି ଗାନ୍ଧି ମୋହନ ଦାସ କରମ ଚାନ୍ଦ ଗାନ୍ଧିଙ୍କର କେହି ଦାୟାଦ ନୁହନ୍ତି-ନକଲି ଗାନ୍ଧିମାତ୍ର ।

କ୍ରମେ ସେହି ପରିବାରରେ ଜନ୍ମିତ ପ୍ରତ୍ୟେକ ବ୍ୟକ୍ତିଙ୍କର ଭାରତର ପ୍ରଧାନମନ୍ତ୍ରୀତ୍ୱ ଉପରେ ଅଧିକାର ସାବ୍ୟସ୍ତ ହୋଇଗଲା । କେବଳ ମେନକା ତାଙ୍କର ପୁତ୍ର ବରୁଣ ସହିତ ଇନ୍ଦିରା ଗାନ୍ଧିଙ୍କର ବିରାଗ ଭାଜନ ଥିବାରୁ ସେମାନେ ଏହି ଦୌଡରୁ ଦୂରରେ ରହିଲେ । ଆଜି ମଧ୍ୟ କଂଗ୍ରେସ ଦଳ ଓ ତାଙ୍କୁ ସହଯୋଗ କରୁଥିବା ବ୍ୟକ୍ତିମାନଙ୍କର ସେହି ବଂଶବାଦ ଉପରେ ଅନ୍ଧ ମୋହ ରହିଛି, ପୂର୍ବତନ ରାଜା ମହାରାଜାମାନଙ୍କ ଭଳି କେବଳ ସେହି ବଂଶରୁ ଜଣେ ପ୍ରଧାନମନ୍ତ୍ରୀ ହେଲେ ଚାଟୁକାର ଓ ସ୍ତାବକମାନେ ଖୁସି ।

ଅଳ୍ପ କେତେବର୍ଷ ପାଇଁ ପ୍ରଧାନମନ୍ତ୍ରୀ ହୋଇଥିବା ନରସିଂହ ରାଓଙ୍କୁ ବାଇଦ-ବଜାଳୀରୁ ନେତା ହୋଇଥିବା ସୀତାରାମ କେଶରୀ କେମିତି ଚକ୍ରାନ୍ତ କରି ତଡ଼ିବାକୁ ସୋନିଆଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ରାଜନୀତିକୁ ଆଣିଲେ, ତାହା ସମସ୍ତେ ଜାଣନ୍ତି । ସେଇ ସୋନିଆଙ୍କର ଗୋଟିଏ ଲାତରେ ସୀତାରାମ ପଦବୀ ଓ ପ୍ରାଣ-ଦୁଇଟି ଯାକ ହରାଇଲେ । ଅଳ୍ପ ସମୟ ପାଇଁ ପ୍ରଧାନମନ୍ତ୍ରୀ ଥିବା ଲାଲବାହାଦୂର ଶାସ୍ତ୍ରୀ, ଗୁଲ୍‌ଜାରିଲାଲ୍ ନନ୍ଦା, ମୋରାରଜୀ ଦେଶାଇଙ୍କ ଭଳି ଦେଶପ୍ରେମୀ ସଚ୍ଚା ଜନ ନେତାମାନେ ବଂଶବାଦର ତୀବ୍ର ଆଲୋକରେ କେମିତି ନିଷ୍ପ୍ରଭ ତାହା କଂଗ୍ରେସ ଲୋକେ ଜାଣନ୍ତି ।

ସମଗ୍ର ଭାରତକୁ ଦୃଷ୍ଟି ଦେଲେ କାଶ୍ମୀରରେ ଶେଖ ଅବଦୁଲ୍ଲାଙ୍କ ପରିବାର, ଦେବୀଲାଲ-ଚୌତାଲା-ଚରଣ ସିଂହ-ଅଜିତ୍ ସିଂହ, ଲାଲୁ-ରାବିଡି, ମୁଲାୟମ-ଅଖିଳେଶ, ମାଧବରାଓ-ଜ୍ୟୋତିରାଦିତ୍ୟ, ସତୀଶ ଶର୍ମା ଓ ତାଙ୍କ ପୁତ୍ର ଉପାଖ୍ୟାନମାନ ଜଳ ଜଳ ହୋଇ ଆଖିରେ ପଡ଼ନ୍ତି । ସେପରିସ୍ଥିତିରେ ନେତୃତ୍ୱର ଚମତ୍କାରିତା, ବୁଦ୍ଧିବୃତ୍ତି ସବୁକୁ ପଛକୁ ରଖି କେବଳ ବଂଶର ସନ୍ତାନଟିକୁ ଥଇଥାନ କରିବାର ପ୍ରବୃତ୍ତି ଓ କସରତ୍ ଆଖିରେ ପଡେ । ସେଥିରେ ଆମ ଓଡ଼ିଶା ମଧ୍ୟ ଖୁବ୍ ପଛରେ ପଡ଼ିନାହିଁ । ଓଡ଼ିଶାରେ ପାରିବାରିକ ଶାସନ କହିଲେ ସର୍ବ ପ୍ରଥମେ ଦୃଷ୍ଟିକୁ ଆସନ୍ତି, ଜାନକୀ ବଲ୍ଲଭ ପଟ୍ଟନାୟକ, ଜୟନ୍ତୀ ପଟ୍ଟନାୟକ, ସୌମ୍ୟରଞ୍ଜନ ପଟ୍ଟନାୟକ ଏବଂ ନିରଞ୍ଜନ ପଟ୍ଟନାୟକ । କଂଗ୍ରେସୀ ଜଳବାୟୁ ସେଥିନିମନ୍ତେ ଖୁବ୍ ଅନୁକୂଳ ବୋଧ ହୁଏ । କ୍ରମଶଃ ସେହି ବ୍ୟାଧି ଅନ୍ୟାନ୍ୟ ଦଳକୁ ମଧ୍ୟ ବ୍ୟାପିବାର ଦେଖାଯାଏ । ବଲାଙ୍ଗୀର ଓ ଢ଼େଙ୍କାନାଳ ରାଜପରିବାର । ଅଦ୍ୱୈତପ୍ରସାଦ ସିଂହ ଓ ତାଙ୍କ ପୁତ୍ର, ବସନ୍ତ ବିଶ୍ୱାଳ-ରଂଜୀବ ବିଶ୍ୱାଳ, ଦେବେନ୍ଦ୍ର ପ୍ରଧାନ-ଧର୍ମେନ୍ଦ୍ର ପ୍ରଧାନ, ନୀଳମଣି-ବିଜୟଶ୍ରୀ, ରାମକୃଷ୍ଣ-କୁମୁଦିନୀ, ଗିରିଧର-ହେମା ଇତ୍ୟାଦି ବହୁତ ଉଦାହରଣ ଦେଖାଯାଏ । ସେହିଭଳି ପିତାମାତା

କ୍ଷମତାରେ ଥିବାବେଳେ ସନ୍ତାନମାନେ ସମ୍ବିଧାନ- ବହିର୍ଭୂତ କ୍ଷମତା ଉପଭୋଗ କରିବା ମଧ୍ୟ ଗଣତାନ୍ତ୍ରିକ ପଦ୍ଧତି ପରି ଉପହାସ ବୋଲି ବିବେଚିତ ହୁଏ ।

ଏକଦା ଇନ୍ଦିରାଗାନ୍ଧି ପ୍ରଧାନମନ୍ତ୍ରୀ ଥିବାବେଳେ ସଂଜୟ ଗାନ୍ଧି କ୍ଷମତାବଳୟର କେନ୍ଦ୍ରବିନ୍ଦୁ ଥିଲେ । ସେହିଭଳି ଓଡ଼ିଶାରେ ମଧ୍ୟ ନନ୍ଦିନୀ ଶତପଥି ମୁଖ୍ୟମନ୍ତ୍ରୀ ଥିବାବେଳେ ତୁଷାର ପାଣିଗ୍ରାହୀ ଏବଂ ତଥାଗତ ଶତପଥୀ ବହୁ ଘଟଣ-ବିଘଟଣର ନାୟକ ଥିବା ଓଡ଼ିଶାବାସୀ ଜାଣନ୍ତି ।

ତା'ଛଡା ଅର୍ଥ ଓ ବାହୁବଳ କ୍ରମଶଃ ଭାରତୀୟ ଗଣତନ୍ତ୍ରକୁ କିଭଳି କରାୟତ୍ତ କଲାଣି, ତାହା ବହୁ ଭାବରେ ଆଲୋଚିତ ହେଉଛି । କ୍ଷମତା ଅର୍ଥ ସଂଗ୍ରହର ମାଧ୍ୟମ ହୋଇଥିବାରୁ ରାଜନେତାମାନେ କଳେବଳେ କଉଶଳେ କ୍ଷମତାକୁ ଜାବୁଡ଼ିଧରି ରଖିଛନ୍ତି । ବର୍ତ୍ତମାନ ଜଣେ ବିଧାୟକଙ୍କର ଆଇନ ସମ୍ମତ ଆୟ ମାସକୁ ୫୦ ହଜାର ହୋଇଥିବା ବେଳେ ଦୁର୍ନୀତି ଉପାୟରେ ଲକ୍ଷାଧିକ ଟଙ୍କା ଆୟ ହେଉଛି । ତେଣୁ ବିଧାନସଭା ନିର୍ବାଚନରେ ଅଜସ୍ର ଖର୍ଚ୍ଚ କରି ଜଣେ ବିଧାୟକଟିଏ ହେବାକୁ ଚାହୁଁଛି । ବିଗତ ପଞ୍ଚାୟତ ନିର୍ବାଚନ ଓ ମ୍ୟୁନିସିପାଲଟି ନିର୍ବାଚନରେ ଯେଉଁଭଳି ଅର୍ଥବ୍ୟୟ ହେଲା, ୩୦ ବର୍ଷ ପୂର୍ବରୁ ବିଧାୟକ ନିର୍ବାଚନରେ ସେଭଳି ହେଉ ନଥିଲା । ଏହାର ଏକମାତ୍ର କାରଣ ଦୁର୍ନୀତିପୂର୍ଣ୍ଣ ଉପାୟରେ ଅର୍ଥାଗମର ସୁଯୋଗ ପାଇବା ଛଡା ଆଉ କିଛି ନୁହେଁ । ମାତ୍ର ସମସ୍ତେ ନିର୍ଲଜ୍ଜ ଭାବରେ ସେବା କରି ଆସୁଥିବାର ଆଳ ଦେଖାଇଥାଆନ୍ତି । କ୍ୱଚିତ୍ ବ୍ୟତିକ୍ରମ ଛାଡିଦେଲେ ସର୍ବତ୍ର ଅର୍ଥବଳ ଓ ବାହୁବଳର ପ୍ରାଦୁର୍ଭାବରେ ଗଣତନ୍ତ୍ର ତାର ମର୍ଯ୍ୟାଦା ହରାଇ ସାରିଲାଣି । ତେଣୁ ପ୍ରକୃତ ବୁଦ୍ଧିଜୀବୀ ଏବଂ ନୀତିବାନ୍ ଲୋକେ କ୍ରମଶଃ ନିର୍ବାଚନରେ ଭାଗନେବାକୁ ବୀତସ୍ପୃହ ହେଉଥିବା ବେଳେ ଅବାଞ୍ଛିତ ଗୁଣ୍ଡା, ବଦମାସ୍, ଡକାୟତମାନେ ବହୁ ସଂଖ୍ୟାରେ ପବିତ୍ର ବିଧାନସଭା ତଥା ଲୋକସଭାରେ ପ୍ରବେଶ କରୁଛନ୍ତି । ଏହାହିଁ ଆଜି ଗଣତନ୍ତ୍ରର ବିଡମ୍ବନା ।

ଏହି ସମସ୍ତ ଘଟଣା ପରିପ୍ରେକ୍ଷୀରେ ଭାରତରେ ଗଣତନ୍ତ୍ର କ୍ରମଶଃ ପରିପୁଷ୍ଟ ହେଉଥିବାର ଯଥେଷ୍ଟ ସନ୍ଦେହ ସୃଷ୍ଟି ହେଉଛି । ଏହାକୁ ଗଣତନ୍ତ୍ରର କୂର୍ମାବତାର କୁହାଯାଇପାରେ ।

ମେ' ୨୦୦୪ - ନିତ୍ୟନୂତନ

# ନୀତି ରାଜନୀତି

ଭାରତର ଦୁର୍ନୀତି ସମ୍ରାଟ୍ ବିହାରର କୁଖ୍ୟାତ ନେତା ଲାଲୁ ପ୍ରସାଦ ଦିନକୁ ଦିନ ଅଧିକ ନିଜର ଜାଲରେ ଛନ୍ଦି ହୋଇ ପଡୁଛନ୍ତି । କଂଗ୍ରେସର କ୍ଷମତା ନିଶା ଲାଲୁ ଭଳି ବହୁ ଜନ ଶତ୍ରୁ ଗଣତନ୍ତ୍ର-ଶତ୍ରୁମାନଙ୍କୁ କ୍ଷମତାସୀନ କରାଇଲା । ଫଳତଃ ଜେଲର ଚାରିକାନ୍ଥ ଭିତରେ ଆବଦ୍ଧ କରିବା ପରିବର୍ତ୍ତେ ସେ ବର୍ତ୍ତମାନ ଭାରତର ରେଳବିଭାଗ ମନ୍ତ୍ରୀ ରୂପେ ପୋଲିସ୍ ସୁରକ୍ଷା ଭିତରେ ରହୁଛନ୍ତି । ବହୁକୋଟି ଟଙ୍କାର 'ଚାରାଘୁଟାଲା'ର ଖଳନାୟକ ଲାଲୁ ଚକ୍ରାନ୍ତକରି ନିଜ ଉପରୁ ତଥା ତାଙ୍କର ଅଶିକ୍ଷିତା ପତ୍ନୀ ରାବିଡୀ ଦେବୀଙ୍କ ଉପରୁ ସମସ୍ତ ଇନକମ୍‌ଟ୍ୟାକ୍‌ସ କେଶ୍‌ଯାକ ଉଠାଇଦେଲେ ଓ ନିର୍ଦ୍ଦୋଷରେ ଖଲାସ ହେଲେ । ମାତ୍ର ତା' ଉପରେ ସୁପ୍ରିମ୍‌କୋର୍ଟଙ୍କ ପ୍ରତିକୂଳ ମନ୍ତବ୍ୟ ତଥା ହସ୍ତକ୍ଷେପ ଫଳରେ 'ଉପା' ସରକାରର ଭାବମୂର୍ତ୍ତି ଯଥେଷ୍ଟ କ୍ଷୁଣ୍ଣ ହେଲା ।

ନିକଟ ଅତୀତରେ ଗୁଜୁରାଟରେ ଘଟିଥିବା ରେଳ ଦୁର୍ଘଟଣା ବେଳେ ସେ ଗୁଜୁରାଟ ଗସ୍ତ କରିଥିଲେ । ସେଠାରୁ ଫେରି ଖୁବ୍ ଗୋଟାଏ ହଟଚମଟ ଦେଖାଇ ମୋଦୀ ସରକାରଙ୍କୁ ବରଖାସ୍ତ କରିବାକୁ ଦାବି କଲେ । କାରଣ ତାଙ୍କୁ ଗୁଜୁରାଟ୍‌ରେ ପ୍ରାଣରୁ ମାରିଦେବାକୁ ଚକ୍ରାନ୍ତ ହୋଇଥିଲା ଓ ସେ ଚକ୍ରାନ୍ତ ପଛରେ ନରେନ୍ଦ୍ର ମୋଦୀଙ୍କର ହାତଥିଲା ବୋଲି ସେ ପ୍ରଚାର କରିବୁଲିଲେ । ମିଡିଆଠାରୁ ଆରମ୍ଭ କରି ପାର୍ଲିଆମେଣ୍ଟ ଯାଏ ସବୁଆଡେ ରଡ଼ି ବିଦାରି ହେଲେ ଓ ସୋନିଆ ଗାନ୍ଧି ତଥା ପ୍ରଧାନମନ୍ତ୍ରୀଙ୍କୁ ଫେରାଦ ହେଲେ । ମାତ୍ର ତାଙ୍କ ଯାତ୍ରାର ଭିଡ଼ିଓ ରେକର୍ଡିଂରୁ ଜଣାପଡ଼ିଲା ଯେ ସେ ଅଭିଯୋଗ ସମ୍ପୂର୍ଣ୍ଣ ମିଥ୍ୟା । ଗୁଜୁରାଟ୍‌ର ପୋଲିସ୍ ଡ଼ି.ଜି. କହିଲେ ଗୋଟାଏ ଗୋଡି ପର୍ଯ୍ୟନ୍ତ ତାଙ୍କ ଉପରକୁ କେହି ଫୋପାଡ଼ି ନାହିଁ । ଲାଜକୁ ଜଳାଞ୍ଜଳି ଦେଇଥିବା ଲାଲୁ ସେଥିରେ ଚୁପ୍ ରହିଲେ ।

ଲାଲୁ ଯାଦବଙ୍କର ତା ପରବର୍ତ୍ତୀ ଚକମା ଆରମ୍ଭ ହେଲା । ସପ୍ତର୍ଷି ନାମକ ଜଣେ ବଡୀପେଲା ଆଇଏଏସ ଅଫିସରଙ୍କ ରିପୋର୍ଟକୁ ନେଇ । ସପ୍ତର୍ଷି ରିପୋର୍ଟ କଲେ ଯେ ଗତବର୍ଷ ନିର୍ବାଚନ ସମୟରେ ନିର୍ବାଚନ କମିଶନର ସଭ୍ୟ ଟଣ୍ଡନ ଏବଂ ଗୋପାଳସ୍ୱାମୀ ଉଭୟ ଲାଲୁଙ୍କ ବିରୁଦ୍ଧରେ ରିପୋର୍ଟ କରିବାକୁ ତାଙ୍କୁ ପରାମର୍ଶ ଦେଇଥିଲେ । ସପ୍ତର୍ଷି ଛାପ୍ରା ନିର୍ବାଚନମଣ୍ଡଳୀରେ ପର୍ଯ୍ୟବେକ୍ଷକ ଥିଲେ । ଏହି ସପ୍ତର୍ଷି ଲାଲୁଙ୍କ ଅନୁଗ୍ରହରୁ ଚାକିରି ଶେଷ ପୂର୍ବରୁ ୩ ବର୍ଷ ଯାଏଁ ଏକ୍ସଟେନସନ ପାଇଛନ୍ତି ।

ତା’ଛଡା ଜଣେ କେନ୍ଦ୍ର ସରକାରୀ କର୍ମଚାରୀ ନିର୍ବାଚନ କମିଶନଙ୍କ ବିରୁଦ୍ଧରେ ସେଭଳି ମନ୍ତବ୍ୟ ଦେବା ଦୋଷାବହ । ପୁନଶ୍ଚ ଚାକିରି ସର୍ତ୍ତାବଳୀର ଉଲ୍ଲଙ୍ଘନ ମଧ୍ୟ ତାଙ୍କ ବିରୁଦ୍ଧରେ ଆସିଲାଣି । ଆଶ୍ଚର୍ଯ୍ୟର କଥା କେନ୍ଦ୍ରମନ୍ତ୍ରୀ ଭରଦ୍ୱାଜଙ୍କୁ ସେ ଲେଖିଥିବା ଚିଠି ନପହଞ୍ଚୁଣୁ ଲାଲୁ ସେ ଚିଠିର ନକଲ ମିଡ଼ିଆକୁ ଦେଖାଇ ନିର୍ବାଚନ କମିଶନଙ୍କ ଇସ୍ତଫା ଦାବି କଲେ । ମାତ୍ର ତାଙ୍କର ଦାବି ପ୍ରତି କେହି କର୍ଣ୍ଣପାତ ନକରିବାରୁ ରକ୍ତଚାଉଳ ଚୋବାଇ ରହିଲେ । ବର୍ତ୍ତମାନ ପାଳି ସପ୍ତର୍ଷିଙ୍କର । ଏପରିକି ପ୍ରଧାନମନ୍ତ୍ରୀ ମଧ୍ୟ ଲାଲୁଙ୍କ ଚରିତ୍ର ବିଷୟରେ ସମ୍ପୂର୍ଣ୍ଣ ଅବହିତ ଥାଇ ମତଦେଲେ-‘ନିର୍ବାଚନ କମିଶନଙ୍କ ଭଳି ନିରପେକ୍ଷ ସଂସ୍ଥାକୁ ରାଜନୀତି ଭିତରକୁ ଟାଣିବା ଉଚିତ୍ ନୁହେଁ ।’ କେବଳ ସେତିକି ନୁହେଁ ଟଣ୍ଡନଙ୍କୁ ମଧ୍ୟ ଲାଲୁଙ୍କ ବିରୋଧ ସତ୍ତ୍ୱେ ମୁଖ୍ୟ ନିର୍ବାଚନ କମିଶନର ପଦବୀ ଦିଆଗଲା ।

ବିହାରରେ ରାଷ୍ଟ୍ରପତି ଶାସନ ଜାରି ହେବାପରେ ଲାଲୁଙ୍କ କ୍ରିୟା କଳାପର କିଛି କିଛି ଘଟଣା ଲୋକ ଲୋଚନକୁ ଆସୁଛି । ରାଜ୍ୟପାଳ ସିବିଆଇ ତଦନ୍ତ ପାଇଁ କେତେକ ଆର୍ଥିକ ବିଶୃଙ୍ଖଳାକୁ ଦେଇ ସାରିଲେଣି । ଲାଲୁଙ୍କ ଶଳା ଓ ବନ୍ଧୁବାନ୍ଧବମାନେ ମାଡ଼ିବସିଥିବା ସରକାରୀ ଘର ଛାଡ଼ିଲେଣି । ଲାଲୁଙ୍କ ପୁଅ, ଝିଅ ଓ ବିରାଦରଙ୍କ ପାଇଁ ୨୫୦ ଜଣ ପୋଲିସ୍ ଅଙ୍ଗରକ୍ଷୀ ରହି ଆସିଥିଲେ । ସ୍ମରଣଯୋଗ୍ୟ ଯେ ବିହାରରେ ପୋଲିସ୍ ସାହାଯ୍ୟ ପାଉଥିବା ଅଧିକାଂଶ ରାଜନେତା ଏବଂ ସାଧାରଣ ଲୋକେ ଦାଗୀ ଓ କ୍ରିମିନାଲ୍ । ଲାଲୁଙ୍କ ବିଷଚକ୍ରରେ ବିହାର କିଭଳି ଛଟପଟ ହେଉଛି ତାହା ବାରମ୍ବାର ହାଇକୋର୍ଟଙ୍କ ମନ୍ତବ୍ୟରୁ ଜଣାପଡେ ।

ଏହି ପରିସ୍ଥିତିରେ ଲାଲୁ ୨ ଜଣ ଏମ.ପି.ଙ୍କ ବଳରେ କଂଗ୍ରେସ ପରିଚାଳିତ ଉପା ସରକାରକୁ ବ୍ଲାକମେଲ୍ କରୁଥିବାର ଜଣାପଡିଲେ ମଧ୍ୟ ପ୍ରଧାନମନ୍ତ୍ରୀ ନିରୁପାୟ । ବର୍ତ୍ତମାନ କଂଗ୍ରେସ ନାଗ ଓ ଲାଲୁ ଚୁଚୁନ୍ଦ୍ରା ଭଳି କେହି କାହାକୁ ଛାଡି ପାରୁନାହାନ୍ତି ।

ଆଉ ଜଣେ ଦୁର୍ନୀତି ସାମ୍ରାଜ୍ଞୀ ମାୟାବତୀ ଦୁର୍ନୀତି ଜାଲରେ ଛନ୍ଦି ହୋଇ ସମସ୍ତ କେଶ୍ ପ୍ରତ୍ୟାହାର ପାଇଁ କଂଗ୍ରେସ ଉପରେ ଚାପ ଦେଉଛନ୍ତି । ମାତ୍ର ତାଙ୍କ ବିରୁଦ୍ଧରେ ଦୁର୍ନୀତି ଅପରାଧ ସୁପ୍ରିମ୍‌କୋର୍ଟଙ୍କ ନିର୍ଦ୍ଦେଶରେ ଚାଲିଛି । ସେହି ରାଗରେ ସେ ମଧ୍ୟ ସମର୍ଥନ ପ୍ରତ୍ୟାହାରର ଧମକ ଦେଉଛନ୍ତି ।

ମୋଟ ରାଜନୀତିରେ ଦୁର୍ନୀତିଗ୍ରସ୍ତ ଓ ଦାଗୀମାନେ ବହୁତ ସୁବିଧା ହାସଲ କରିପାରୁଥିବାର ଦେଖାଯାଉଛି । ତେଣୁ ଗଣତନ୍ତ୍ରର ହତ୍ୟାକାରୀମାନଙ୍କୁ ଶାସ୍ତି ନମିଳିଲେ, ଗଣତନ୍ତ୍ର ନିଜେ ଶାସ୍ତି ଭୋଗିବା ସାର ହେବ ।

ନିତ୍ୟନୂତନ, ୧୫.୫.୨୦୦୫

# କ୍ଷମତା ଖେଳ ଓ ଭାରତ ବର୍ଷ

ଭାରତବର୍ଷର ସ୍ୱାଧୀନତା କେଉଁ ଅଶୁଭ ମୁହୂର୍ତ୍ତରେ ଆସିଥିଲା କେଜାଣି, ଏଠାରେ ଦେଶ ଅପେକ୍ଷା, ଦେଶପ୍ରେମ ଅପେକ୍ଷା କ୍ଷମତାଲିପ୍‌ସା ଅଧିକ ପ୍ରଭାବ ବିସ୍ତାର କରି ରହିଛି । ଦୁଇଜାତି ତତ୍ତ୍ୱ ଓ ଭାରତର ବିଭାଜନକୁ ସ୍ୱୀକାର କରି କଂଗ୍ରେସ ଯେ କ୍ଷମତାପାଇଁ ଭାରତକୁ ଭାଗ ଭାଗ କଲା- ସେ ଉତ୍ତରଦାୟିତ୍ୱ ଗ୍ରହଣ କରିବାକୁ କଂଗ୍ରେସ ପ୍ରସ୍ତୁତ ନ ହେଲେ ହେଁ, ଏହା ଏକ ଐତିହାସିକ ସତ୍ୟ । ତେଣୁ ଇତିହାସକୁ ବିକୃତ କରିବାକୁ କଂଗ୍ରେସର ନେତୃବର୍ଗ ସବୁବେଳେ ଚକ୍ରାନ୍ତକାରୀ ଐତିହାସିକମାନଙ୍କର ଶରଣାପନ୍ନ ହୋଇଛନ୍ତି । ସ୍ୱାଧୀନତା ପାଇଁ ସଂଗ୍ରାମ କରିବା ସଙ୍ଗେ ସଙ୍ଗେ ତାର ସୁଫଳ ଭୋଗପାଇଁ କଂଗ୍ରେସ ଅତିଶୟ ଲାଳାୟିତ ହୋଇପଡ଼ିଲା । ସେ ଲାଳସା କଂଗ୍ରେସକୁ ଏବେ ମଧ୍ୟ ମୋହଗ୍ରସ୍ତ ଓ ନୀତିବିବର୍ଜିତ କରି ରଖିଛି । କେବଳ ସେତିକି ନୁହେଁ, କ୍ଷମତା ହାସଲ ପାଇଁ କଂଗ୍ରେସ ବର୍ତ୍ତମାନ ସମଗ୍ର ଭାରତରେ ଭୟାନକ ରାଜନୈତିକ ଖେଳ ଆରମ୍ଭ କରିଦେଇଛି । ତାର କୁଫଳ ସୁଦୂର ପ୍ରସାରୀ ।

ଅଳ୍ପଦିନ ତଳେ ଜୁନ୍ ୧୫ ତାରିଖ ପ୍ରତ୍ୟୁଷରେ କୁଖ୍ୟାତ୍ ସନ୍ତ୍ରାସବାଦୀ ଦଳ ଲସ୍କର-ଇ-ତୋଇବାର ୪ ଜଣଙ୍କୁ ଗୁଜୁରାଟରେ ପୋଲିସ୍ ଗୁଳିକରି ମାରିଦେଲା । ପ୍ରକୃତରେ କେନ୍ଦ୍ରିୟ ଇଣ୍ଟେଲିଜେନସିରୁ ଖବର ପାଇ ଗୋଟିଏ ନିର୍ଦ୍ଦିଷ୍ଟ ଗାଡିରେ ଯାଉଥିବା ସନ୍ତ୍ରାସବାଦୀମାନଙ୍କୁ ହତ୍ୟା କରାଯାଇଥିଲା । ସେମାନଙ୍କ ଭିତରେ ୨ ଜଣ ପାକିସ୍ଥାନୀ ନାଗରିକ ଓ ୨ ଜଣ ଭାରତୀୟ ସନ୍ତ୍ରାସବାଦୀ ଥିଲେ । ଜଣେ ହେଲା ଜାଭେଦ-ଯେକି କେରଳର ଜଣେ ହିନ୍ଦୁ ଗୋଟିଏ ମୁସଲମାନ ଯୁବତୀକୁ ବିବାହ କରିବାକୁ ମୁସଲ୍‌ମାନ ହୋଇଥିଲା । ଆଉ ଜଣେ ହେଲା ଇଶରାତ୍ ଯାହାନ୍ ଶମିମ୍ ରେଜା । ଇଶ୍ରାତ୍ ଜଣେ କଲେଜ ଛାତ୍ରୀ । ସେ ସନ୍ତ୍ରାସବାଦୀଙ୍କ ଦଳରେ ଯୋଗଦେଇ ଗୁଜୁରାଟର ମୁଖ୍ୟମନ୍ତ୍ରୀ ନରେନ୍ଦ୍ର ମୋଦୀଙ୍କୁ ହତ୍ୟାକରିବା ଏବଂ ଆହୁରି ବହୁ ନାରକୀୟ ଘଟଣା ସୃଷ୍ଟି କରିବାକୁ ଷଡ଼ଯନ୍ତ୍ରରେ ଲିପ୍ତ ଥିଲା । ସେ ଖବର ଶୁଣି ତା'ର ମା', ପରିବାରର ଲୋକେ ଏବଂ ପଡୋଶୀମାନେ ବିଶ୍ୱାସ କରି ନଥିଲେ । ଭାରତରେ ଏହିଭଳି ସନ୍ତ୍ରାସବାଦୀମାନେ

ପ୍ରତି ସହରମାନଙ୍କରେ ଛାଇ ହୋଇ ରହିଛନ୍ତି । ସେମାନେ ବିଦେଶୀ ସନ୍ତ୍ରାସବାଦୀଙ୍କ ପାଇଁ ଭାରତରେ ଭିତ୍ତିଭୂମି ପ୍ରସ୍ତୁତ କରି ରଖୁଛନ୍ତି । ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ମାତ୍ର ଗୁଜୁରାଟ୍ ବିଧାନସଭାର ବିରୋଧୀଦଳ ନେତା ଅମର ଚୌଧୁରୀ ଏହି ଘଟଣାରୁ ମୋଦିଙ୍କ ଚକ୍ରାନ୍ତ ଜାଣିପାରିଲେ । ତାହା ମୋଦିଙ୍କ ଦ୍ୱାରା ରଚିତ ଏକ ନାଟକ ବୋଲି ବିବୃତି ଦେଲେ । ଦେଶରକ୍ଷାଠାରୁ ତାଙ୍କ ପାଇଁ ଦଳ ଏତେବଡ ହେଲା ଯେ ଜଣେ କଂଗ୍ରେସୀ ମନ୍ତ୍ରୀ ଇଶ୍ରାତ୍‌ର ପରିବାରକୁ ସମ୍ବେଦନା ଜଣାଇ ୧ ଲକ୍ଷ ଟଙ୍କା ସାହାଯ୍ୟ ଦେଲେ । ଦେଶଦ୍ରୋହୀକୁ କେବଳ ଜଣେ ଦେଶଦ୍ରୋହୀ ହିଁ ସାହାଯ୍ୟ କରିପାରେ । ଖବରରୁ ଜଣାଯାଏ, ଇଶ୍ରାଦ୍‌ର ମା' ସନ୍ତ୍ରାସବାଦୀଙ୍କ ଠାରୁ ୪ ଲକ୍ଷ ଟଙ୍କା ପାଇଥିଲେ ହେଁ ଝିଅର ନିରୀହତା ବିଷୟରେ ବହୁତ ଅଭିନୟ ଦେଖାଇଲେ । ମାତ୍ର ନିଜର ନିର୍ଦ୍ଦୋଷ ଝିଅ କାହିଁକି ୩ ଜଣ ଯୁବକଙ୍କ ସହିତ ବାହାରେ ରାତି ବିତାଏ, ତାର କୈଫିୟତ୍ ଦେଇ ପାରିଲେ ନାହିଁ । ପୁଣି ଇଶ୍ରାତ୍ ଜାଭେଦ୍ ସହିତ ହୋଟେଲ୍‌ରେ ସ୍ୱାମୀ-ସ୍ତ୍ରୀ ପରିଚୟରେ ରାତ୍ରୀ ଯାପନ କରିଥିବାର ପ୍ରମାଣ ପୋଲିସ୍‌ର ହସ୍ତଗତ ହୋଇଛି ।

ସେତିକି ନୁହେଁ- ଇଶ୍ରାତ୍ ଯାଉଥବା ଗାଡିରୁ ବହୁ ମାରଣାସ୍ତ୍ର ସହିତ କେତେଗୁଡ଼ିଏ ନଡ଼ିଆ ମିଳିଥିବାରୁ ପୋଲିସ୍ ଆଶଙ୍କା କରେ, ସନ୍ତ୍ରାସବାଦୀମାନେ ହିନ୍ଦୁ ଭକ୍ତର ଛଦ୍ମବେଶରେ କୌଣସି ମନ୍ଦିରର ପବିତ୍ରତା ନଷ୍ଟ କରିବା ସହିତ ବହୁ ଧ୍ୱଂସାତ୍ମକ କାର୍ଯ୍ୟ କରିଥାନ୍ତେ । ଏଠାରେ ସ୍ମରଣଯୋଗ୍ୟ, ଅକ୍ଷରଧାମ ମନ୍ଦିରରେ ଏଭଳି ଦେଶଦ୍ରୋହୀମାନେ ନିରୀହ ଭକ୍ତମାନଙ୍କୁ ହତ୍ୟା କରିଥିଲେ । ଅବଶ୍ୟ ସେତେବେଳେ ଅମର ଚୌଧୁରୀମାନେ ତିଳେ ହେଲେ ଦୁଃଖ ପ୍ରକାଶ କରିନଥିଲେ । ସଂଖ୍ୟାଲଘୁମାନଙ୍କର ରକ୍ଷକ ସାଜିଥିବା କଂଗ୍ରେସ ପ୍ରତ୍ୟେକ ଘଟଣାରେ ନରେନ୍ଦ୍ର ମୋଦୀଙ୍କର ଚକ୍ରାନ୍ତ ଦେଖିବାକୁ ପାଇଲା । ପାକିସ୍ଥାନରୁ ପ୍ରକାଶିତ ସମ୍ବାଦପତ୍ର ଜାଭେଦ୍ ଓ ଇଶ୍ରାତ୍‌ଙ୍କୁ ଦୁଇଜଣ ସନ୍ତ୍ରାସବାଦୀ ଏବଂ ସ୍ୱାମୀ ସ୍ତ୍ରୀ ବୋଲି ବର୍ଣ୍ଣନା କରିସାରିଲାଣି ।

ଭାରତବାସୀ ସନ୍ତ୍ରାସବାଦୀ ତଥା ସନ୍ତ୍ରାସବାଦ ପୋଷକମାନଙ୍କ ପ୍ରତି ସାବଧାନ ନହେଲେ ଭବିଷ୍ୟତରେ ଇତିହାସ କେବେ ହେଲେ କ୍ଷମା ଦେବ ନାହିଁ ।

ନିତ୍ୟନୂତନ ୧.୮.୨୦୦୪

# ଋଣଛାଡ ଭେଳିକି

ଲୋକସଭାରେ ବିଗତ ବଜେଟ୍ ଅଧିବେସନରେ କେନ୍ଦ୍ରର ଉପାସରକାର ଘୋଷଣା କଲେ ଯେ ଚାଷୀମାନଙ୍କ ଉପରେ ବକେୟା ଥିବା ୬୦ ହଜାର କୋଟି ଟଙ୍କାର କୃଷି ଋଣ ଛାଡ କରିଦିଆଯିବ । ଜଣେ ବିଶିଷ୍ଟ ଅର୍ଥନୀତିଜ୍ଞ ତଥା ଶୀର୍ଷସ୍ଥାନୀୟ ବ୍ୟୁରୋକ୍ରାଟ୍ ଆମର ପ୍ରଧାନମନ୍ତ୍ରୀ ଅବଶେଷରେ ରାଜନୈତିକ ଟାଉଟରୀ ପାଖରେ ମୁଣ୍ଡ ନୁଆଇଁଲେ । ଆଗକୁ ଭୋଟ୍ ଆସୁଛି । ଚାଷୀମାନଙ୍କର ଭୋଟ୍‌କୁ ହାତେଇବା ପାଇଁ ଋଣ ଛାଡ୍ ଘୋଷଣା କରାଗଲା । ସଂଖ୍ୟାଲଘୁ ଭୋଟ୍ ନିଜ ଆଡକୁ ଟାଣି ନେବାକୁ ବଜେଟ୍‌ରେ ଅଲଗା ବ୍ୟବସ୍ଥା କରାଗଲା । କେବଳ ଗୋଟିଏ ଉଦ୍ଦେଶ୍ୟ-ଦେଶ ପଛେ ଯାଉ, ଭୋଟ୍ ଖଣ୍ଡିକ ଥାଉ ।

ଲାଲୁ ଯାଦବ ଅତୀତରେ ବିହାରର ମୁଖ୍ୟମନ୍ତ୍ରୀ ଥିବାବେଳେ ଏମିତି ଏକ ଭେଳିକି ଦେଖାଇ କର୍ମୀମାନଙ୍କୁ ଦଳୀୟ ଭୋଟରମାନଙ୍କୁ ମାଗଣାରେ ଧୋତି ଓ ଶାଢ଼ି ବାଣ୍ଟି ସମାଲୋଚିତ ହୋଇଥିଲେ । ଯେଉଁମାନେ ଏଭଳି କାର୍ଯ୍ୟ କରୁଛନ୍ତି-ସେମାନେ ତାଙ୍କର ପୈତୃକ ସମ୍ପତ୍ତିରୁ କିମ୍ବା ଦଳୀୟ ପାଣ୍ଠିରୁ ଟଙ୍କାଟିଏ ଦେଇନାହାନ୍ତି । ବରଂ ରାଜକୋଷକୁ ଲୁଣ୍ଠନ କରି ଦାନୀ ବୋଲାଇ ଭୋଟ୍ ହାତେଉଛନ୍ତି । ତେବେ ଥରେ ବାଟ ଛାଡି ଅବାଟରେ ଗଲେ ତା'ର ସୀମା ଆଉ କେହି ନିର୍ଣ୍ଣୟ କରିପାରିବେ ନାହିଁ । ଛାଡ ହୋଇଥିବା ଟଙ୍କାରେ ପ୍ରକୃତରେ ଗରିବ ଚାଷୀ ଉପକୃତ ହେବେ ତ ? ତାହା ସର୍ଭେ କରାଗଲେ ପରିଷ୍କାର ହୋଇଯିବ । ବଡ ବଡ ଭୂମ୍ୟଧିକାରୀ, ବଡ ବଡ କୃଷି ଫାର୍ମ କରିଥିବା ବିଳାସୀ ଧନୀମାନେ ଋଣର ସିଂହଭାଗ ନେଉଛନ୍ତି । ପ୍ରକୃତରେ ସେଇମାନେ ଉପକୃତ ହେବେ ।

ତା' ଛଡା ଋଣ ଛାଡ କରିଦେବାଟା ଗୋଟିଏ ଉଚିତ୍ ପନ୍ଥା ନୁହେଁ । ଭବିଷ୍ୟତରେ ଯେଉଁମାନେ ଋଣ ନେବେ ସେମାନେ ପୁଣି ଥରେ ଛାଡ ପାଇବା ଆଶାରେ ଆଉ ଟଙ୍କା ଶୁଝିବେ ନାହିଁ । ଏହା ଧ୍ରୁବ ସତ୍ୟ । ବରଂ ଋଣ ଛାଡ ପରିବର୍ତ୍ତେ ଖୁବ୍ କମ୍ ସୁଧରେ ଚାଷୀଙ୍କୁ ଋଣ ଦିଆଯାଇଥିଲେ, ସେମାନେ ବାସ୍ତବରେ ଉପକୃତ ହୋଇଥାନ୍ତେ ।

କେତେକ ଛୋଟ ଛୋଟ ଜଳସେଚନ ଯୋଜନା କାର୍ଯ୍ୟକାରୀ କରିଥିଲେ କିମ୍ବା ସୁଲଭ ମୂଲ୍ୟରେ ପ୍ରକୃତ ଚାଷୀଙ୍କୁ ପମ୍ପସେଟ୍ ଯୋଗାଇ ଦେଇଥିଲେ ଦେଶର ଅର୍ଥନୀତି ମଜଭୁତ ହୋଇଥାନ୍ତା । ''ଋଣ କୃତ୍ୱା ଘୃତଂ ପିବେତ୍'' ଅଭ୍ୟାସ ସେମାନେ ପରିତ୍ୟାଗ କରିଥାନ୍ତେ । ଏହା ଆମର ବିଜ୍ଞ ପ୍ରଧାନମନ୍ତ୍ରୀ ଭଲ ଭାବରେ ଜାଣନ୍ତି ।

ସମସ୍ତ ବିଷୟ ଅବଗତ ଥାଇ ଶସ୍ତା ଲୋକପ୍ରିୟତା ହାସଲ କରିବାକୁ ଯେଉଁ ଉପାୟ ଗ୍ରହଣ କରାଗଲା, ତାହା ବର୍ତ୍ତମାନ ତାଙ୍କ ଦଳ ବିରୁଦ୍ଧରେ ଯିବା ବିଚିତ୍ର ନୁହେଁ । ବିରୋଧୀ ଦଳ ଲୋକଙ୍କୁ ବୁଝାଇଲେଣି–ଏଟଙ୍କା ତାଙ୍କର ଏବଂ ତାଙ୍କ ପାଇଁ ଖର୍ଚ୍ଚ ହେଲା । ସେଥିରେ କଂଗ୍ରେସର କିମ୍ବା ଉପା ସରକାରର ପଇସାଟିଏ ନାହିଁ । ଥୋକେ ଉତ୍ପାଦନକାରୀଙ୍କ ଠାରୁ ନିର୍ବାଚନ ପାଇଁ ବିପୁଳ ଚାନ୍ଦା ନେଇ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷର ଅହେତୁକ ଭାବେ ଦର ବଢ଼ାଇ ସରକାର ଗରିବ ଚାଷୀମାନଙ୍କୁ ଜନସାଧାରଣଙ୍କୁ ଭେଳିକି ଦେଖାଇଛନ୍ତି ।

ଏଭଳି ବ୍ୟାଖ୍ୟା ମଧ୍ୟ ନିତାନ୍ତ ଅମୂଳକ ନୁହେଁ । ଗୋଟିଏ ବର୍ଷ ଭିତରେ ଅତ୍ୟାବଶକୀୟ ଜିନିଷ ପତ୍ର ଦରଦାମ ପ୍ରାୟ ୨ ଗୁଣ ବଢ଼ିଲା କେମିତି ? କୃଷକମାନେ ସେମାନଙ୍କର ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ କ'ଣ ଏହି ଦେଶ ଭିତରୁ କିଣୁ ନାହାନ୍ତି କି ? ତେଣୁ ୫ ଦେଇ ୨୫ ନେବାର-ଫନ୍ଦିରେ କାହାର ଲାଭ କେତେ କ୍ଷତି କେତେ ତାହା ଭବିଷ୍ୟତ ହିଁ କହିବ ।

ମାତ୍ର ସର୍ବତୋ ଭାବେ ଏ ପ୍ରକାର ମନୋଭାବ ଦେଶପକ୍ଷରେ ଆଦୌ ଶଭଙ୍କର ନୁହେଁ ।

ସାହାଣମେଳା – ୧୭.୪.୨୦୦୫

# ଭ୍ରଷ୍ଟ ରାଜନୀତିର ନୂଆପିଢ଼ି

ରାଜନୀତିରେ ଭ୍ରଷ୍ଟାଚାର ଦିଗରୁ ବୋଧହୁଏ ଭାରତ ବିଶ୍ୱରେ ଅନ୍ୟାନ୍ୟ ବହୁତ ଦେଶକୁ ପଛରେ ପକାଇଦେବ । ଏଠାରେ ଗଣତନ୍ତ୍ର ଶାସନ ନାମକୁ ମାତ୍ର ଚାଲିଛି । ରାଜତନ୍ତ୍ର ଢ଼ାଞ୍ଚାର ଏ ପର୍ଯ୍ୟନ୍ତ ପରିବର୍ତ୍ତନ ହୋଇନାହିଁ । ରାଜନେତାମାନେ ଦୈନିକ ନୂଆ ନୂଆ ବାଟରେ ପ୍ରତାରଣା ଓ ଭ୍ରଷ୍ଟାଚାରର ପୃଷ୍ଠପୋଷକତା କରୁଛନ୍ତି ।

ପ୍ରାୟ ସକଳ ଭ୍ରଷ୍ଟାଚାରର ଜନନୀ କଂଗ୍ରେସ ଦଳ ଓ ସେହି ଦଳର ଛାମୁଆ ନେତାମାନେ । ଇନ୍ଦିରା ଗାନ୍ଧିଙ୍କ ସମୟରୁ କଂଗ୍ରେସ ତାର ବିଗତ ଦିନର ଗୌରବକୁ ତ୍ୟାଗ କରି କ୍ଷମତାକୁ ଜାବୁଡ଼ି ଧରିବାର ନୂଆ ପଦ୍ଧତି ଗ୍ରହଣ କଲା । ଉପାୟ ଯାହା ହେଉନା କାହିଁକି ଜିତାପଟ ହାସଲ କରିବା ମୂଳ ଲକ୍ଷ୍ୟ ହେଲା । ଆହ୍ଲାବାଦ୍ ହାଇକୋର୍ଟଙ୍କ ରାୟ ସତ୍ତ୍ୱେ କ୍ଷମତାରେ ରହିବାକୁ ଦେଶରେ ଜରୁରୀକାଳୀନ ବ୍ୟବସ୍ଥା ଗ୍ରହଣ କରାଗଲା । ଇନ୍ଦିରା ଗାନ୍ଧିଙ୍କୁ ଏ ଦେଶର ଜନତା ଚାହେଁ-ସେ ଏ ଦେଶ ଜନତାର ନେତ୍ରୀ, ଇନ୍ଦିରା ଇଜ ଇଣ୍ଡିଆ-ସେ କୌଣସି କୋର୍ଟ କଚେରୀ ଦ୍ୱାରା ପ୍ରଧାନମନ୍ତ୍ରୀ ପଦ ପାଇନାହାନ୍ତି- ଏହି ଧାରଣାକୁ ସର୍ବସାଧାରଣରେ ବଦ୍ଧମୂଳ କରାଇବାକୁ ଦୈନିକ ଲକ୍ଷ ଲକ୍ଷ ଲୋକଙ୍କୁ ଦିଲ୍ଲୀକୁ ବୁହାଯାଇ ସଭା ସମିତିମାନ କରି ତାଙ୍କର ଲୋକପ୍ରିୟତାକୁ ମଜଭୁତ କରିବାର ଅସତ୍ ପନ୍ଥା ଗ୍ରହଣ କରାଗଲା ।

କଂଗ୍ରେସ ସରକାରଙ୍କ ଇସାରାରେ ଏକଦା ଉତ୍ତର ପ୍ରଦେଶର ରାଜ୍ୟପାଳ ରମେଶ ଭଣ୍ଡାରୀ ଯେଉଁ ରାଜନୈତିକ ଖେଳ ଖେଳିଲେ, ତାହା ନିତାନ୍ତ ଅରୁଚିକର ତଥା କ୍ଷମତାର ଅପପଯୋଗର ନଗ୍ନ ଉଦାହରଣ ଥିଲା ।

ସଦ୍ୟତମ ଉଦାହରଣ ସୃଷ୍ଟି ହେଲା ଆନ୍ଧ୍ରରେ । ସେପ୍ଟେମ୍ବର ୨ ତାରିଖରେ ରାଜଶେଖର ରେଡ୍ଡୀଙ୍କ ଆକସ୍ମିକ ଦୁର୍ଘଟଣାରେ ମୃତ୍ୟୁ ହେବାପରେ ବାରମ୍ବାର ସମ୍ବାଦ ପ୍ରକାଶ ପାଇଲା-ପ୍ରଥମେ ୫୯ ଜଣ ପୁଣି ପରେ ଶତାଧିକ ଲୋକ ତାଙ୍କ ବିୟୋଗରେ ହୃଦ୍‌ଘାତରେ କିମ୍ବା ଆତ୍ମହତ୍ୟା କରି ପ୍ରାଣ ତ୍ୟାଗ କଲେ । ବୈଦ୍ୟୁତିକ ଗଣମାଧ୍ୟମରେ ଏ ଭାଣ୍ଡାମୀ ସାରାଦିନ ଚାଲିଲା । ସେହି ସମ୍ବାଦ ଦେଖି ସେହିଦିନ ମୋର ଜଣେ ବନ୍ଧୁ

ୱାଇ.ଏସ. ଆରଙ୍କ ଲୋକ ପ୍ରିୟତାରେ ଆଶ୍ଚର୍ଯ୍ୟଭାବ ପ୍ରକଟ କରିବାରୁ ସେ ସବୁକୁ ତାହା ମିଛ ଓ ଉଦ୍ଭଟ ସମ୍ବାଦ ବୋଲି ମୁଁ କହିଥିଲି । ମୋର ବକ୍ତବ୍ୟ ଥିଲା-ସେଦିନ ସମଗ୍ର ଆନ୍ଧ୍ରପ୍ରଦେଶରେ ଯେତେ ଲୋକ ଯେଉଁଭଳି ଭାବେ ମଲେ ବି ତାକୁ ୱାଇ.ଏସ.ଆରଙ୍କ ବିୟୋଗରେ ବୋଲି ମିଛ ପ୍ରଚାର ଛଡା ଆଉ କିଛି ନୁହେଁ ।

ମୋ ବନ୍ଧୁ ପଚାରିଲେ-ଆପଣ କିଭଳି ଏପରି କଥା ଏତେ ଦୃଢ଼ତାର ସହିତ କହିପାରୁଛନ୍ତି ?

ମୁଁ ତାଙ୍କୁ ପଚାରିଲି-ରାଜଶେଖରଙ୍କ ପତ୍ନୀ ଆତ୍ମହତ୍ୟା କରିଥିବାର ଖବର ଅଛି କି ?

ଉତ୍ତର-ନା ।

ତାଙ୍କର କେହି ପୁତ୍ର ଆତ୍ମହତ୍ୟା କରିବାର ଶୁଣିଲେ କି ?

ଉତ୍ତର - ନା ।

ମୁଁ କହିଲି- ତାହେଲେ ତାଙ୍କ ପତ୍ନୀ ଓ ପୁତ୍ରଙ୍କ ଠାରୁ ଦେଶରେ କ'ଣ ତାଙ୍କଠାରୁ ଅଧିକ କେହି ତାଙ୍କର ନିଜ ଲୋକ ଥିଲେ ନା ଅଧିକ ଉପକୃତ ହୋଇଥିଲେ ? ଏହା କେବଳ ତାଙ୍କ ପତ୍ନୀ ବା ପୁଅର ମୁଖ୍ୟମନ୍ତ୍ରୀ ପଦବୀ ଦଖଲ କରିବାକୁ ରାଜନୈତିକ ଚାଲବାଜୀ । ବାପା ମରି ପଡ଼ିଛି, ଅଥଚ ପୁଅ ମୁଖ୍ୟମନ୍ତ୍ରୀ ହେବାକୁ ଟଙ୍କା ଖର୍ଚ୍ଚ କରି ମାୟାଜାଲ ସୃଷ୍ଟି କରୁଛି ।

ପରବର୍ତ୍ତୀ କାଳରେ ଏହାର ସତ୍ୟତା ଜଣା ପଡ଼ିଗଲା । ୱାଇ.ଏସ.ଆରଙ୍କ ସାଂସଦ ପୁତ୍ର ଜଗନ ନିଜର ଜଗନ ସେନା ଦ୍ୱାରା ସେଦିନ ସାରା ରାଜ୍ୟରେ ମରିଥିବା ଲୋକମାନଙ୍କର ଆତ୍ମୀୟଙ୍କ ଠାରୁ ୱାଇ.ଏସ.ଆରଙ୍କ ବିୟୋଗରେ ପ୍ରାଣତ୍ୟାଗ କଲେ ବୋଲି ଲେଖାଇ ଆଣିଥିଲେ ଓ ତାହା ପ୍ରଚାରିତ ହୋଇଗଲା ।

ଦୁଇଜଣ ଟି.ଡି.ପି. କର୍ମୀଙ୍କ ମୃତ୍ୟୁକୁ ଏହି ହିସାବ ଭିତରେ ରଖି ପ୍ରଚାର କରାଯିବାରୁ ତାର ପ୍ରତିବାଦ ହେଲା ଓ ପ୍ରକୃତ ସତ୍ୟ ପରେ ଜଣା ପଡ଼ିଲା । ରାଜନୀତିରେ ପାଦ ଦେଉ ଦେଉ ଜଗନ୍ ଯେଉଁ ଡ୍ରାମା ଆରମ୍ଭ କଲେ-ଗୁଣ୍ଡାଦଳ ପୋଷି ତାଙ୍କ ମାଧ୍ୟମରେ କଳାକୁ ଧଳା କରିବା ରାଜନୀତିର ଏହା ଆଉ ଏକ ନମୁନା । ଏଥିପ୍ରତି ସବୁଦଳ ସାବଧାନ ରହିବା ନିହାତି ଜରୁରୀ ।

ସାହାଣମେଲା - ୧୫.୧୦.୨୦୦୫

# ଭୂତ ଗାଲରେ ଚାପୁଡା

ଆମେ ପିଲାବେଳେ ପଢ଼ିଥିଲୁ-ଜଣେ ବିଦ୍ୟାର୍ଥୀ ଗୁରୁଙ୍କୁ କହିଲେ ଯେ ରାସ୍ତାରେ ତାକୁ ଗୋଟାଏ ଭୂତ ଓଗାଳୁଛି । ଗୁରୁ ତାକୁ କହିଲେ- ତୁ ହାତରେ କଳାବୋଳି ଘରୁ ବାହାରିବୁ । ଯେତେବେଳେ ଭୂତ ତତେ ଓଗାଳିବ, ତା ଗାଲରେ ଗୋଟାଏ ଚାପୁଡା ଦେଇ ମୋ ପାଖକୁ ଚାଲି ଆସିବୁ । ତାପରଦିନ ସତକୁ ସତ ପିଲାଟି ସେହିଭଳି କରିଥିଲା ଓ ଗୁରୁଙ୍କ ପାଖରେ ପହଞ୍ଚିଲା । ଗୁରୁ ତାକୁ ଗୋଟିଏ ଦର୍ପଣରେ ମୁହଁ ଦେଖିବାକୁ କହିଲେ-ପିଲାଟି ଦେଖିଲା ତା ନିଜ ଗାଲରେ ପାଞ୍ଚଟା ଆଙ୍ଗୁଠିର କଳାଦାଗ ।

ଉମାଭାରତୀ ଭୂତକୁ ଚାପୁଡା ମାରିବା ପରେ ବର୍ତ୍ତମାନ ସୋନିଆଙ୍କ ଗାଲରେ ସେ ଚାପୁଡାର ଦାଗ ପରିଷ୍କାର ଦେଖାଗଲାଣି ଅନେକ ମତ ଦିଅନ୍ତି ।

ସୋନିଆ ଗାନ୍ଧିଙ୍କୁ ପ୍ରଧାନମନ୍ତ୍ରୀ ହେବାରୁ ନିବୃତ୍ତ କରାଇବାରେ ମୁଖ୍ୟ ଭୂମିକା ଉମାଭାରତୀ ଏବଂ ସୁଷମାସ୍ୱରାଜ ଗ୍ରହଣ କରିଥିବାରୁ ସୋନିଆ ଅପଦସ୍ତ ଆଶଙ୍କା କରି ପ୍ରଧାନମନ୍ତ୍ରୀ ହେବାକୁ ସାହସ କଲେ ନାହିଁ । ତାକୁ ସେ କଂଗ୍ରେସ ଦଳ ତ୍ୟାଗର ଆଖ୍ୟା ଦେଇ ଯେତେ ବାହା ବାହା ନେଲେ ବି ତାଙ୍କର ପରବର୍ତ୍ତୀ କାର୍ଯ୍ୟାବଳୀ ସେ ତ୍ୟାଗକୁ ପରିପୁଷ୍ଟ କରୁନାହିଁ ! ସେହିଦିନରୁ ଉମାଭାରତୀଙ୍କୁ ପାନେ ଦେବା ପାଇଁ ସୋନିଆ ଉପାୟ ଖୋଜୁଥିଲେ ବୋଲି ପର୍ଯ୍ୟବେକ୍ଷକ ମହଲର ମତ । ଶିବୁ ସୋରେନଙ୍କ ଲୁଚିବା ନାଟକପରେ ଜେଏମ୍ ଏମ୍, ଲାଲୁ ଯାଦବ ଏବଂ ସୋନିଆଙ୍କ ଇଙ୍ଗିତରେ ଉମାଭାରତୀ ଏବଂ ଅନ୍ୟାନ୍ୟ ଏନ.ଡ଼ି.ଏ ନେତାମାନଙ୍କୁ ହଇରାଣ କରିବାକୁ କଂଗ୍ରେସ ଶାସିତ ରାଜ୍ୟମାନଙ୍କରେ ଉପାୟ ଖୋଜାଚାଲିଲା ।

୧ ୯ ୯ ୨ ମସିହାରେ କର୍ଣ୍ଣାଟକର ଇଦଗା ମଇଦାନରେ ବାଙ୍ଗରାପା ସରକାର କେତେକ ମୌଳବାଦୀ ସଂଖ୍ୟାଲଘୁ ଗୋଷ୍ଠୀଙ୍କୁ ସନ୍ତୁଷ୍ଟ କରିବାକୁ ଜାତୀୟ ପତାକା ଉତ୍ତୋଳନକୁ ନିଷେଧ କଲେ । ସେ ଆଦେଶକୁ ସେତେବେଳେ ବିଜେପି ନେତାମାନେ

ଚ୍ୟାଲେଞ୍ଜ କରି କହିଥିଲେ- ଭାରତର ପ୍ରତ୍ୟେକ ଇଞ୍ଚ ଜାଗାରେ ସ୍ୱାଧୀନତା ଦିବସ ଦିନ ଜାତୀୟ ପତାକା ଉତ୍ତୋଳନ କରିବା ଅଧିକାର ଆମର ଅଛି । ସେଦିନ ପତାକା ହାତରେ ଧରି ଉମାଭାରତୀ ଇଦଗା ମଇଦାନରେ ପୋଲିସ୍‌ର ନିଷେଧାଦେଶକୁ ନମାନି ପ୍ରବେଶ କରିବାରୁ ତାଙ୍କୁ ଆରେଷ୍ଟ କରାଯାଇଥିଲା ଏବଂ ଗୋଟିଏ ଆଇନ ଅମାନ୍ୟ ଧାରାରେ କେଶ୍ କରାଯାଇଥିଲା । ତା ପରେ ପରେ ସେଠାରେ ସଂଖ୍ୟାଲଘୁଙ୍କ ଦ୍ୱାରା ପୋଡାଜଳା କରାଗଲା । ପୋଲିସ୍ ସେଥିପାଇଁ ଗୁଳି ଚଳାଇଲା ।

ସରକାର ଲୋକଙ୍କୁ ଭୂଆଁ ବୁଲାଇବାକୁ ଗୋଟିଏ ତଦନ୍ତ କମିଶନ୍ ବସାଇଲେ । ତଦନ୍ତ କମିଶନ୍ ତାଙ୍କ ରିପୋର୍ଟରେ ପୋଲିସର ଭୁଲ ପଦକ୍ଷେପକୁ ନିନ୍ଦା କରିଛନ୍ତି । ସେହି କେଶ୍‌କୁ ଏସ.ଏମ.କ୍ରିଷ୍ଣା ସରକାର ୨୦୦୨ ମସିହାରେ କ୍ୟାବିନେଟ୍ ନିଷ୍ପତ୍ତି ଅନୁସାରେ କୋର୍ଟରୁ ପ୍ରତ୍ୟାହାର ନ କରିବାକୁ ଆବେଦନ କଲେ । ମାତ୍ର ବର୍ତ୍ତମାନର ଧରମ୍ ସିଂ ସରକାର ସୋନିଆଙ୍କ ଇଙ୍ଗିତରେ ସେ ପ୍ରତ୍ୟାହାର ଆବେଦନକୁ ପ୍ରତ୍ୟାହାର କରିବାକୁ କୋର୍ଟକୁ ପ୍ରାର୍ଥନା କରିବା ଫଳରେ ଉମାଭାରତୀଙ୍କ ନାମରେ ଜାମିନ ବିହୀନ ପରଓ୍ୱାନା ବାହାରିଲା । କେବଳ ସେତିକି ନୁହେଁ- ମୂଳ କେଶ୍‌ରେ ଦଙ୍ଗା ପାଇଁ ଉସ୍‌କାଇବା ନଥିବାବେଳେ ପରେ ଏହା ଯୋଡା ଯାଇଥିବାର ଉମାଙ୍କ ଓକିଲ ଅଭିଯୋଗ କରିଛନ୍ତି । ଫଳତଃ ଭାରତର ଜଣେ ଅଗ୍ନିବର୍ଷୀ ନେତ୍ରୀ ମୁଖ୍ୟ ମନ୍ତ୍ରୀତ୍ୱରୁ ଇସ୍ତଫା ଦେଇ କୋର୍ଟରେ ଆତ୍ମସମର୍ପଣ କରିବାକୁ ବାଙ୍ଗାଲୋର ଯାତ୍ରା କଲେ ।

ସେତେବେଳକୁ ଉପାର ଚକ୍ରାନ୍ତକାରୀ ନେତା ଲାଲୁଯାଦବ ପରାମର୍ଶ ଦେଲେ- କର୍ଣ୍ଣାଟକ ସୀମାରେ ପହଞ୍ଚିବା ମାତ୍ରେ ଉମାଙ୍କୁ ଗିରଫ୍ କରାଯାଉ । ମାତ୍ର ଉମାଙ୍କ ସହିତ ଲକ୍ଷ ଲକ୍ଷ ଲୋକଙ୍କ ପଟୁଆର ଦେଖି ଭୀରୁ ଧରମ ସିଂ ତାଙ୍କୁ ଆରେଷ୍ଟ କରିବାକୁ ସାହସ କଲେ ନାହିଁ । ଲାଲୁ କହିଲେ-ବିଜେପି ସହିତ କଂଗ୍ରେସ ସାଜିସ୍ କରିଛି ।

ଏଠାରେ ସ୍ମରଣ କରାଯାଇପାରେ ଯେ ଶ୍ରୀମତୀ ଇନ୍ଦିରା ଗାନ୍ଧି ଗୋଟିଏ ଆଇନ ପ୍ରଣୟନ କରିଥିଲେ ଯେ ଜାତୀୟପତାକାକୁ ଅବମାନନା କଲେ କଠୋର ଦଣ୍ଡବିଧାନ କରାଯିବ । ବର୍ତ୍ତମାନ ସମଗ୍ର ଘଟଣାଟି ଉଚ୍ଚ ନ୍ୟାୟାଳୟକୁ ଗଲେ ଜାତୀୟ ପତାକାକୁ କିଏ ଅବମାନନା କରିଛି ତା ଉପରେ ଖୋଳତାଡ ହେବ । ଗର୍ବ ଓ ଗୌରବର ଚିହ୍ନ ଦେଶର ଜାତୀୟ ପତାକା ଉଡାଇବା ଲୋକ ଦୋଷୀ କି ? ଜାତୀୟପତାକା ଉଡାଇବାକୁ ନିଷେଧ କରିଥିବା ସରକାର ଦୋଷୀ କି ? ଜାତୀୟପତାକା ଉଡାଇ ନଦେବାରୁ ଜିଦ୍‌କରି ଗଣ୍ଡଗୋଳ ଭିଆଉଥବା ସଂଖ୍ୟାଲଘୁ ମୌଳବାଦୀମାନେ ଦୋଷୀ କି ? ଏ ସମସ୍ତ ପ୍ରଶ୍ନର

ଉତ୍ତର ସରକାରଙ୍କ ପକ୍ଷରେ ନଯିବାର ଆଶଙ୍କାରେ ଆତଙ୍କିତ ଧରମ ସିଂ ବର୍ତ୍ତମାନ କହୁଛନ୍ତି ଯେ କ୍ୟାବିନେଟ୍‌ରୁ କେଶ୍ ପ୍ରତ୍ୟାହାର ନିଷ୍ପତ୍ତି ଏବେ ବି ବଳବତ୍ତର ରହିଛି ।

ଯଦି ସରକାର କେଶ୍ ପ୍ରତ୍ୟାହାର ପାଇଁ ପ୍ରକୃତରେ ଆଗ୍ରହୀ ଓ ବ୍ୟଗ୍ର, ତେବେ ଏବେ ତାମସା ଲାଗିଲା କାହିଁକି ?

ଏ ସମସ୍ତ ନାଟର ପଛରେ ସୋନିଆ ଗାନ୍ଧିଙ୍କର ଇଙ୍ଗିତ କ୍ରମଶଃ ସ୍ପଷ୍ଟ ହୋଇଯାଉଛି । କାରଣ କଂଗ୍ରେସ ଦଳରେ ସୋନିଆଙ୍କ ବିନା ଅନୁମତିରେ କେହି ଏକ ଯିବା ନିଷେଧ ଥିବାବେଳେ ଏତେବଡ ଘଟଣାର ଅସଲ ସୂତ୍ରଧାରଙ୍କ ନୀରବତା ତାଙ୍କର ସଂପୃକ୍ତିକୁ ପଦାରେ ପକାଇ ଦେଉଛି ।

ମତ ପରିବର୍ତ୍ତନ କରିବାକୁ ବାଧ୍ୟ ହୋଇ କର୍ଣ୍ଣାଟକ ସରକାର ଗ୍ରହଣ କଲେ ଏବଂ ଉମାଭାରତୀ ସସମ୍ମାନ ଜେଲ୍‌ରୁ ମୁକ୍ତ ହେଲେ ।

ନିତ୍ୟନୂତନ

# ସି.ଏମ.ଙ୍କ ପି.ଏମ.

ଏଠାରେ ସି.ଏମ. କହିଲେ ମୁଖ୍ୟମନ୍ତ୍ରୀ ମାତ୍ର ପି.ଏମ. କହିଲେ ପ୍ରଧାନମନ୍ତ୍ରୀ ନୁହନ୍ତି-ପ୍ୟାରି ମହାପାତ୍ର । ଅବସରପ୍ରାପ୍ତ ବରିଷ୍ଠ ଆଇ.ଏ.ଏସ. ଅଫିସର ପ୍ୟାରୀ ମୋହନ ମହାପାତ୍ରଙ୍କୁ ସମସ୍ତେ ଜାଣନ୍ତି । ଏବେ କେତେକ ସମ୍ବାଦପତ୍ରରେ ପ୍ୟାରୀ ବାବୁଙ୍କ ବିଷୟରେ ଅସୂୟା ପ୍ରସୂତ ମନ୍ତବ୍ୟମାନ ଦିଆଯାଉଥିବାର ଦେଖାଯାଉଛି । କେତେକ ମନ୍ତ୍ରୀ ଓ ବିଧାୟକ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ପ୍ୟାରୀ ବାବୁଙ୍କ ସହ ସଂପୃକ୍ତ କରି କଟୂକ୍ତି ପ୍ରୟୋଗ କରୁଥିବା ମଧ୍ୟ ଦେଖାଯାଉଛି ।

ଜଣେ ଖାଣ୍ଟି ନିର୍ମଳ ଚରିତ୍ର ବ୍ୟୁରୋକ୍ରାଟ୍ ହିସାବରେ ପ୍ୟାରୀ ବାବୁଙ୍କର ଖୁବ୍ ସୁନାମ ଅଛି । ଅତୀତରେ ୧୯୯୨ ମସିହାରେ ବିଜୁବାବୁ ମୁଖ୍ୟମନ୍ତ୍ରୀ ଥିବାବେଳେ ଏହି ପି.ଏମ.ଙ୍କୁ ତାଙ୍କର ମୁଖ୍ୟ ପରାମର୍ଶଦାତା ରୂପେ ମନୋନୀତ କରିଥିଲେ । ସେତେବେଳେ ମଧ୍ୟ ଡ଼ହରା, କ୍ଷମତା-ସର୍ବସ୍ୱ, ରାଜସ୍ୱ ଚୋରମାନଙ୍କର ଖୁବ୍ ଗାତ୍ରଦାହ ହେଉଥିଲା । ମାତ୍ର ବିଜୁବାବୁଙ୍କ ତୁଙ୍ଗ ବ୍ୟକ୍ତିତ୍ୱକୁ ଭୟକରି ସେମାନେ ଚୁପ୍ ରହିଥିଲେ । ସେହିମାନଙ୍କ ମଧ୍ୟରୁ କେତେକ ଆଜି ବିଜୁ-ନନ୍ଦନ ସି.ଏମଙ୍କ ପାଖରେ ପୁନଶ୍ଚ ପି.ଏମ.ଙ୍କୁ ଦେଖି ରକ୍ତ ଚାଉଳ ଚୋବାଉଛନ୍ତି । ସି.ଏମ.ମାନେ ନିଜେ ଚାହୁଁଥିବା କାମ ସବୁ ଅଫିସିଆଲ ପ୍ରୋସିଡିଓର୍‌ରେ କରାଇବାପାଇଁ ଉପଯୁକ୍ତ ମାର୍ଗଦର୍ଶନ ନିମନ୍ତେ ନିର୍ମଳ ଚରିତ୍ରର ତଥା ଦକ୍ଷ ବ୍ୟୁରୋକ୍ରାଟ୍‌ଙ୍କ ପରାମର୍ଶ ଗ୍ରହଣ କରିବା ଅସମୀଚୀନ ନୁହେଁ ।

ସେଥିପାଇଁ ମୁଖ୍ୟମନ୍ତ୍ରୀମାନେ ନିଜେ ସଦ୍‌ଗୁଣ ସଂପନ୍ନ ହୋଇଥିବା ଆବଶ୍ୟକ । ନଚେତ୍ ଅଫିସରମାନେ ମୁଖ୍ୟମନ୍ତ୍ରୀଙ୍କ ପାଖରେ ରହିବାକୁ ଅନିଚ୍ଛା ପ୍ରକାଶ କରିବା ସ୍ୱାଭାବିକ । କାରଣ ନିର୍ମଳ ଅଫିସରଙ୍କୁ ପାଖରେ ରଖି ଦୁର୍ନୀତିପୁଷ୍ଟ ମନ୍ତ୍ରୀମାନେ ନିଜ ପାଚିଲା କ୍ଷେତରେ ପାଣିପୂରାଇବାକୁ ଆଦୌ ଚାହିଁବେ ନାହିଁ । ସେଭଳି ନିଜେ ନଖାଇ କାହାକୁ ଖୁଆଇ ନଦେବା ଅଫିସରମାନେ ଶୁଦ୍ଧ-ସୁବର୍ଣ୍ଣ ହେଲେ ହେଁ କେତେକ ବିଭାଗରେ ଆଜିର ପରିପ୍ରେକ୍ଷୀରେ ସେମାନେ ଅଲୋଡା, ଅପାଙ୍‌କ୍ତେୟ । ସୁଖରାମ

ଏବଂ ଲାଲୁଯାଦବମାନେ ରାଜକୋଷରୁ ତାଙ୍କର ପୈତୃକ ସମ୍ପତ୍ତିଭାବେ କିଭଳି ଲୁଣ୍ଠନ କରନ୍ତି ଓ ସିବିଆଇ ଜାଲରେ ପଡ଼ି ଛଟପଟ ହେଲେ ହେଁ ଜନତା ସମ୍ମୁଖରେ ଗାଲୁ ଭୁରୁଡି ମାରନ୍ତି, ଆଜି ସମଗ୍ର ଭାରତବାସୀ ଓ ବିଶ୍ୱବାସୀ ଦେଖୁଛନ୍ତି ଏସବୁ ଘଟଣା, ବିଘଟଣାଗୁଡିକୁ ।

ଶୁଣାଯାଏ ଏକଦା ପି.ଏମ. ବାଣିଜ୍ୟକର ବିଭାଗର କମିଶନର ଥିବବେଳେ କେତେକ ବିକ୍ରିକର ପରିଦର୍ଶକ ଚାକିରି ପାଇଁ ବିଜ୍ଞାପନ ବାହାରିଲା । ସେତେବେଳ କମିଶନର ସେହି ପରୀକ୍ଷା ପରିଚାଳନା କରି ନିଯୁକ୍ତି ଦେଉଥିଲେ । ତତ୍କାଳୀନ ଅର୍ଥମନ୍ତ୍ରୀ ବିପୁଳ ଅର୍ଥ ସଂଗ୍ରହ କରି ପି.ଏମ.ଙ୍କୁ ଅନୁରୋଧ କଲେ କି ତାଙ୍କର କେତେଜଣ ନିଜର ଲୋକ ଯେପରି ନିଯୁକ୍ତି ପାଆନ୍ତି ସେ କଥା ଦେଖିବେ । ସେମାନଙ୍କର ରୋଲ୍‌ନମ୍ବର ମଧ୍ୟ କୁଆଡେ ଡାକି ଦେଲେ । ପି.ଏମ. ସେହି ରୋଲ୍ ନମ୍ବର ଖାତାସବୁ ବାହାରକରି ଉପରେ ଲାଲ୍ ସ୍ୟାହିରେ ଲେଖିଦେଲେ Rejected for cauvansing through Minister । ମନ୍ତ୍ରୀ ଯେତେବେଳେ ଜାଣିଲେ ଯେ ସେ ଦେଇଥିବା ରୋଲ୍‌ନମ୍ବର କୌଣସି ପିଲା ମୌଖିକ ପରୀକ୍ଷା ପାଇଁ ମଧ୍ୟ ଉପଯୁକ୍ତ ବିବେଚିତ ହୋଇନାହାନ୍ତି, ସେ ପି.ଏମ.ଙ୍କ ଉପରେ କ୍ଷୁବ୍ଧ ହେଲେ । ସି.ଏମ.ଙ୍କୁ ଜଣାଇଲେ ଯେ ପି.ଏମ.ଙ୍କୁ କମିଶନରରୁ ନ ହଟାଇଲେ ସେ ମନ୍ତ୍ରୀପରିଷଦରୁ ଇସ୍ତଫା ଦେବେ । ପି.ଏମ.ଙ୍କର ହଠାତ୍ ବଦଳି ଆଦେଶ ଆସିଲା । ମାତ୍ର ଦାୟିତ୍ୱ ହସ୍ତାନ୍ତର ପୂର୍ବରୁ ପି.ଏମ. ମୌଖିକ ପରୀକ୍ଷା କରାଇ ନିଯୁକ୍ତି ପତ୍ରସବୁ ଡାକରେ ପଠାଇ ଦେଇଥିଲେ । ଫଳତଃ ସେ ବର୍ଷ ବହୁ ମେଧାବୀ ପିଲା ନିଯୁକ୍ତି ପାଇ ପାରିଲେ । କମିଶନର ଥିବାବେଳେ ସେହି ବିଭାଗର କର୍ମଚାରୀଙ୍କ ଠାରୁ ଶୁଣାଯାଏ ସେ ନିଜର ଖାଦ୍ୟ ଟିଫିନ୍ କେରିଅର୍ ଘରୁ ନେଇ ଥାଆନ୍ତି, ନିଜେ ଖାଇ ଟିଫିନ୍ କେରିଅର୍ ଧୋଇ ନିଜ ହାତରେ ରଖନ୍ତି । ତେଣୁ ସର୍କିଟ୍ ହାଉସରେ ହଜାର ହଜାର ଟଙ୍କା ଖର୍ଚ୍ଚ ହେବାର ପ୍ରଶ୍ନ ନଥାଏ । କିମ୍ବା ସର୍କିଟ୍ ହାଉସକୁ ଯିବାକୁ କାହାକୁ ଅନୁମତି ନଥାଏ । ତାଙ୍କର ସମାଲୋଚକମାନଙ୍କର ଚରିତ୍ରରେ ଏତିକି ନିର୍ମଳତା ଅଛି କି ?

ଶିକ୍ଷା ବିଭାଗରେ ସଚିବ ଥିବାବେଳେ ସେ ତତ୍କାଳନ ଶିକ୍ଷାମନ୍ତ୍ରୀଙ୍କ ବିଷ ଦୃଷ୍ଟି ରେ ପଡ଼ିଥିଲେ । ଶୁଣାଯାଏ ଶିକ୍ଷାମନ୍ତ୍ରୀଙ୍କ ସୁପୁତ୍ର ପ୍ରଚୁର ଅର୍ଥ ସଂଗ୍ରହ କରି ଖୁବ୍ ହଟଚମଟ କରିବା ଚେଷ୍ଟାରେ ପି.ଏମ.ଙ୍କୁ ପିତାମାତାଙ୍କ ଦ୍ୱାରା ପ୍ରଭାବିତର କରି ସ୍ୱାର୍ଥ ହାସଲ କରିବାରେ ବିଫଳ ହୋଇଥିଲେ ।

୧୯୯୨ ମସିହାରେ ଏହି ଶୀର୍ଷକରେ ଏହି ପତ୍ରିକାରେ ଗୋଟିଏ ଲେଖା ସ୍ଥାନିତ ହୋଇଥିଲା ।

ତେଣୁ ଜଣେ ସଚ୍ଚୋଟ ଓ ନିଷ୍ଠାପର ବ୍ୟକ୍ତି ହିସାବରେ ପ୍ୟାରୀମୋହନ ବହୁ ଲୋକଙ୍କର ଯେପରି ବିଶ୍ୱାସଭାଜନ ହୋଇଛନ୍ତି ସେହିପରି ସ୍ୱାର୍ଥନ୍ୱେଷୀ, ଦୁର୍ନୀତିଗ୍ରସ୍ତ, କୁଚକ୍ରୀମାନଙ୍କର ଚକ୍ରାନ୍ତରେ ମାନସିକ ସ୍ତରରେ କ୍ଷତବିକ୍ଷତ ହେଲେହେଁ ନିଜର ସ୍ୱାଭିମାନକୁ ଜଳାଞ୍ଜଳି ଦେଇ କାହାର ସ୍ତାବକତା କରିନାହାନ୍ତି । ଅତୀତରେ ବିଜୁବାବୁଙ୍କ ଅମଳରେ ତାଙ୍କର ସ୍ୱାଭିମାନୀ ଦକ୍ଷତା ପ୍ରମାଣିତ ହୋଇଛି ।

ଓଡ଼ିଶାର ଆଇ.ଏ.ଏସ ଅଫିସରମାନଙ୍କ ଭିତରେ ଆଜି ଅଧିକାଂଶ ଦୁର୍ନୀତିଗ୍ରସ୍ତ, ମଦ୍ୟପ ତଥା ଶାସକଦଳର ସ୍ତାବକତା କରି ଅବସର ପରେ ପୁନଃ ନିଯୁକ୍ତି ପାଇଁ ଲସର ପସର ହେଉଥିବାବେଳେ ପି.ଏମ. ତାଙ୍କର ସ୍ୱାଭିମାନ ତଥା ମର୍ଯ୍ୟାଦାବୋଧରେ ସମଗ୍ର କ୍ୟାଡରକୁ ମର୍ଯ୍ୟାଦାଯୁକ୍ତ କରିଛନ୍ତି, ଏଥିରେ ଅଣୁମାତ୍ର ଅତ୍ୟୁକ୍ତି ନାହିଁ ।

ବର୍ତ୍ତମାନର ସି.ଏମ ଯଦି ପି.ଏମ.ଙ୍କ ଠାରୁ କିଛି ପରାମର୍ଶ ଗ୍ରହଣ କରୁଥାନ୍ତି, ତେବେ ତାହା ଖୁବ୍ ଭଲ କଥା ରାଜ୍ୟପାଇଁ । ମାତ୍ର ସି.ଏମ.ଙ୍କ ଚାରିକଡରେ ଥିବା ଅନେକ ଅଫିସରଙ୍କୁ ସ୍ଥାନାନ୍ତର କରାଯିବା ଦରକାର । ନଚେତ ମୁଖ୍ୟମନ୍ତ୍ରୀଙ୍କ ଦପ୍ତର ମଧ୍ୟ ଆଉ କିଛି ଦିନ ପରେ ପ୍ରତ୍ୟକ୍ଷଭାବେ ଲୋକଙ୍କ ଦ୍ୱାରା ସମାଲୋଚିତ ହେବ ।

ଏପରିକି ପରିବର୍ତ୍ତିତ ମନ୍ତ୍ରୀମଣ୍ଡଳରେ ସେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର ମଧ୍ୟ ପରାମର୍ଶ ଦାତା ଥିଲେ । ପି.ଏମ୍ ସମାଲୋଚନା କରୁଥିବା ବ୍ୟକ୍ତିଙ୍କୁ ପି.ଏମ. ଥରେ ଜବାବ୍ ଦେଇ କହିଥିଲେ-'କେବଳ ପାଟିକଲେ ସମସ୍ତଙ୍କ ମୁଖା ଖୋଲିଦେବି', ତାଙ୍କର ଜୁଆରରେ ଭଟ୍ଟା ପଡ଼ିଗଲା । ଏହା ତାଙ୍କର ପ୍ରଚଣ୍ଡ ସ୍ୱାଭିମାନୀ-ବ୍ୟକ୍ତିତ୍ୱର ପରିଚୟ ଦିଏ ।

ନିତ୍ୟନୂତନ

# ଅର୍ଥରୁ ଅନର୍ଥ

ସେଦିନ ବୋଧହୁଏ ମାର୍ଚ୍ଚମାସ ୧୪ ତାରିଖ, ଜଣେ ବନ୍ଧୁଙ୍କ ଘରକୁ ଯିବା ବାଟରେ ମୁଁ ଦେଖିଲି ଟ୍ରେଜେରୀ ଡାଇରେକ୍ଟୋରେଟ୍ ଲୋକାରଣ୍ୟ । ଗେଟ୍ ପାଖରୁ ଭିତରକୁ ପାଦ ପକାଇବାକୁ ହେଲେ ଲୋକଙ୍କୁ ଆଡେଇ ଯିବାକୁ ପଡ଼ିବ । ମନରେ କୌତୂହଳ ହେଲା-କାରଣଟା ବୁଝିଲେ ହୁଅନ୍ତା । ବାହାରେ ମଟର ସାଇକେଲଟି ରଖି ମୁଁ ଭିତରକୁ ପଶିଲି ।

ଗୋଟିଏ ଜାଗାରେ ସାତ ଆଠଜଣ ମେଳିହୋଇ ଖୁବ୍ ଗାଳି କରୁଥାଆନ୍ତି । ସେମାନେ ଶିକ୍ଷକ, ଅଧ୍ୟାପକ । ସେମାନଙ୍କ ପେ-ଫିକ୍ସେସନ ପାଇଁ ଆସି ବର୍ଷ ବର୍ଷ ଧରି କଣ୍ଟ୍ରୋଲର ଅଫ୍ ଏକାଉଣ୍ଟସ ଅଫିସ୍‌ରେ ପଡ଼ିଛି । କାହାକୁ ଭିତରକୁ ଛାଡିଦେଉ ନାହାନ୍ତି । ତାଙ୍କରି ଅଫିସ୍‌ରେ ଦଲାଲ୍ ମାନଙ୍କୁ ୫ ଶହରୁ ହଜାରେ ଟଙ୍କା ଦେଲେ କାମ ହେଉଛି ନହେଲେ ନାହିଁ । ଏହା ହିଁ ଥିଲା ଆଲୋଚନାର ବିଷୟବସ୍ତୁ ।

ମୁଁ ତଳେ ଏ.ଜି ବାଲା ସେ କାମ କରୁଛନ୍ତି ଶୁଣି ଭିତରକୁ ଗଲି । ଜଣେ ମଧ୍ୟମ ବୟସ୍କ ସୌମ୍ୟଦର୍ଶନ ବ୍ୟକ୍ତି ବୋଧହୁଏ ଏହି ଅଫିସର କେହି ହେବେ ବସିଥାଆନ୍ତି । ତାଙ୍କ ଆଗରେ ୨ଟି ରେଜିଷ୍ଟର ଥୁଆ ହୋଇଥାଏ । କେତେଜଣ ଟଣା ଓଟରା କରି ଦେଖୁ ଥାଆନ୍ତି । ଗୋଟିଏ ଖାଲି ଚେୟାର ଦେଖାଇ ଭଦ୍ରଲୋକ ମତେ ପଚାରିଲେ- ଆପଣଙ୍କର କାହାର କିଛି ଦେଖିବାର ଅଛିତ, ସେମାନେ ଦେଖୁଛନ୍ତି ଆପଣ ବି ଦେଖନ୍ତୁ ।

ଲୋକମାନେ ସେଠାରେ ମଧ୍ୟ ପାଟିତୁଣ୍ଡ କରୁଥାନ୍ତି । ସେ ଭଦ୍ରଲୋକ କହିଲେ- ଆଜ୍ଞା, ଆମର କାମ ସରିଲାଣି । ଆମେ ୨୦ ତାରିଖ ସୁଦ୍ଧା ସବୁ ପଠାଇ ଦେଇ ଏଠାରୁ ପଳାଇବୁ । କାମ ଗୁଡାଏ ବାକୀ ପଡିଥିବାରୁ ଫାଇନାନସ୍ ସେକ୍ରେଟାରୀଙ୍କ ଅନୁରୋଧ କ୍ରମେ ଆମେ ପ୍ରାୟ ୨୦ ଜଣ ଷ୍ଟାଫ୍ ଆସିଥିଲୁ ବକେୟା କାମ ସାରିବାକୁ । ପେଣ୍ଡିଂ ୧୦ ହଜାର କେସ୍‌ରୁ ଅଫିସ୍ ମାତ୍ର ୭ ହଜାର ଫାଇଲ୍ ଦେଲା ।

ସମବେତ ପ୍ରଶ୍ନ - ବାକୀ ୩ ହଜାର ?

ବାକି ୩ ହଜାର ଫାଇଲ ଆମକୁ ଦେଲେ ତାଙ୍କ ଲାଞ୍ଚ ନେବା ଚଳିବ କେଉଁଠୁ ? ସେ ଫାଇଲ୍ ମଧ୍ୟ ସାରି ଆମେ ୩୦ ତାରିଖ ସୁଦ୍ଧା ଫେରିଯାଇଥାନ୍ତୁ । ମାତ୍ର ୭ ହଜାର ଫାଇଲ୍ କାମ ସାରି ଆମେ ୨୦ ତାରିଖରେ ଯାଉଛୁ । ବାକୀ ଫାଇଲ୍ ରହିଲା ଚାନ୍ଦା ଆଦାୟ ପାଇଁ ।

ଲୋକମାନେ ବାହାରେ ଆଲୋଚନା କଲେ ଫାଇଲ୍ ଗୋଟାକୁ ପାଞ୍ଚ ଶହ ହେଲେ ଏଇଠି ୧୫ ଲକ୍ଷ ଟଙ୍କା ଲାଞ୍ଚ ଖାଇଯିବେ । ଶ... (ଅଶ୍ଳୀଳ ଶବ୍ଦରେ) କଣ୍ଟ୍ରୋଲର ଖାଇବ ମଧ୍ୟ । ବାକି ଆଦାୟ ଅଫିସ୍ ଷ୍ଟାଫ୍ ଖାଇବେ । ଏଭଳି ଗରମ ଆଲୋଚନା ଭିତରେ ମୁଁ କହିଲି-କଣ୍ଟ୍ରୋଲରଙ୍କୁ ମୁଁ ଜାଣେ । ପ୍ରଫୁଲ୍ଲ କୁମାର ସାହୁ ସେଭଳି ଲୋକ ନୁହନ୍ତି । ଏକାବେଳକରେ ୩/୪ ଜଣ ପ୍ରତିବାଦ କଲେ-କ'ଣ କହୁଛନ୍ତି ଆଜ୍ଞା-କଣ୍ଟ୍ରୋଲରଙ୍କ ବିନା ଅନୁମତିରେ ଅଫିସ୍ ୩ ହଜାର ଫାଇଲ୍ ମାଡିବସି ରଖିଦେଇ ପାରିବ ? ସେଥିରେ ପୁଣି ଗୋଟାଏ ରିଟାୟାର୍ଡ଼ କିରାଣୀ ମିଶ୍ର ଅଛି ଯେ ସେ ଗୋଟାଏ ସବାଖିଆ । ଅଫିସର ମାନେ ଗୋଟାଏ କାମ କରିବାକୁ ଚାହିଁଲେ ପୁରୁଣା କିରାଣୀ ମିଶ୍ର ତାଙ୍କୁ ଭୂଆଁ ବୁଲାଉଛି । ଆମକୁ ବି ଭୂଆଁ ବୁଲାଉଛ ।

ଏହିଭଳି ପରିସ୍ଥିତି ଓ ପରିବେଶ ଭିତରେ କଣ୍ଟ୍ରୋଲର ଏବଂ ତାଙ୍କ ଅଫିସର ଅବାଞ୍ଛିତ ଅର୍ଥଲାଳସା ପାଇଁ ଏତେ ଗୁଡିଏ ଲୋକ ହଇରାଣ ହେଉଥିବା ଦେଖି ମନେ ହେଲା- ଅର୍ଥରୁ ଅନର୍ଥ କଥାଟା ପୂରା ପୂରି ଠିକ୍ । ଏମାନେ ଅର୍ଥ ପାଇବା ପାଇଁ ହୋ ହୋ ହେଲା ବେଳକୁ ଅଫିସ୍ ସେଥିରୁ କିଛି ଆଦାୟ କରିବାକୁ ହୁଏତ ଅନର୍ଥ ସୃଷ୍ଟି କରୁଛି । ଫଳରେ ପରିବେଶଟି ପୂତି ଗନ୍ଧମୟ ହେଉଛି । ଫାଇନାନ୍ସ ସେକ୍ରେଟାରୀ ମହୋଦୟଙ୍କ ଦୃଷ୍ଟି ଏ ଘଟଣା ଉପରେ ପଡିଲେ ଅନ୍ତତଃ ସୁସ୍ଥ ବାତାବରଣ ସୃଷ୍ଟି ହୋଇ ପାରନ୍ତା ବୋଲି ମୋର ମନେ ହେଲା । ସରକାର ଓ ସରକାରୀ କର୍ମଚାରୀ ଅବାଞ୍ଛିତ ଦୁର୍ନାମରୁ ରକ୍ଷା ପାଆନ୍ତେ ।

(ଅନୁପମ ଭାରତ)

# ଜନତାର ବନ୍ଧୁ - ପୋଲିସ

କବିବର ରାଧାନାଥ ରାୟଙ୍କର ଅମର କୃତି 'ଦରବାର'ର କେତେଟି ପଂକ୍ତି ପ୍ରାୟ ସମସ୍ତେ ଜାଣନ୍ତି ।

''କିଏ ବୋଲେ ମୁହିଁ ଅଟଇ ପୁଲିସ

ବିନା ମେଘେ ସୃଜି ପାରଇ କୁଳିଶ ।

କିବା ଦୁଃଖୀ ରଙ୍କୀ କି କୋଟିପତିଏ

ନାଲି ପଗଡ଼ିକୁ ନ ଡରନ୍ତି କିଏ ।''

ଏହା ଆଦୌ ଅତିଶୟୋକ୍ତି ନଥିଲା । ଆଜି ମଧ୍ୟ ଏହି ଉକ୍ତିର ସତ୍ୟତାକୁ ଜନସାଧାରଣ ଅଙ୍ଗେ ନିଭାଉଛନ୍ତି । ପ୍ରାୟ ପ୍ରତ୍ୟେକ ଦିନ ସମ୍ବାଦପତ୍ର ପୃଷ୍ଠାରେ ଦେଖାଯାଏ ପୋଲିସ୍ ଏଫ.ଆଇ.ଆର ରଖିଲା ନାହିଁ । ନ୍ୟାୟ ପାଇଁ ପୀଡିତ / ପୀଡିତା ଡ଼ିସିପି କିମ୍ବା କମିଶନରଙ୍କୁ ଗୁହାରି ଜଣାଇଲା ।

ଜନସାଧାରଣ ପ୍ରତି ପୋଲିସ୍‌ର ଆଭିମୁଖ୍ୟରେ ପରିବର୍ତ୍ତନ ଆଣିବାକୁ ଯେତେ ଆଇନ କାନୁନ୍ ତିଆରି ହେଲେହେଁ, ଯେତେ ସେମିନାର ହେଲେହେଁ ଅଦ୍ୟାବଧି ଥାନାଦାର ଓ ଫାଣ୍ଡିଦାର ମାନଙ୍କ ଉପରେ ତାର ଅଣୁମାତ୍ର ପ୍ରଭାବ ପଡୁନାହିଁ । ଆଜି ମଧ୍ୟ ଭଦ୍ରଲୋକଟିଏ ଅତ୍ୟାଚାରିତ ହେଲେ ସୁଦ୍ଧା ଥାନା / ଫାଣ୍ଡିକୁ ଯିବାକୁ କୁଣ୍ଠିତ କାହିଁକି ?

ଏପରିକି ବରିଷ୍ଠ ନାଗରିକ, ଉଚ୍ଚଶିକ୍ଷିତ ଲୋକଟିଏ ଦୁର୍ବ୍ୟବହାରର ଶିକାର ହେବା ଭୟରେ ଥାନାଠାରୁ ଦୂରେଇ ରହିବା ଶ୍ରେୟସ୍କର ମଣୁଛି । ଏହି ପରିସ୍ଥିତିରେ ପୋଲିସ୍ ଯେ ଆମ ସମାଜର ଲୋକ, ଆମ ସମାଜର ସେବାପାଇଁ ଅଛି, ଯେତେ ଡିଣ୍ଡିମ୍ ପିଟଲେ ମଧ୍ୟ କେହି ବିଶ୍ୱାସ କରିପାରୁ ନାହାନ୍ତି ।

ଦଳେ ବରିଷ୍ଠ ନାଗରିକ ପ୍ରାତଃ ଭ୍ରମଣରେ ଯାଉଥିବା ବେଳେ ପ୍ରସଙ୍ଗକ୍ରମେ ଅମରବାବୁ ତାଙ୍କର ନିଜସ୍ୱ ଅନୁଭୂତି ବର୍ଣ୍ଣନା କଲେ ।

ସରକାରୀ ଚାକିରିରେ ଅମର ବାବୁ ବାହାରେ ସପରିବାର ରହୁଥାନ୍ତି । କଟକରେ ତାଙ୍କର ଛୋଟିଆଘରଟିକୁ ଭଡା ଲଗାଇଥାନ୍ତି । ଘରେ ରହୁଥିବା ଭଡାଟିଆଟି ଏକଦା ପ୍ରାୟ ୩ ମାସର ଘରଭଡା ବାକିରଖି ଘର ଛାଡି ନଜଣାଇ ଚାଲିଗଲା । ସେହି ସୁଯୋଗରେ ଜଣେ ଅସାମାଜିକ ବ୍ୟକ୍ତି ସେ ଘରକୁ ଜବରଦସ୍ତ ଦଖଲ କଲା । କିଛି ଦିନ ପରେ ଅମରବାବୁ ଘରଭଡା ପାଇଁ ଆସି ଦେଖନ୍ତିତ ଘରେ ରହୁଥିବା ବ୍ୟକ୍ତିଟି (ଜଣେ ପୁଲିସ୍ କର୍ମଚାରୀ) ନାହିଁ ମାତ୍ର ଆଉ ଜଣେ ଘରେ ଅଛି । ସେ ଲୋକଟି କହିଲା ଆପଣ ଏ ଘରଟି ବିକିବେ ଶୁଣି ମୁଁ ଆସି ରହିଛି, ମତେ ବିକନ୍ତୁ । ଅମର ବାବୁଙ୍କର ବିକିବା ଚିନ୍ତା ମଧ୍ୟ ମନରେ ନଥିଲା । ସେ ମଧୁପାଟଣା ଥାନକୁ ଗଲେ । ଘରର ମାଲିକାନା କାଗଜପତ୍ର, ମ୍ୟୁନିସିପାଲିଟିର ହୋଲ୍ଡିଂ ଟ୍ୟାକ୍ସ ରସିଦ୍ ଇତ୍ୟାଦିର ଜେରକ୍ସ କପି ସହିତ ଥାନାରେ ଏଫ.ଆଇ.ଆର ଦେଲେ । ୧୯୯୩ ମସିହା କଥା । ଜଣେ ସାମଲ ଆଇଆଇସି ଥାଆନ୍ତି । ସମସ୍ତ କାଗଜ ରଖି ତାପର ଦିନ ଆସିବାକୁ କହିଲେ । ଅମର ବାବୁ କାନ୍ଦି କାନ୍ଦି ତାଙ୍କର ଦୁଃଖ ଜଣାଇଲେ ମଧ୍ୟ ଫଳାଫଳ ଶୂନ । ତାପରଦିନ ସେ ଗୋଟାଏ ମଡର କେଶ୍‌ରେ ଯାଉଛନ୍ତି ୪ ଦିନ ପରେ ଆସିବାକୁ କହିଲେ । ୪ ଦିନ ପରେ କହିଲେ- ଏଗୁଡା ଘରବାଡି କଥା, ସିଭିଲ୍ ମ୍ୟାଟର, ଆପଣ କୋର୍ଟକୁ ଯାଆନ୍ତୁ । ଏଫ.ଆଇ.ଆର ରଖିଲେ ନାହିଁ । ଅମର ବାବୁ ପରେ ଶୁଣିଲେ, ଖବର ପାଇବା ଦିନ ସାମଲ ବାବୁ- ସେ ଅସାମାଜିକ ଲୋକକୁ ରାତିରେ ଥାନାକୁ ଧରିଆଣି ସଲାସୁତୁରା ହୋଇ ଛାଡିଦେଲେ । ଧର୍ମକୁ ଡାକି ଅମର ବାବୁ ଅଲଗା ବ୍ୟବସ୍ଥା କଲେ ।

୨୦୦୯ ମସିହାର ଅଭିଜ୍ଞତା ଦେବାନନ୍ଦବାବୁ କହିଲେ । ଉତ୍ତର ସତୁରୀ ବର୍ଷର ବରିଷ୍ଠ ନାଗରିକ ଦେବାନନ୍ଦ ବାବୁ ଏକଦା ବରଗଡ଼ ଥାନାକୁ ଦାୟରେ ପଡି ଏଫ.ଆଇ.ଆର ଦେବାକୁ ଯାଇଥିଲେ । ଆଇଆଇସି ଗୋଟାଏ ଚେୟାରରେ ବସି ଆଉ ଗୋଟାଏ ଚେୟାରରେ ଗୋଡ ଦୁଇଟା ରଖି ଏଣ୍ଟରଟେନ୍‌ମେଣ୍ଟ ଚାନେଲ୍ ଟିଭି ଦେଖୁଥାନ୍ତି । ଦେବାନନ୍ଦ ବାବୁ ନମସ୍କାର କରି ଠିଆହେଲେ । ପ୍ରାୟ ୫ ମିନିଟ୍ ପରେ ସେମିତି ଥାନାବାବୁ ବିକଳାଙ୍ଗ ଠାଣିରେ ପଚାରିଲେ-କ'ଣ ହେଲା ? ଦେବାନନ୍ଦବାବୁ ତାଙ୍କର ଦୁଃଖ କହିଲେ ଓ ଏଫ.ଆଇ.ଆରଟି ଦେଲେ । ଜଣେ ବରିଷ୍ଠ ନାଗରିକ ଠିଆ ହୋଇଥିବାବେଳେ ଜଣେ ଉଦ୍ଧତ ସରକାରୀ କର୍ମଚାରୀଙ୍କର ଏଭଳି କରିବା ଅସହ୍ୟ ବୋଧ ହେଲେ ହେଁ ନିରୁପାୟ ଦେବାନନ୍ଦ ବାବୁ ସେମିତି ଠିଆ ହୋଇଥାନ୍ତି । ପୁଲିସ୍ ଅଫିସର୍ କହିଲେ-ଆପଣ ଏଫ.ଆଇ.ଆର ଦେଲେ ମୁଁ ପ୍ରଥମେ ଆପଣଙ୍କୁ ଆରେଷ୍ଟ

କରିବି । ବୁଢ଼ାଲୋକ । ୪ ଦିନରେ ବେଲ୍ ମିଳିଯିବ । ତଥାପି ଦେବାନନ୍ଦବାବୁ ଜିଦ୍ କରିବାରୁ କାଗଜଟି ରଖିଲେ । କପି ମାଗିବାରୁ କପି ମିଳିବ ନାହିଁ କହିଲେ । ଏ ପରିକି ଷ୍ଟେସନ୍ ଡାଏରୀ ନମ୍ବରଟି ଦିଅନ୍ତୁ କହିବାରୁ ଉତ୍ତର ମିଳିଲା ଥାନାରେ ଲୋକ ନାହାନ୍ତି । ୪ ଦିନ ପରେ ଆସ ।

ଏହିଭଳି ଭାବରେ ବ୍ୟବହାର କରି ଆଜିର ପୋଲିସ୍ ଜନତାର ବନ୍ଧୁବୋଲି ଯେତେ କହିଲେ ପ୍ରଚାର କଲେ ମଧ୍ୟ ଜନତା ତାହା ଗ୍ରହଣ କରିବାକୁ ନାରାଜ । ପ୍ରତ୍ୟେକ ଥାନରେ ଏଫ.ଆଇ.ଆର ରଖିବାକୁ ଜଣେ ସିଭିଲିଆନକୁ ଦାୟିତ୍ୱ ଦିଆଯାଇପାରେ । କିମ୍ବା କମିଶନର୍‌ଙ୍କ ଅଫିସରେ ଡେପୁଟି କମିଶନରଙ୍କ ଅଫିସରେ 'ଏଫଆଇଆର ସେଲ୍' ରଖାଯାଉ, ଏଫଆଇଆର ଗୁଡିକୁ ରଖି ସଂପୃକ୍ତ ଥାନାମାନଙ୍କୁ ପଠାଯାଇପାରେ ବୋଲି ସେଦିନ ଆଲୋଚନାରେ ଅଧିକାଂଶ ବ୍ୟକ୍ତି ମତବ୍ୟକ୍ତ କଲେ ।

ପୋଲିସ୍ ସମାଜର ଉପକାର ପାଇଁ ବୋଲି ଭାବି ଲୋକେ କେମିତି ବିଶ୍ୱାସକୁ ନେବେ, ତାହାର ଉପାୟ ସରକାର ଓ ସମାଜବିଜ୍ଞାନୀମାନେ ଚିନ୍ତା କରନ୍ତୁ । ନଚେତ୍ ଗୋଟାଏ ସ୍ୱାଧୀନ ଦେଶରେ ନାଗରିକ ବିଶେଷତଃ ଭଦ୍ରଲୋକମାନେ ଅତ୍ୟାଚରିତ ହେଲେ, ତାର ପରିଣାମ ଦେଶପ୍ରତି, ସମାଜପ୍ରତି ଆଦୌ ଶୁଭଙ୍କର ହେବନାହିଁ । ତାର ପ୍ରତିବାଦର ସ୍ୱର ଦିନେ ପୋଲିସ୍ ଶାସନକୁ ଅଡୁଆରେ ପକାଇବ । ଆଶା କରିବା ତାହା କେବେ ନଘଟୁ ।

(ଅନୁପମ ଭାରତ) ୨୫.୯.୨୦୧୨

# ଚାଲ ସାଙ୍ଗ ହୋଇ ଲୁଟିବା

କଥା ଛଳରେ ମହାନ୍ତିବାବୁ ତାଙ୍କ ଦୁର୍ଦ୍ଦଶା ବର୍ଣ୍ଣନା କଲେ । ସେ ବହୁ ବର୍ଷ ପୂର୍ବରୁ ପୁରୁଣା ଭୁବନେଶ୍ୱରରେ ଜାଗା ଖଣ୍ଡେ କିଣିଥିଲେ । ଚାକିରିରେ ବାହାରେ ରହୁଥିବାରୁ କାଳେ କିଏ ମାଡି ବସିବ, ସେହି ଆଶଙ୍କାରେ ଥିବା ବେଳେ ଯୋଗକୁ ତାଙ୍କୁ ଜଣେ ରିକ୍‌ସାବାଲା ମିଳିଗଲା । ଆଗକୁ ଘର ଖଣ୍ଡେ କରିବାକୁ ଦୃଷ୍ଟିରେ ରଖି ମହାନ୍ତି ବାବୁ ଛୋଟ ଖଣ୍ଡେ ଚାଳଘର କରିଥିଲେ ଷ୍ଟୋର ରୁମ୍ କରିବା ପାଇଁ । ତାଙ୍କର ଜାଗାକୁ ଜଗାରଖା କରୁଥିବା ରିକ୍‌ସାବାଲାଟି ସେହି ଘରେ ରହିଲା । ତା ସଂସାର ବେଳକୁ ବେଳ ବଢ଼ିଲା । ଚାରୋଟି ଛୁଆ । ସେଥିରେ ଗୋଟିଏ ଗାଈ ଓ ଗୋଟିଏ କୁକୁର । ମହାନ୍ତିବାବୁଙ୍କ ଚାଳଘରକୁ ଲଗାଇ ଆଉ ଟିକିଏ ବଢ଼ାଇ ଗୋଟାଏ ବଖରା କଲା । ମହାନ୍ତି ବାବୁ ଘରକଲାବେଳକୁ ଷ୍ଟୋର ଘରଟିର ଆଉ ଦଖଲ ପାଇଲେ ନାହିଁ । ଜୋର କରି ମଧ୍ୟ ଉଠାଇ ପାରିଲେ ନାହିଁ । ତା ଘରେ ଚାରି ଖଣ୍ଡ ଭୋଟ୍ ଲୋଭରେ କର୍ପୋରେଟର ମହାନ୍ତି ବାବୁଙ୍କୁ ମୌଖିକ ଭରସା ଦେଲେ ହେଁ ରିକ୍‌ସାବାଲାକୁ ଘର ନ ଛାଡିବାକୁ ପରାମର୍ଶ ଦେଲେ । ଏବେ କହନ୍ତୁ ତ, ତାଙ୍କ ସମସ୍ୟାଟି ନାଗ ଚୁଚୁନ୍ଦ୍ରାକୁ ଧରିବା ନ୍ୟାୟ ହେଲା କି ନାହିଁ !

ଭୁବନେଶ୍ୱରର ରାସ୍ତା କଡରେ ଯେ ଯେଉଁଠି ପାରିଲେ, କାଠି ଚାରିଖଣ୍ଡ ପୋତି ପାଲବାନ୍ଧି ବସି ପଡ଼ିଲେ । ତା ପାଖକୁ ତା ପାଖ ଆଉ ୫ ଜଣ ବସିଗଲେ । ତାଙ୍କୁ କେତେବର୍ଷ ପରେ ଉଠାଇବା ପ୍ରଶ୍ନ ଉଠିଲେ ସାମ୍ବାଦିକ ଓ ବିରୋଧୀଦଳ ସରକାରଙ୍କୁ ମାଡି ବସିବେ । ଆଗ ଥଇଥାନ ବ୍ୟବସ୍ଥା କର, ତାପରେ ତାଙ୍କୁ ବେଘର କର । ତାପରକୁ ଅଛି ରାଜ୍ୟମାନବ ଅଧିକାର କମିଶନ୍ । ସେମାନେ ସମସ୍ତେ ମିଶି ସରକାରୀ ଆଇନକୁ କାର୍ଯ୍ୟକାରୀ କରାଇ ଦେବେ ନାହିଁ । ଅଥଚ ଧାଡି ଧାଡି ଲେଖିବେ ଚଣ୍ଡିଗଡର ମହିମା । ତା ତୁଳନରେ ଆମ ରାଜଧାନୀ ଭୁବନେଶ୍ୱର କେତେ ଅପରିଚ୍ଛନିଆ । ମାତ୍ର ସେଥିପାଇଁ ଦାୟୀ ବ୍ୟକ୍ତିକୁ ସହାୟତା ଦେଉଛି କିଏ ?

କେହି ଲୋକ ନିଜର ଘରର ପ୍ଲାନରେ ଟିକିଏ ପରିବର୍ତ୍ତନ କଲେ ବିଡିଏ ସ୍କ୍ୱାଡ୍ ସଙ୍ଗେ ସଙ୍ଗେ ମାପିଚୁପି ଶୁଣାଣି କରି 'ଡିମୋଲିସନ' ଆଦେଶ ଦେଉଛନ୍ତି । ମାତ୍ର ଗଧିଆଖାଲ, ସାଲିଆସାହି ଇତ୍ୟାଦି ବସ୍ତି ସରକାରୀ ଜାଗାରେ ଅବୈଧ ଭାବରେ ହୋଇଥିଲେ ମଧ୍ୟ ତାକୁ ଉଠାଇପାରୁ ନାହାନ୍ତି । ମାନବିକତା ପ୍ରଶ୍ନ ଉଠାଇ ବିରୋଧୀ ଦଳ ଓ ମାନବ ଅଧିକାର କମିଶନ୍ ସରକାରଙ୍କ ପିଛା ପଡି ଯାଉଛନ୍ତି । ବସ୍ତିମାନଙ୍କରେ ଜଣେ ଜଣେ ୫୦-୧୦୦ ଡେସିମାଲ୍ ଜମି ଅକ୍ତିଆର କରି ଅବୈଧ ନିର୍ମାଣ କରି ନିଜେ ରହି ଭଡା ଲଗାଇଛନ୍ତି । ସେହି ଜମିର ମୂଲ୍ୟ ପ୍ରାୟ ଏକ କୋଟି ଟଙ୍କା ହେବ । ଅଥଚ ନିଜ ଟଙ୍କାରେ ଜାଗାକିଣି ଘର ଖଣ୍ଡେ କରିଥିବା ଲୋକ ଉପରେ ଆଇନ୍‌ର ସବୁ ଜୁଲମ୍ । କାହିଁକି ପୁଣି ସର୍ବକ୍ଷମା କରି ସବୁ କିଛି ରେଗୁରାଲାଇଜ କରାଯାଉନାହିଁ ? ତେବେ ସମସ୍ତେ ଏକାଠି ହୋଇ ଗୋଟାଏ ଦଳ ଗଢ଼ି ପ୍ରତିରୋଧ କଲେ ଏହାର ସ୍ଥାୟୀ ପ୍ରତିକାର ହେବ ? ଏହି ଅବୈଧ ଅଧିକାରରୁ ଆଜି ପୋସ୍କୋ କହନ୍ତୁ କଳିଙ୍ଗ ନଗର କହନ୍ତୁ, ସବୁ ସମସ୍ୟାର ସୃଷ୍ଟି । ସେଗୁଡିକ ଗୋଟିଏ ଗୋଟିଏ ବଡ ସାଲିଆସାହି ବା ଗଧିଆଖାଲ ସହିତ ସମାନ ନୁହେଁ କି ?

ସରକାରୀ ଜମି ସରକାର ଅଧିଗ୍ରହଣ କରିବାରେ ଆଇନଗତ ବାଧା କେଉଁଠି ? ତାପରେ ଯେଉଁ ପ୍ରଶ୍ନ ଆସୁଛି-ତାହା ଭାରତୀୟ ରାଜନୀତିର କଳୁଷିତ ଚିନ୍ତା ଧାରା, ସରକାରଙ୍କୁ ବିରୋଧ କରିବା ବିରୋଧୀଙ୍କ ମୁଖ୍ୟ କାମ । ତେଣିକି ଦେଶ ଚୁଲିକି ଯାଉ । ଏହି ନୀତି ସବୁଦଳଙ୍କ ପାଇଁ ପ୍ରଯୁଜ୍ୟ । ଆଜି ଯେ ସରକାର ଗଢ଼ିଛି, ସେ କାଲି ବିରୋଧୀ ଦଳରେ ବସିବ । ମାତ୍ର ନୀତି ଗୋଟିଏ । ସରକାରକୁ ବିରୋଧ କରି, ପ୍ରବଞ୍ଚନା କରି କିଛି ଭୋଟ୍ ହାତେଇବା, କ୍ଷମତାରେ ରହିବା । ମାୟାବତୀ, ରାଜା, ଲାଲୁ ଓ କାନିମୋଝି ଗୁଡିଏ ସୃଷ୍ଟି କରିବା, ତାକୁ ଯେ ବିରୋଧ କଲା ତାକୁ ବିଭିନ୍ନ କୌଶଳ ପ୍ରୟୋଗ କରି ହତାଶ କରିବା ।

ଆପଣ ମହାନ୍ତି ବାବୁଙ୍କ ସମସ୍ୟାର ଗୋଟାଏ ସରଳ ସମାଧାନ କରି ପାରିବେ କି ?

(ଅନୁପମ ଭାରତ)

# ଟ୍ରାଫିକ୍ ଆଇନ୍ କାହାପାଇଁ

ଆମେ ସମସ୍ତେ ଆଲୋଚନା କରୁଛେ, ଚିତ୍କାର କରୁଛେ-ମହାନଗରୀରେ ଟ୍ରାଫିକ୍ ସେବା ବିପର୍ଯ୍ୟସ୍ତ ହୋଇଗଲା । ମାତ୍ର ଆମେମାନେ ଅର୍ଥାତ୍ ଜନସାଧାରଣ ଟ୍ରାଫିକ୍ ଆଇନ ପ୍ରତି ସଚେତନ କି ? ଯେତେଥର ଏହି ପ୍ରଶ୍ନ ମୁଁ ମୋ ନିଜକୁ ପଚାରେ, ତାର ଉତ୍ତର ମିଳେ - ନା ।

ମୁଁ ନିଜେ ସବୁବେଳେ ସମସ୍ତ ଟ୍ରାଫିକ୍ ଆଇନ ମାନି ଯାତାୟାତ କରୁଥିବା ସ୍ଥଳେ ଆଖିଆଗରେ ବହୁଲୋକ ବିଶେଷତଃ ଯୁବକ/ତରୁଣ ମାନେ ବିପଜ୍ଜନକ ଭାବରେ ଟ୍ରାଫିକ୍ ନିୟମ ଉଲ୍ଲଘଂନ କରୁଥିବାର ଦେଖିଲେ ମନରେ କ୍ଷୋଭ ଆସେ । ଆମ ଯୁବ ସମାଜ ଆଉ କେବେ ଜାଣି-ଅଜଣା ପଣରୁ ମୁକ୍ତ ହେବେ ?

ସେଦିନ ସନ୍ଧ୍ୟାରେ ରବି ଟକିଜ୍ ଛକରେ ରାସ୍ତାପାର ହେଉଥିବାବେଳେ ମୁଁ ଟ୍ରାଫିକ୍ ଡିଉଟିରେ ଥିବା କନେଷ୍ଟବଳ ପାଖରେ ଟିକିଏ ଠିଆ ହୋଇ ପଡ଼ିଲି । ମାତ୍ର ୨ ମିନିଟ୍ ପରେ ପାର୍ଶ୍ୱ ପରିବର୍ତ୍ତନ ହେଉଥାଏ । ଏହି ସମୟରେ ପୂର୍ବ ପଶ୍ଚିମ ଦିଗରୁ ଗାଡି ଯାତାୟାତ କରୁଥିବା ବେଳେ ହଠାତ୍ ୨ ଜଣ ଯୁବକ ବିଜୁଳି ବେଗରେ ସିଜର୍ କଟରେ ମଟର ସାଇକେଲ ଚଳାଇ ଉତ୍ତର-ଦକ୍ଷିଣ ପଟେ ଚାଲିଗଲେ ଓ ଜଣେ ସାଇକେଲ ଚଳାଇ ଭୁଲ ଦିଗକୁ ଚାଲିଗଲା । କନେଷ୍ଟବଳ ଜଣ ମତେ ଦେଖାଇ କହିଲେ-ମୋଉସା, ଦେଖିଲେ ତ । ଏଥିରେ ଗାଡି ଆକ୍ସିଡେଣ୍ଟ ହେଲେ ଆମର ଦୋଷ । ଗାଡି ଅଟକାଇଲେ ଆମର ଦୋଷ ।

ଆମେମାନେ ମିଳିତ ଭାବରେ ଯଦି ସମସ୍ତେ ଏଭଳି ଆଇନ୍ ଅମାନ୍ୟ କରିବା- ଜଣେ ମାତ୍ର ଲୋକ ରାସ୍ତା ମଝିରେ ଠିଆହୋଇ କାହାକୁ ସମ୍ଭାଳିବ କେମିତି ?

ତେବେ ଆମକୁ କଣ ଜୋରିମାନା ଓ ହାଜତ ଭୟ ଦେଖାଇ ବାଟକୁ ଆଣିବାକୁ ପଡ଼ିବ ? ଆମେ କେବେ ନିୟମ ମୁତାବକ ରାସ୍ତାରେ ଯିବା ଆସିବା କରି ନିରାପଦ ରହିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କର ନିରାପତ୍ତା ପ୍ରତି ଯତ୍ନବାନ୍ ହେବା ?

(ଅନୁପମ ଭାରତ)

# ସଉତୁଣୀ ରାଣ୍ଡ ହେଉ

ଓଡ଼ିଆରେ ଗୋଟିଏ ପ୍ରବାଦ ଅଛି-ଘଇତା ପଛକେ ମରୁ ସଉତୁଣୀ ରାଣ୍ଡ ହେଉ । ଏହାର ଅର୍ଥ ହେଲା-ସ୍ୱାମୀ ମଲେ ସଉତୁଣୀ ରାଣ୍ଡ ହେବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ରାଣ୍ଡ ହେବା ଜାଣି ମଧ୍ୟ ଅସହିଷ୍ଣୁତା ବଶତଃ ସ୍ୱାମୀ ମୃତ୍ୟୁ କାମନା ମଧ୍ୟ କରାଯାଇପାରେ । ନିଜର ଯେତେ ଅନିଷ୍ଟ ହେଉ ପଛେ ଶତ୍ରୁ ଭାବାପନ୍ନ ବ୍ୟକ୍ତିର ଅନିଷ୍ଟ କାମନା କରିବା ଭଳି ମାନସିକତା କେବଳ ଯେ ସ୍ତ୍ରୀ ଲୋକଙ୍କ ଭିତରେ ପ୍ରଚଳିତ, ତାହା ନୁହେଁ । ଏହା ସ୍ତ୍ରୀ-ପୁରୁଷ ନିର୍ବିଶେଷରେ ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ ।

ନିଜ ଦଳର ସ୍ୱାର୍ଥ ପାଇଁ ଦେଶକୁ ବଦ୍‌ନାମ କରିବା ଯାଏ କେତେ ଲୋକ ତଥା ଦଳ କିଭଳି କାମ କରୁଛନ୍ତି ତାହାର ୨ଟି ଉଦାହରଣ ଦେବା ଏଠାରେ ପ୍ରୟୋଜନୀୟ ମନେ ହୁଏ ।

ଫୁଲବାଣୀ ଜିଲ୍ଲାରେ ସ୍ୱାମୀ ଲକ୍ଷ୍ମଣାନନ୍ଦ ସରସ୍ୱତୀ ଆଶ୍ରମଟିଏ ସ୍ଥାପନ କରି ଆଦିବାସୀ ପିଲାମାନଙ୍କୁ ଶିକ୍ଷାଦାନ କରୁଥିଲେ । ଏହିକାମ ପାଇଁ ଆଦିବାସୀମାନେ ତାଙ୍କୁ ଖୁବ୍ ଭକ୍ତି କରୁଥିଲେ । ସେ ତ କାହାରି ଅନିଷ୍ଟ ସାଧନ କରୁ ନଥିଲେ । ଅଥଚ କେତେକ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି, ଅନୁଷ୍ଠାନ, ଜାତିମାନଙ୍କର ଏଥିରେ ଗାତ୍ରଦାହ ହେଲା । ସେମାନଙ୍କର ଟାଉଟରୀ, ଧର୍ମାନ୍ତରୀକରଣରେ ବାଧା ପହଞ୍ଚିଲା ବୋଲି ବିଚାର କରି କଳେବଳେ କଉଶଳେ ସେମାନେ ତାଙ୍କୁ ପ୍ରାଣରୁ ମାରିଦେଲେ ।

ତାପରେ ହଠାତ୍ ଜାତିଗତ ଦଙ୍ଗା ସୃଷ୍ଟି ହେଲା । ରାଜ୍ୟ ସରକାର ତାକୁ ଦୃଢ଼ ହସ୍ତରେ ଦମନ କଲେ । ଶାନ୍ତି କମିଟି ମାନ ଗଠିତ ହେଲା । ପୀଡିତ ଲୋକମାନଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ସହଯୋଗ ଯୋଗାଇ ଦିଆଗଲା । ମାତ୍ର ରାଜ୍ୟ ସରକାରଙ୍କୁ, ଅଣ-କଂଗ୍ରେସ ସରକାରକୁ ଜାତୀୟ ସ୍ତରରେ ବଦ୍‌ନାମ କରିବାର ସମସ୍ତ ପ୍ରଚେଷ୍ଟା କରାଗଲା । ଏପରିକି କୁଖ୍ୟାତ ନାୟକ ବ୍ରୃଦର୍ସ ଭାରତ ବାହାରେ ଯାଇ କନ୍ଧମାଳ ଦଙ୍ଗାରେ ଖ୍ରୀଷ୍ଟିଆନ ମାନଙ୍କ ଉପରେ ଅତ୍ୟାଚାର ହେଉଛି ବୋଲି ପ୍ରଚାର କରି ଓଡ଼ିଶା

ତଥା ଭାରତର ଛବିକୁ ମଳିନ କଲେ । ସେତିକି ନୁହେଁ ରକ୍ଷାକର୍ତ୍ତା ଖ୍ରୀଷ୍ଟିଆନ ଦଳରୁ କେତେକ ବିଦେଶୀ ଆସି ଆମ ବିଚାର ବିଭାଗର ବିଚାର-ପଦ୍ଧତି ଉପରେ ଟିପ୍ପଣୀ ଦେବାକୁ ଛାଡିଲେ ନାହିଁ । ଏହାକ'ଣ ସଉତୁଣୀକୁ ରାଣ୍ଡ କରିବାକୁ ଯାଇ ନିଜେ ରାଣ୍ଡ ହେବା ନୁହେଁ କି ?

ଦ୍ୱିତୀୟ ଘଟଣାଟି ହେଲା ଗୁଜୁରାଟର ଗୋଧ୍ରାହତ୍ୟାକାଣ୍ଡ । ରେଳରେ ଆସୁଥିବା ୬୦ ଜଣ କରସେବକଙ୍କୁ ଧର୍ମାନ୍ଧ ମୁସଲମାନମାନେ ଡବାରେ ନିଆଁ ଲଗାଇ ପୋଡି ମାରିଦେଲେ । ତାର ଫଳ ସ୍ୱରୂପ ସେଠାରେ ଜାତିଗତ ଦଙ୍ଗା ଲାଗିଗଲା । ରାଜ୍ୟ ସରକାର ଦଙ୍ଗାକୁ ଆୟତ୍ତ କଲେ ଏବଂ ପରବର୍ତ୍ତୀ ବିଧି ବ୍ୟବସ୍ଥା କରି ଶାନ୍ତି ଫେରାଇ ଆଣିଲେ । ମାତ୍ର ମୋଦିଙ୍କୁ ବଦ୍‌ନାମ୍ କରିବାକୁ କଂଗେସ ଦଳ ତଥା ଭାରତ ସରକାର ସେହି ଦିନଠାରୁ ମୋଦିଙ୍କ ପଛରେ ପଡ଼ିଯାଇଛନ୍ତି । ସେ କୋର୍ଟରେ ନିର୍ଦ୍ଦୋଷ ପ୍ରମାଣିତ ହେବାପରେ ମଧ୍ୟ ତାଙ୍କ ବିରୁଦ୍ଧରେ ଦଳ ଓ ସରକାର ଲାଗିଛନ୍ତି-କିପରି ଏହି ମଉକାରେ ତାଙ୍କୁ ହଟାଇ ସେଠାରେ କଂଗ୍ରେସ ଶାସନ ପ୍ରତିଷ୍ଠା କରିବେ । ସେଥିପାଇଁ ବିଧିବଦ୍ଧ ଭାବେ ପ୍ରଚାର କରି ଭାରତ ବାହାରେ ଆମେରିକା ଓ ଇଂଲଣ୍ଡ ଆଦି ଖ୍ରୀଷ୍ଟିଆନ୍ ବହୁଳ ଦେଶରେ ଏବଂ ଇସଲାମିକ୍ ଦେଶରେ ମୋଦିଙ୍କ ବିରୁଦ୍ଧରେ ସମସ୍ତେ ଆପ୍ରାଣ ଚେଷ୍ଟିତ । ଏହା ଫଳରେ ବିଦେଶରେ ଗୋଟାଏ ଧାରଣା ସୃଷ୍ଟି ହେଉଛି ଯେ ଭାରତରେ ସଂଖ୍ୟାଲଘୁମାନେ ନିରାପଦ ନୁହନ୍ତି । ଅଥଚ ଭାରତର ମୁସଲମାନ ମାନେ ପାକିସ୍ଥାନର ମୁସଲମାନ ମାନଙ୍କ ଠାରୁ ଭଲରେ ନିରାପଦରେ ଅଛନ୍ତି ବୋଲି ବାରମ୍ବାର କହୁଛନ୍ତି । ଆଉ ଖ୍ରୀଷ୍ଟିଆନ୍‌ଙ୍କର ତ ଭାରତରେ ରାଜୁତି ଚାଲିଛି ।

ଏ ସମସ୍ତ ଘଟଣାର ମୂଳ ଲକ୍ଷ୍ମଣାନନ୍ଦ ସରସ୍ୱତୀ ଓ ଆଉ ୫ ଜଣ ତଥା ୬୦ ଜଣ କରସେବକ ସମସ୍ତେ ହିନ୍ଦୁଥିଲେ । ତେଣୁ ସେମାନଙ୍କ ମୃତ୍ୟୁରେ ଭାରତରେ ଟିକିଏ ପାଣିସୁଦ୍ଧା ଚହଲିବା ଉଚିତ୍ ନୁହେଁ । ନଚେତ୍ ସିନ୍ଦେଙ୍କ ଭାଷାରେ 'ହିନ୍ଦୁ ସନ୍ତ୍ରାସବାଦୀ' ଗୈରିକ ସନ୍ତ୍ରାସବାଦ ଭଳି ଶବ୍ଦ ଆସନ୍ତା କୁଆଡୁ ? ଧନ୍ୟ ଭାରତବାସୀ ! ଧନ୍ୟ ଭାରତର ଗଣତନ୍ତ୍ର ।

(ଅନୁପମ ଭାରତ)

# ଏକ ଜାତୀୟ ଲଜ୍ଜା – "ବଳାତ୍କାର"

ଯେଉଁ ସଦ୍ୟତମ ଘଟଣା ସାରା ଭାରତରେ ଚହଳ ସୃଷ୍ଟି କଲା ତାହା ହେଲା ମାତ୍ର କିଛିଦିନ ତଳେ ଦିଲ୍ଲୀରେ ଚଳନ୍ତା ବସ୍‌ରେ ଜଣେ ମେଡିକାଲ ଛାତ୍ରୀଙ୍କୁ ଗଣ ବଳାତ୍କାର । ଏହା ଭିତରେ ୬ ଜଣ ଯାକ ଦୁର୍ବୃତ୍ତ ଧରା ପଡ଼ିଛନ୍ତି ଏବଂ ସେମାନଙ୍କ ବିରୁଦ୍ଧରେ ପୋଲିସ୍ ୧୦୦୦ ପୃଷ୍ଠାର ଚାର୍ଜସିଟ୍ ଦେଇ ସାରିଲାଣି । ଖୁବ୍ ଶୀଘ୍ର ତାର ବିଚାର ହୋଇ ଦଣ୍ଡ ବିଧାନ କରାଯିବ । ଦୋଷୀ ମାନଙ୍କୁ ଫାଶୀଦଣ୍ଡରେ ଦଣ୍ଡିତ କରିବାକୁ ମଧ୍ୟ ବହୁଆଡୁ ଦାବି ଉଠୁଛି । ତଥାପି ଫାଶୀ ନହେଲେ ବି ସେମାନଙ୍କୁ ଯାବଜ୍ଜୀବନ କାରାଦଣ୍ଡ ମିଳିପାରେ ।

ଏହି ଗୋଟିଏ ଗଣ ବଳାତ୍କାରର ବିଚାର ଓ ଦଣ୍ଡ ବିଧାନ କରିଦେଲେ ଯେ ସମଗ୍ର ଭାରତରୁ ଏହି କୁତ୍ସିତ ମନୋଭାବ ହଠାତ୍ ଦୂର ହୋଇଯିବ, ତାହାନୁହେଁ । ଯେଉଁଠି, ଘା'ଟିଏ ହୋଇଛି, ସେଥିରୁ ପୂଯ କାଢ଼ିଦେଲେ ଘା'ଟି ସିନା ତତ୍କାଳ ଶୁଖିଯିବ, ମାତ୍ର ପୁନରାୟ ସେହି ଘା' ସେହି ସ୍ଥାନରେ ବା ଶରୀର ଅନ୍ୟତ୍ର ଦେଖାଦେଇ ପାରେ । ତେଣୁ ରୋଗର ମୂଳକୁ ଖୋଜି ନିରାକରଣ କରିବା ଅଧିକ ଯୁକ୍ତିଯୁକ୍ତ ମନେହୁଏ ।

ଅପରାଧ ପ୍ରବଣତା କାହାରିମନରେ ଅକସ୍ମାତ୍ ସ୍ଥାନ ପାଏ ନାହିଁ । ନିଜର ପାରିବାରିକ ସଂସ୍କାର, ଶିକ୍ଷାଦୀକ୍ଷା, ପାରିପାର୍ଶ୍ୱିକ ଅବସ୍ଥାର ପ୍ରଭାବରେ ପ୍ରଭାବିତ ହୋଇ ଅପରାଧ ପ୍ରବଣତା ମନରେ ସୃଷ୍ଟି ହୁଏ । ଯେପରି ପରିବାରର ମୁଖ୍ୟ ଯଦି ମଦ୍ୟପ ହୁଅନ୍ତି, ସେ ନିଜର ସନ୍ତାନମାନଙ୍କୁ ମଦ୍ୟପାନରୁ ନିବର୍ତ୍ତାଇ ପାରିବେ ନାହିଁ । ପରିବାରରେ ବାପା ମା'ଙ୍କ ଭିତରେ ମନାନ୍ତର ଓ କଳି ତକରାଳ, ଅସତ୍ ଉପାୟରେ ପର୍ଯ୍ୟାପ୍ତ ଟଙ୍କା ରୋଜଗାର ପିଲାମାନଙ୍କୁ ଅସତ୍ ପଥରେ ଯିବାକୁ ପ୍ରେରଣା ଯୋଗାଏ ।

ସ୍କୁଲ୍ କଲେଜ ପାଠ୍ୟକ୍ରମରେ ଚରିତ୍ର ଗଠନ ଉପରେ ଅଧ୍ୟୟନ ତଥା କର୍ମଶାଳାର ନିତାନ୍ତ ପ୍ରୟୋଜନ ମନେହୁଏ । ବୈଷୟିକ ପ୍ରଯୁକ୍ତି ବିଦ୍ୟାର ପ୍ରସାର ଫଳରେ ବାଳକ ବାଳିକା ମାନେ ଧର୍ମ, ଦୟା, ପୁନର୍ଜନ୍ମ ଇତ୍ୟାଦି ପ୍ରତି ଆଉ ବିଶ୍ୱାସ ନରଖି ଧର୍ମଛଡା ହୋଇ ଯାଉଛନ୍ତି ।

ପୂର୍ବ କାଳରେ ଘାଟିଆ ନଥିଲେ ଲୋକେ ଡଙ୍ଗାରେ ନଦୀପାର ହୋଇ ପଇସା ପାଣିରେ ପକାଇ ଦେଇ ଥିବାର ଆମେ ଶୁଣିଛୁ । ପରଜନ୍ମରେ ଋଣୀ ନରହିବା ପାଇଁ ସେଭଳି କରାଯାଏ । ଆମମାନଙ୍କର ଧର୍ମଭୀରୁ ମାନସିକତା ଯୋଗୁ ଆମେ କାହାରି ମନରେ ଦୁଃଖ ଦେଲାଭଳି କଥା ପଦେ କହି ପାରୁନାହୁଁ । ମାତ୍ର ଭଗବାନ, ଧର୍ମ, ନ୍ୟାୟ-ଅନ୍ୟାୟକୁ ଆଜିର ଯୁବକ ଯୁବତୀମାନେ କୁସଂସ୍କାର ମନେ କରିବା ଦେଖାଯାଉଛି । ସେଭଳି ମାନସିକତାରେ ବିସ୍ଫୋରଣ ହେଉଛି-ନାନାଦି ଅସାମାଜିକ କର୍ମ କରିବା ।

ମଦ୍ୟପାନ ଆଜିକାଲି ଗୋଟାଏ ଫେସନ ବା ବଡଲୋକୀ ନିଶାରେ ପରିଣତ ହେଲାଣି । ଯେତେବେଳେ ହତ୍ୟାକାଣ୍ଡ, ଡକାୟତି, ଧର୍ଷଣ ଇତ୍ୟାଦି ଘଟୁଛି, ପ୍ରାୟ ସବୁ ଘଟଣାର ଖଳନାୟକ ମାନେ ମଦ୍ୟପାନ କରିଥାନ୍ତି । ସେତେବେଳେ ଆଉ ସେମାନଙ୍କର ହିତାହିତ ଜ୍ଞାନ ରହେନାହିଁ । ମାତ୍ର ଭାରତ ବର୍ଷରେ ଅବକାରୀ ଆୟ ବୃଦ୍ଧି ପାଇଁ ସବୁଆଡେ ଏପରିକି ସହରର ଗଳିକନ୍ଦିରେ ମଦଦୋକାନମାନ ଖୋଲିଲାଣି । ଗାଁ ଗଣ୍ଡାରେ ମଧ ମଦ ଦୋକାନ ଖୋଲି ନୂଆନୂଆ ମଦ୍ୟପମାନ ସୃଷ୍ଟି କରାଗଲାଣି । ତେଣୁ ସବୁଆଡେ ଅପରାଧ ବଢିଚାଲିଛି । ତା ଛଡା ବଡ ବଡ ହୋଟେଲ୍‌ରେ ଖାଇବା, ମଦପିଇବା ପାଇଁ ଅର୍ଥର ଆବଶ୍ୟକ । ସେଥିପାଇଁ ସହଜ ଆୟର ପନ୍ଥା ହେଲା-ଦାଦାବଟି ଆଦାୟ, ରାହାଜାନି ଓ ସ୍ତ୍ରୀ ଲୋକଙ୍କ ବେକରୁ ହାର ଛିଣ୍ଡାଇନେବା । ରାସ୍ତାରୁ ନେଇ ଏମାନେ ଏବେ ଘରେ ପଶି ସ୍ତ୍ରୀଲୋକ ମାନଙ୍କ ଅଳଙ୍କାର ଲୁଟ୍ କରୁଛନ୍ତି । ଏହି ଭଳି ଦୁର୍ଦ୍ଦାନ୍ତ ଯୁବକମାନେ ଧର୍ଷଣ, ଗଣ ଧର୍ଷଣରେ ଲିପ୍ତ ରହିବା ଦେଖାଯାଉଛି ।

ଏତଦ୍‌ବ୍ୟତୀତ ଆଜିକାଲି ଫିଲିମ୍ ଓ ଟି.ଭି ସିରିଏଲ୍‌ରେ ମଧ ଅଶ୍ଳୀଳତା ପଶିଗଲାଣି । ଯୁବତୀମାନେ ଟଙ୍କା ଲୋଭରେ ସିନେମାରେ ବିବସ୍ତ୍ରା ହେବା ଯୁବକମାନଙ୍କ ମନରେ କାମଭାବର ଉଦ୍ରେକ କରୁ ନାହିଁକି ? ହୋଟେଲରେ ନଗ୍ନ ନୃତ୍ୟ, ପ୍ରଚାର ପତ୍ରରେ, ବିଜ୍ଞାପନରେ ଅର୍ଦ୍ଧନଗ୍ନ ନାରୀଙ୍କୁ ଦେଖି ଯୁବକମାନେ ଉନ୍ମତ୍ତ ହେବା ସ୍ୱାଭାବିକ । ପୁନଶ୍ଚ ଅଧୁନା ରାସ୍ତାରେ ଯୁବତୀମାନେ ଅର୍ଦ୍ଧନଗ୍ନ ପୋଷାକ ପିନ୍ଧି ବୁଲୁଥିବାର ଦେଖାଯାଏ ।

ଏହି ସମସ୍ତ କାରଣମାନ ଧର୍ଷଣର ନେପଥ୍ୟରେ ଅଛନ୍ତି । ଧର୍ଷଣକାରୀ ଭୁଲିଯାଏ ଯେ ସେ ମଧ ଗୋଟିଏ ନାରୀଠାରୁ ଜନ୍ମଲାଭ କରିଛି । ତେଣୁ ଆମର ଶାସ୍ତ୍ର କହେ- 'ମାତୃବତ୍ ପର ଦାରେଷୁ' ଚିନ୍ତା ସବୁବେଳେ ମନେ ରହିବା ଉଚିତ୍ । ଆଜିକାଲି ଖୁବ୍

କମ୍ ପରିଶ୍ରମରେ ଲୋକମାନଙ୍କ ପାଖକୁ ବହୁତ୍ ଅର୍ଥ ଆସିଯିବା ଦେଖାଯାଏ । ଅସତ୍ ଉପାୟରେ ଆସୁଥିବା ଅର୍ଥ କେବଳ ଅସତ୍ ପଥରେ ପରିଚାଳିତ  ହେବାକୁ ପ୍ରବର୍ତ୍ତାଏ ।

ଏହି ସମସ୍ତ ବିଷୟକୁ ଦୃଷ୍ଟିରେ ରଖି ସମାଜ ବ୍ୟବସ୍ଥାରେ ଉପଯୁକ୍ତ ପଦକ୍ଷେପ ଗ୍ରହଣ କଲେ ଗଣଧର୍ଷଣ ଭଳି କୁତ୍ସିତ ଘଟଣାମାନ ସମାଜରୁ ଦୂର ହୋଇଯିବ ବୋଲି ମନେ ହୁଏ । ତଥାପି ଦୋଷୀକୁ ଯଥାଶୀଘ୍ର ଦଣ୍ଡପ୍ରଦାନ ଏକାନ୍ତ ବିଧେୟ । ମା' ଓ ଭଉଣୀମାନଙ୍କୁ ନିବେଦନ, ସେମାନେ ପୋଷାକପତ୍ର ପରିଧାନରେ ସଂଯମତା/ଶାଳୀନତା ରକ୍ଷା କରନ୍ତୁ । ଅତ୍ୟାଧୁନିକା ନାମରେ ଉଚ୍ଛୃଙ୍ଖଳତାକୁ ପ୍ରଶ୍ରୟ ଦିଅନ୍ତୁ ନାହିଁ । ଗୋଟିଏ ଉତ୍ତମ ସମାଜର ଗଠନରେ ସମସ୍ତେ ବ୍ରତୀ ହୁଅନ୍ତୁ । ଗୋଟିଏ ଆଦର୍ଶ ଓ ସଭ୍ୟ ସମାଜ ଗଠନ କରି ବିଶ୍ୱରେ ଆଦର୍ଶ ସୃଷ୍ଟି କରନ୍ତୁ । ସରକାର ଦୁର୍ବୃତ୍ତ ମାନଙ୍କ ପୃଷ୍ଠପୋଷକତା ସର୍ବାଦୌ ବର୍ଜନ କରନ୍ତୁ ।

- ଅନୁପମ ଭାରତ

# ବିଶ୍ୱାସରେ ସଙ୍କଟ

ପ୍ରାୟ ପ୍ରତ୍ୟେକ ଦିନ ସମ୍ବାଦପତ୍ର ପୃଷ୍ଠାରେ ଆମେ ଦେଖୁ ନିଶାଗ୍ରସ୍ତ ଅଥବା ବେହୋସ ଅବସ୍ଥାରେ ରେଳରୁ କିମ୍ବା ବସରୁ ଲୋକଙ୍କୁ ଉଦ୍ଧାର କରାଯାଉଛି । ସ୍ଥାନେ ସ୍ଥାନେ ନିତାନ୍ତ ବୀଭତ୍ସ ଭାବରେ ରାସ୍ତା କଡରେ, ବସ ଷ୍ଟାଣ୍ଡରେ, ରେଳ ଷ୍ଟେସନ ପାଖାପାଖି ଅଞ୍ଚଳରେ ଏହି ଭଳି ଅସହାୟ ବ୍ୟକ୍ତି କିମ୍ବା ଲୋକେ ପଡ଼ି ରହିଛନ୍ତି । ତାଙ୍କୁ କେହି ସହୃଦୟ ବ୍ୟକ୍ତି କିମ୍ବା ଅନୁଷ୍ଠାନ ତରଫରୁ ଉଦ୍ଧାର କରି ଡାକ୍ତରଖାନାରେ ଭର୍ତ୍ତି କରୁଛନ୍ତି । କେତେକ ଦୀର୍ଘ ଚିକିତ୍ସା ପରେ ସୁସ୍ଥ ହେଉଛନ୍ତି ତ କେତେକ ସେହି ଅବସ୍ଥାରେ ମୃତ୍ୟୁ ବରଣ କରୁଛନ୍ତି । ମାତ୍ର ସମସ୍ତେ ଲୁଣ୍ଠିତ ହୋଇଥାନ୍ତି ।

ଖଳଲୋକମାନେ ବା ଲୁଟେରାମାନେ ସେହି ଲୋକମାନଙ୍କ ସହିତ ପରିଚୟ ସୃଷ୍ଟି କରି, ବିଶ୍ୱାସ ଜନ୍ମାଇ ଚା, ପାନ, ପାନୀୟ ଇତ୍ୟାଦିରେ ଉତ୍କଟ ବିଷ ମିଶାଇ ଖୁଆଇ ଦିଅନ୍ତି ଓ ତାର ସର୍ବସ୍ୱ ଲୁଣ୍ଠନ କରନ୍ତି । କ୍ରମଶଃ ଏହି ବ୍ୟାଧି ବସ୍ ଯାତ୍ରୀଙ୍କ ଯାଏ ବ୍ୟାପି ଗଲାଣି । ସେହି ସମସ୍ତ ପୀଡିତ ମାନଙ୍କର ଦୋଷ ହେଲା ସେମାନେ ଆଉ ଜଣେ ମଣିଷକୁ ବିଶ୍ୱାସକୁ ନେଇ ତା ହାତରୁ କିଛି ଗ୍ରହଣ କରିଛନ୍ତି । କେବଳ ବିଶ୍ୱାସରେ ହିଁ ବିଷ ଦିଆଯାଇ ପାରେ । ତେଣୁ ନିଜର ସହଯାତ୍ରୀଙ୍କୁ ଏବେ ପ୍ରାୟ ସମସ୍ତେ ସନ୍ଦେହପୂର୍ଣ୍ଣ ଦୃଷ୍ଟିରେ ଦେଖିବା ଆରମ୍ଭ କଲେଣି । ମଣିଷ ଆଉ ଜଣେ ମଣିଷକୁ ବିଶ୍ୱାସ କରିବା କ୍ରମଶଃ ଦୁର୍ଲଭ ହେଲାଣି ।

ଏହି ସମ୍ପର୍କରେ ମୋର ଦୀର୍ଘ ଅତୀତର ସ୍ମୃତି ମନେପଡ଼େ । ମୁଁ ସେତେବେଳେ ବିକ୍ରିକର ବିଭାଗରେ ବାଲୁଗାଁରେ ନିଯୁକ୍ତ ଥାଏ । ଦିନେ ପ୍ରାୟ ସନ୍ଧ୍ୟା ସାତଟାରେ ମୁଁ ମୋର ଅର୍ଡର୍ଲି ପିଅନ (ବର୍ତ୍ତମାନ ଦିବଂଗତ) କୁ ସାଙ୍ଗରେ ନେଇ ରେଳ ଷ୍ଟେସନକୁ ତଦାରଖ କରିବାକୁ ଯାଇଥାଏ । ମୋର ଉପସ୍ଥିତିକୁ ଦେଖି ବାଲୁଗାଁ-ବାଣପୁରର କେତେକ ବ୍ୟବସାୟୀ ବାଲୁଗାଁରେ ନ ଓହ୍ଲାଇ ପରବର୍ତ୍ତୀ ଷ୍ଟେସନ୍‌ରେ ଓହ୍ଲାଇବାକୁ ନିରାପଦ ମନେ କଲେ ବୋଲି ପରେ ଜାଣିଲି ।

ରାତ୍ରି ପ୍ରାୟ ୮.୩୦ରେ ମୁଁ ଫେରିଆସିବାକୁ କହିବାରୁ ମୋ ପିଅନ (ସୁବାସ ମହାନ୍ତି) କହିଲା-ସାର ! ୩/୪ ଜଣ ଅସାମାଜିକ ଯୁବକ ଗୋଟିଏ ନବବିବାହିତା ଦମ୍ପତିଙ୍କୁ ଫଲୋ କରୁଛନ୍ତି । ନିଶ୍ଚୟ କିଛି ଗୋଟାଏ ଅଘଟଣ ଘଟିବ । ମୁଁ ଦେଖିଲି ଜଣେ ପ୍ରାୟ ୨୮ ବର୍ଷର ଯୁବକ ସହିତ ତାର ନବ ବିବାହିତା ପତ୍ନୀ ବୟସ ୨୨/୨୩ ହେବ ଟ୍ରେନ୍ ନ ପାଇ ପ୍ଲାଟଫର୍ମରେ ବୁଲୁଛନ୍ତି । ମୁଁ ସେମାନଙ୍କୁ ଡାକି ପଚାରି ବୁଝିଲି ଯୁବକ ଜଣକ ଜଣେ ଶିକ୍ଷକ । ସେ ଟ୍ରେନ୍‌ରେ ବିଜୟନଗର ଯାଇ ସେଠାରୁ କୋରାପୁଟ ଯିବେ । ମୁଁ ସେମାନଙ୍କୁ ମୋର ପରିଚୟ ଦେଇ କହିଲି-ତୁମେ ବିପଦଗ୍ରସ୍ତ ହୋଇ ସାରିଲଣି । ଏଠାରେ ତୁମେ ନିରାପଦ ନୁହଁ । ମୋ ସହିତ ମୋ ଘରକୁ ଆସ । କାଲି ଭୋର୍ ଟ୍ରେନ୍‌ରେ ଚାଲିଯିବ । ମୋ କଥା ଶୁଣି ଯୁବକଟି ଭୟରେ ଥରିଲା । କହିବା ବାହୁଲ୍ୟ-ସେମାନେ ମୋ ସହିତ ମୋ ଘରକୁ ଆସି ରହିଲେ ଏବଂ ପରଦିନ ଭୋର୍‌ରୁ ଷ୍ଟେସନକୁ ଚାଲିଗଲେ । ଯିବାବେଳେ ଅଶେଷ କୃତଜ୍ଞତା ଜଣାଇଲେ ।

ଆର ଘଟଣାଟି ୨୦୧୩ ମସିହା ଏପ୍ରିଲ୍ ୩୦ ତାରିଖର କଥା । ମୁଁ ସନ୍ଧ୍ୟାରେ ସାନ୍ଧ୍ୟ ଭ୍ରମଣରେ ଯାଇ ବିନ୍ଦୁ ସାଗର କୂଳରେ ନବନିର୍ମିତ ପାଚେରି ଉପରେ ବସିଥାଏ । ଜଣେ ତେଲୁଗୁ ଲୋକ ବୟସ ପ୍ରାୟ ୪୫ ଙ୍କ ସହିତ ତାଙ୍କ ପତ୍ନୀ ପ୍ରାୟ ୪୦ ବର୍ଷର ମହିଳା ଥାଆନ୍ତି । ଭଦ୍ରଲୋକ ଛୋଟେଇ ଛୋଟେଇ ପତ୍ନୀଙ୍କ କାନ୍ଧରେ ଭାରା ଦେଇ ଆସି ମତେ ଲିଙ୍ଗରାଜ ମନ୍ଦିରର ସ୍ଥିତି ପଚାରିଲେ । ମୁଁ ହାତ ବଢ଼ାଇ ଦେଖାଇ ଦେଲି । ତାପରେ ରେଳ ଷ୍ଟେସନ, ସିଟିବସ କଥା ପଚାରିଲେ । ମୁଁ ସଠିକ୍ ଭାବରେ ଓଡ଼ିଆ-ତେଲୁଗୁ ମିଶା ଭାଷାରେ ବତାଇଦେଲି । ଦୁହେଁ ଗଲେ । ପ୍ରାୟ ୧୫ ମିନିଟ୍ ପରେ ମୁଁ ଘରକୁ ଫେରିବା ରାସ୍ତାରେ ଦେଖିଲି ଦୁହେଁ ରାସ୍ତାରେ ଏପଟସେପଟ ହେଉଛନ୍ତି ।

ମୁଁ ତାଙ୍କୁ ଡାକିଲି-ଚାଲ, ରବିଟକିଜ୍ ଛକରେ ଷ୍ଟେସନ ଯାଉଥିବା ସିଟିବସରେ ବସାଇ ଦେବି । ସେମାନେ ମୋଠାରୁ କିଛି ଦୂରତା ରକ୍ଷା କରି ପଶ୍ଚାତ୍‌ଗମନ କଲେ । ମୁଁ ରବି ଟକିଜ୍ ଛକରେ ମେଟ୍ରୋମ୍ୟାନସନ୍ ଆଗରେ ଗାଡ଼ି ରହେ କହି ସେଠାକୁ ଗଲି । ମାତ୍ର ସେ ଦୁହେଁ ମନରେ ବୋଧହୁଏ କିଛି ସଂଶୟ ରଖି କମିଶନରେଟ୍ ପୋଲିସ୍ ଭ୍ୟାନ୍ ପାଖରେ ଛକ ଉପରେ ଠିଆହୋଇ ରହିଲେ । ଠିକ୍ ଛକରେ ଟ୍ରାଫିକ୍ ବସ୍‌କୁ ରଖାଇ ହେବନାହିଁ ବୁଝାଇଲେ ମଧ୍ୟ ସେମାନେ ଆଗକୁ ଆଉ ପ୍ରାୟ ୧୫ ଗଜ ବାଟ ମୋ ସହିତ ଗଲେ ନାହିଁ ।

ମୋ ମନରେ ହଠାତ୍ ଧାରଣ ହେଲା ଯେ ସେମାନେ ବୋଧହୁଏ ମତେ ଆଉ ଅଧିକ ବିଶ୍ୱାସ କରିପାରୁନାହାନ୍ତି । ସେଥିପାଇଁ ପୋଲିସ୍ ଭ୍ୟାନକୁ ଦେଖି ତାକୁ ଏକ ନିରାପଦ ଆଶ୍ରୟ ସ୍ଥଳ ଭାବି ସେଠରେ ରହିଗଲେ ।

୧୯୭୫ରୁ ୨୦୧୩ ଭିତରେ ସାଧାରଣ ମଣିଷର ବିଶ୍ୱାସରେ କେଡେ ବଡ ସଂକଟ ସୃଷ୍ଟି ହେଲାଣି ଏଥିରୁ ବିଚାର କରାଯାଇପାରେ । ଏହା ବର୍ତ୍ତମାନ ସମାଜବିଜ୍ଞାନୀ ମାନଙ୍କ ପାଇଁ ଚିନ୍ତାର ବିଷୟ ହେଲାଣି । ଏହାକୁ କୌଣସି ବ୍ୟକ୍ତି ବିଶେଷର ଦୋଷ ନ ବିଚାରି ବର୍ତ୍ତମାନ ସମୟର ସଂକଟ ବୋଲି ବିଚାର କରାଯାଇପାରେ ।

ମଣିଷ ସମାଜ କେତେ ନିମ୍ନ ସ୍ତରକୁ ଖସିଲାଣି ସତେ । କେତେକ ଦୁର୍ବୃତ୍ତଙ୍କ ପାଇଁ ଆଜି ଏହି ଅବିଶ୍ୱାସର ବାତାବରଣ ସୃଷ୍ଟି ହୋଇଛି । ଦୋଷୀକୁ କଠୋର ହସ୍ତରେ ଦମନ କରି ଆଉ ଥରେ ବିଶ୍ୱାସର ବାତାବରଣ ଫେରାଇ ଆଣିବା ଦୁଃସାଧ୍ୟ ନିଶ୍ଚୟ ମାତ୍ର ଅସାଧ୍ୟ ଆଦୌ ନୁହେଁ ।

(ଅନୁପମ ଭାରତ)

# ମାଡାମ୍ ଥିଲେ ବୋଲି

ଆମେ ଛାତ୍ରାବସ୍ଥାରେ ସ୍ୱର୍ଗତ ରାଜକିଶୋର ରାୟଙ୍କର ଗୋଟିଏ କାଳଜୟୀ ଗଳ୍ପ-'ଆଚାର୍ଯ୍ୟେ ଥିଲେ ବୋଲି' ପଢ଼ିଥିଲୁ । ଗୋଟିଏ ରେଳଡବାରେ ବିଭିନ୍ନ ଚରିତ୍ରର, ବିଭିନ୍ନ ବର୍ଗର ଲୋକେ ଯାତ୍ରା କରୁଥିବାବେଳେ ଗୋଟିଏ ଭିକାରିକୁ ଦେଖି ଜଣେ ରାଜନେତା, ଜଣେ ବ୍ୟବସାୟୀ ଏବଂ ଆଉ ଜଣେ ଅଧ୍ୟାପକ କିପରି ଭ୍ରୂକୁଞ୍ଚନ କରି ସେହି ଭିକାରିମାନଙ୍କ ଦାଉରେ ଆମ ଦେଶ, ସମାଜ ଓ ଶାସନ ବ୍ୟବସ୍ଥା ଧ୍ୱଂସ ପାଇବାକୁ ବସିଲାଣି ବୋଲି ଆଲୋଚନାରେ ସାବ୍ୟସ୍ତ କରିଥିଲେ । ବାଟରେ ସେହି ଡବାରେ ଆଚାର୍ଯ୍ୟ ହରିହର ପ୍ରବେଶ କରନ୍ତେ ଓ ଅନ୍ଧ ଭିକାରିକୁ କିଛି ପଇସା ଦିଅନ୍ତେ ସମସ୍ତେ ସହସା ଦାନୀ ପାଲଟିଗଲେ ଏବଂ ଭାରତ ସମେତ ବିଶ୍ୱରେ ଭିକାରିମାନଙ୍କ ପାଇଁ ଗଢ଼ିଉଠୁଥିବା ବିଭିନ୍ନ ଅନୁଷ୍ଠାନମାନଙ୍କ ବିଷୟରେ ଆଲୋଚନା କଲେ । ଏହି ଗଳ୍ପଟି ଓଡ଼ିଆ ସାହିତ୍ୟରେ ଏକ ଅମ୍ଳାନ ରତ୍ନ ସଦୃଶ ।

ଏବେ ଆସନ୍ତୁ ଠିକ୍ ସେହିଭଳି ଘଟୁଥିବା ଘଟଣାବଳୀ ଉପରକୁ-ମାତ୍ର ଭିନ୍ନ ଭାବରେ, ଭିନ୍ନ ଦୃଷ୍ଟିରେ ।

ଶ୍ରୀମତୀ ଅପରାଜିତା ଷଡ଼ଙ୍ଗୀ ମ୍ୟୁନିସିପାଲିଟିର କମିଶନର ଥିଲେ । ତାଙ୍କର ସଚ୍ଚୋଟତା ଓ କାର୍ଯ୍ୟଦକ୍ଷତା ଅବିସମ୍ବାଦିତ । ଭୁବନେଶ୍ୱର ଲୋକେ ତାଙ୍କୁ କେବେହେଲେ ଭୁଲି ପାରିବେ ନାହିଁ । ତାଙ୍କ ସମୟରେ ସମସ୍ତ କର୍ମଚାରୀଙ୍କ କାର୍ଯ୍ୟଦକ୍ଷତା ବଢ଼ିଥିଲା । ନିତାନ୍ତ ଦୁର୍ନୀତିଗ୍ରସ୍ତ କର୍ମଚାରୀମାନେ କେତେ ପରିମାଣରେ ବାଧ୍ୟରେ ସଚ୍ଚୋଟ ହୋଇଗଲେ । ସମସ୍ତଙ୍କ ଭିତରେ କର୍ମ ପ୍ରବଣତାର ଏକ ତରଙ୍ଗ ଉଦ୍‌ବେଳିତ ହେଲା । କର୍ମଚାରୀମାନେ ଭୟଭୀତ ହୋଇ ଠିକ୍ ସମୟରେ ଅଫିସ୍ ଆସିଲେ । ନିଜ ନିଜର କାମ ଠିକ୍ ଭାବରେ କଲେ ଗୋଟିଏ ଭୟର ବାତାବରଣ ଭିତରେ । ପରିସ୍ଥିତି କ୍ରମେ ମାଡାମ୍ ସେଠାରୁ ବିଦାୟ ନେଇ ଅନ୍ୟତ୍ର ଗଲେ ।

ଦିନେ ମୁଁ ଅକସ୍ମାତ୍ ଜଣେ ଜେ.ଇଙ୍କ ଘରକୁ ପ୍ରାୟ ଅପରାହ୍ନ ୩ଟା ବେଳେ ଯାଇ ବେଲ୍ ଟିପିବାରୁ ଜେ.ଇ ଜଣକ ଆଖିମଳି ମଳି ନିଦରୁ ଉଠି ଆସି କବାଟ

ଖୋଲି ମତେ ଘର ଭିତରକୁ ଡାକିଲେ । ମୁଁ ପଚାରିଲି-ବାବୁ ! ଆପଣ ଆଜି ଛୁଟିରେ ଅଛନ୍ତି କି ? ସେ ଉତ୍ତର ଦେଲେ-ନା-ମ-ଭାଇନା । ମାଡାମ୍ କଣ ଅଛନ୍ତି ଯେ ଘରକୁ ଖାଇବାକୁ ମଧ ଆସି ହେବନାହିଁ । ସେ ଗଲା ପରଠୁ ମୁଁ ଘରେ ଖାଇ ଟିକିଏ ରେଷ୍ଟ ନେଇ ଅଫିସ୍ ଯାଉଛି । ଅଫିସ୍‌ରେ ଆଉ କାହାପ୍ରତି କାହାରି ଭୟ ନାହିଁ ।

ଦ୍ୱିତୀୟ ଘଟଣାଟି ମାତ୍ର ୪ ଦିନ ଆଗର କଥା । ମାଡାମ୍ ଶିକ୍ଷାବିଭାଗରେ ଥିବାବେଳେ ଶିକ୍ଷକ/ଶିକ୍ଷୟିତ୍ରୀ ମାନଙ୍କ ପାଇଁ ଡ୍ରେସ୍ କୋର୍ଡ ଲାଗୁକଲେ । ସମ୍ପୂର୍ଣ୍ଣ ବାଲୁଙ୍ଗା ଶିକ୍ଷା ବିଭାଗକୁ ସଜାଡି ଦେଲେ । ସ୍କୁଲ୍‌ରେ ଶିକ୍ଷୟିତ୍ରୀମାନଙ୍କର ହଲିଝୁଲି ନିଜ ମର୍ଜିରେ ଯିବା ଓ ସ୍କୁଲ୍‌ରେ ଉଲ୍ ବୁଣିବା ଅଭ୍ୟାସ ଏକାଥରକେ ବନ୍ଦ ହୋଇଗଲା । ଲୋକେ ଭାବିଲେ ଯାହେଉ, ଏତେଦିନେ ଏମାନେ ବାଟକୁ ଆସିଲେ । ମାତ୍ର ମାଡାମ୍ ଯିବାର ମାତ୍ର କେତେଟା ମାସ ପରର ଅବସ୍ଥା ଦେଖନ୍ତୁ ଏବଂ ତୁଳନା କରନ୍ତୁ ।

ହଁ-ମୁଁ ସେଦିନ ପୁରୀ ବସ୍‌ରେ କେତେଜଣ ଶିକ୍ଷୟିତ୍ରୀ ଭୁବନେଶ୍ୱରରୁ ପିପିଲି ଭିତରେ ବିଭିନ୍ନ ସ୍କୁଲ୍‌କୁ ଯିବାର ଦେଖିଲି । ୫ ଜଣଙ୍କ ଭିତରୁ ମାତ୍ର ୨ ଜଣ ଡ୍ରେସ୍ କୋଡ୍ ମୁତାବକ ପିନ୍ଧିଥିବା ବେଳେ ଅନ୍ୟ ୩ ଜଣ ବିଭିନ୍ନ ବର୍ଣ୍ଣର ସୌଖୀନ ଶାଢ଼ି ପିନ୍ଧିଥିଲେ । ମୁଁ ଜଣକୁ ପଚାରିଲି- ମାଡାମ୍ କେଉଁ ସ୍କୁଲ୍‌ରେ ଚାକିରି କରନ୍ତି ? ସେ ଗୋଟିଏ ସ୍କୁଲ୍‌ର ନାମ କହିଲେ । ମୋର ତା'ପର ପ୍ରଶ୍ନ ଥିଲା-ଆପଣ କ'ଣ ଆଉ ଡ୍ରେସକୋଡ ମାନି ପିନ୍ଧୁ ନାହାନ୍ତି କି ? ଭଦ୍ର ମହିଳା ହସି ହସି କହିଲେ-ମାଡାମ୍ ଯିବା ସଙ୍ଗେ ସଙ୍ଗେ ସବୁ ପୁଣି ଢ଼ିଲା । ଏବେ କିଏ କାହାକୁ କହିବାକୁ ନାହିଁ; ତେଣୁ ମନଇଚ୍ଛାରେ ଯାହା ପିନ୍ଧିଲେ ଚଳିବ ।

ଶିକ୍ଷିତ ଶିକ୍ଷିତା ମାନଙ୍କର ମନୋଭାବ ଦେଖିଲେ ଜଣାପଡେ ଆଇନ୍‌ର ବେତ୍ରାଘାତ ଭୟ ଥିବାଯାଏ ଏମାନେ ସଳଖ ବାଟରେ ଚାଲିବେ । ତାପରେ ଯେଉଁ ବଙ୍କାକୁ ସେହି ବଙ୍କା । ତାକୁଲକ୍ଷ୍ୟ କରି ମହାମାନ୍ୟ ଚାଣକ୍ୟ ଲେଖିଛନ୍ତି-'ମୁକ୍ତୋ ଦ୍ୱାଦଶ ବର୍ଷୈଭି ସ୍ୱପୁଚ୍ଛ ପ୍ରକୃତିଂ ଗତଃ' । ତେଣୁ ମାଡାମ୍ ଥିବା ଓ ନଥିବାର ଫରକ କେତେ ସ୍ପଷ୍ଟ ବିଚାର କରନ୍ତୁ ।

# ଯେ ମଲା ସେ ନିରୀହ

ଆଜିକାଲି ସମ୍ବାଦ ପତ୍ର ପୃଷ୍ଠା ଓଲଟାଇଲେ ସକାଳୁ ସକାଳୁ ମନଟା ବିଷାଦରେ ଭରି ଯାଉଛି । ହତ୍ୟା, ଧର୍ଷଣ, ଗଣ-ଧର୍ଷଣ, ରାହାଜାନୀ, ବନ୍ଧୁକରୁ ଗୁଳି, ବୋମାମାଡ଼ରେ ସମ୍ବାଦପତ୍ର ଭର୍ତ୍ତି । ତା ଛଡା ଆତଙ୍କବାଦୀ ମାନଙ୍କ ସାଧାରଣ ନିରୀହଜନତାଙ୍କୁ ହତ୍ୟାର ବିଭୀଷିକା ସହିତ ମାଓବାଦୀମାନଙ୍କର ତାଣ୍ଡବ ଦେଖିଦେଖି ମଣିଷ ଅତିଷ୍ଠ ହୋଇଯାଏ । ସାଧାରଣ ନାଗରିକଟିଏ ଯେ କୌଣସି ଉପାୟରେ ତାର ଶ୍ରମ ବିନିମୟରେ କିଛି ଅର୍ଥ ଉପାର୍ଜନ କରି ନିଜର ଗୁଜୁରାଣ ମେଣ୍ଟାଉଥିବା ବେଳେ ସେ ଶାନ୍ତିରେ କାଳାତିପାତ କରିବାକୁ ଚାହେଁ ।

ମାତ୍ର ଉପରୋକ୍ତ ନରାନ୍ତକ ପିଶାଚମାନେ ସମାଜରେ ଦିନରାତି ଅଶାନ୍ତି, କନ୍ଦଳ ସୃଷ୍ଟି କରି ନିଜର ଫାଇଦା ଉଠାନ୍ତି । ପୁଣି ଆଜି କାଲିର ରାଜନେତାମାନେ ଏହି ଗୁଣ୍ଡା ବଦମାସ୍‌ମାନଙ୍କୁ ପାଳି ପୋଷି ବେଳେବେଳେ ତାଙ୍କ କାମରେ ଲଗାଇବାକୁ ରଖିଥାଆନ୍ତି । ପୋଲିସ୍ ହାତରୁ ସେମାନଙ୍କୁ ସୁରକ୍ଷା ଦିଅନ୍ତି । ବିଚରା ପୋଲିସ୍ ନିଜ କର୍ତ୍ତବ୍ୟ ଦୃଷ୍ଟିରୁ ଏହି ଅସାମାଜିକ ମାନଙ୍କୁ ଆରେଷ୍ଟ କଲେ ସେମାନେ ରାଜନେତାଙ୍କ ପ୍ରଭାବରୁ ହେଉ ବା ଆଇନ୍‌ର ଫାଙ୍କରେ ହେଉ ମୁକୁଳିଯାଇ ଅଭିଯୋଗକାରୀ ଉପରେ ଆହୁରି ଅତ୍ୟାଚାର କରନ୍ତି, ଅତିଷ୍ଠ କରି ପକାନ୍ତି । ଏଥିରେ ଜଣେ ଭଦ୍ରଲୋକ, ଶାନ୍ତିରେ କାଳ କାଟିବ କିପରି ? ନିଜେ ଆଖିରେ ସବୁ ଦେଖିଥିଲେ ବି ସତ କଥା କହିବାକୁ ଯାଇ ବହୁମୂଲ୍ୟଦେବାକୁ ପଡୁଥିବାରୁ ଘଟଣା, ଦୁର୍ଘଟଣାରେ କେହି ସାକ୍ଷ୍ୟ ଦେବାକୁ ପ୍ରସ୍ତୁତ ହେଉନାହାନ୍ତି । ସାରା ସମାଜ ଯେମିତି ଗୋଟାଏ ବିଷ ବଳୟ ଭିତରେ ଅଣନିଃଶ୍ୱାସୀ ହୋଇ ପଡୁଛି । ଏହାର ଉପାୟ କଣ, ସମାଜ ବିଜ୍ଞାନୀମାନଙ୍କ ପରାମର୍ଶ ସରକାର ଗ୍ରହଣ କରି ଆଇନ୍‌ରେ ପରବର୍ତ୍ତନ କରନ୍ତୁ ।

ଯେ ଅନ୍ୟଠାରୁ ଲୁଣ୍ଠନ କରି ପେଟ ପୋଷେ, ଅନ୍ୟକୁ ହତ୍ୟା କରି ତାର ସମ୍ପତ୍ତି ଅପହରଣ କରେ, ତା ପାଇଁ ତା ନିଜର ପ୍ରାଣ ସବୁଠାରୁ ପ୍ରିୟ । ତେଣୁ ଏନକାଉଣ୍ଟର ସେ ଭଳି ଗୁଣ୍ଡା ବଦମାସ୍‌ମାନଙ୍କ ପାଇଁ ଏକମାତ୍ର ପନ୍ଥା । କଟକରେ

ପଦିଆ ସାହୁର ଏନକାଉଣ୍ଟର ପରେ ସମସ୍ତ ଗୁଣ୍ଡା-ବଦମାସ୍ ପ୍ରାଣ ଭୟରେ ଛ'ମାସ କାଳ କଟକ ଛାଡି ପଳାଇଲେ ବୋଲି ସମ୍ବାଦ ପ୍ରଚାରିତ ଓ ପ୍ରସାରିତ ହୋଇଥିଲା । ତେଣୁ ପେଶାଦାର ଗୁଣ୍ଡା, ଲୁଣ୍ଠନକାରୀମାନେ ସମାଜର ଦୁଷ୍ଟ-ବ୍ରଣ । ସେମାନଙ୍କର ଲିଷ୍ଟ ପ୍ରସ୍ତୁତ କରାଯାଇ, ହିଟ୍‌ଲିଷ୍ଟରେ ରଖଯାଉ ଏବଂ ପ୍ରଚାର କରାଯାଉ । ଦେଖିବେ ସେମାନେ ପ୍ରାଣଭୟରେ ସେ ସହର କ'ଣ ରାଜ୍ୟ ଛାଡି ପଳାଇବେ, ମାତ୍ର ଏଥିପାଇଁ ଆବଶ୍ୟକୀୟ ଆଇନ୍ ପ୍ରଣୟନ ହୋଇ ଉଚ୍ଚ ଅଧିକାରୀମାନଙ୍କୁ କ୍ଷମତା ଦିଆଯିବା ଦରକାର । ନଚେତ୍ ରାସ୍ତାରେ ତ ଜଣେ, ଝିଅ, ବୋହୂ ନିରାପଦ ନୁହନ୍ତି, ଏବେ ବଦ୍‌ମାସ୍ ମାନେ ଲୋକଙ୍କ ଘରେ ପଶିଗଲେଣି । ସେମାନଙ୍କ ହାତରେ ଅସ୍ତ୍ରଶସ୍ତ୍ର ଓ ଆଗ୍ନେୟାସ୍ତ୍ର ମାତ୍ର ଆଇନ୍‌କୁ ଡରି ଭଦ୍ରଲୋକଟିଏ ନିଜର ନିରାପତ୍ତା ପାଇଁ ଅଗ୍ନେୟାସ୍ତ୍ର ରଖିପାରୁନାହିଁ । ଅପରାଧୀମାନଙ୍କର ପୂର୍ବେ ଜେଲ୍ ଦଣ୍ଡ ପ୍ରତି ଭୟ ଥିଲା । ମାତ୍ର ବର୍ତ୍ତମାନ ବହୁ ସମାଜସେବୀ ତଥା ମାନବ ଅଧିକାର କର୍ମୀମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ଜେଲ୍ ସଂସ୍କାର ନାମରେ ଦଣ୍ଡବିଧାନ ଉଠିଗଲାଣି । ତାହା କେବଳ ଗୋଟିଏ ସଭ୍ୟ ସମାଜ ପାଇଁ ପ୍ରଯୁଜ୍ୟ । ଆମ ଭାରତର ଅସଭ୍ୟ ଅପରାଧୀମାନଙ୍କ ପ୍ରତି କୋହଳ ମନୋଭାବ ଯୋଗୁ ଅପରାଧ ବଢ଼ି ଚାଲିଛି । ପୋଲିସ୍ ବହୁ କଷ୍ଟରେ ନିଜ ଜୀବନକୁ ବାଜି ଲଗାଇ ଧରିଥିବା ଅସମାଜିକ ବ୍ୟକ୍ତି ୨/୪ ଦିନରେ ଜାମିନ୍ ପାଇ ପୁଣି ପୁରୁଣାଧନ୍ଦାରେ ସାମିଲ୍ ହେଉଛନ୍ତି । ଆଇନ୍‌କୁ ଯୁଗୋପଯୋଗୀ କରି ପରିବର୍ତ୍ତନ କରିବା ନିହାତି ଦରକାର ।

ବର୍ତ୍ତମାନ ଆତଙ୍କବାଦୀ, ମାଓବାଦୀ, ଗ୍ୟାଙ୍ଗଷ୍ଟର କେହିଜଣେ ପୋଲିସ ଗୁଳିରେ ମରିଗଲେ ବିରୋଧୀ ଦଳ, ମାନବଅଧିକାରୀ କର୍ମୀଠାରୁ ସମାଜସେବୀଯାଏ ନିରୀହ ଲୋକଙ୍କ ମୃତ୍ୟୁହେଲା କହି ବହୁ ତୁମ୍ବି ତୋଫାନ କରିବାଠାରୁ ବହୁ ଅଯୁକ୍ତିକର ଦାବି କରୁଛନ୍ତି । ଯଦି ପୋଲିସ୍ ଗୁଳିରେ ମରିଥିବା ଲୋକଟି ନିରୀହ ବୋଲି ସେମାନେ ଜାଣନ୍ତି ତେବେ ପ୍ରକୃତ ଦୋଷୀ କିଏ ମଧ୍ୟ ସେମାନେ ଜାଣିଥିବେ । ଏଭଳି ଅବାଞ୍ଛିତ ଦାବି କରୁଥିବା ଲୋକଙ୍କ ପଛରେ ସାଧାରଣ ଜନତା ଆଦୌ ନାହିଁ । ଏମାନେ ଅନେକ ସମାଜସେବୀ ନାମରେ ଟାଉଟରୀ କରୁଥିବାର ଦେଖାଯାଉଛି । ସେମାନେ ମିଳିମିଶି ମରିଥିବା ଲୋକଟିକୁ ନିରୀହ କହି ନାଁ ନେବାର ଗୋଟାଏ ରାହା ପାଇଯାଉଛନ୍ତି । ସେଭଳି ଫାର୍ଶ ବନ୍ଦ କରାଯାଉ ।

- ଅନୁପମ ଭାରତ

# ଭାରତରତ୍ନ ଉପାଖ୍ୟାନ

ବୁଦ୍ଧିଜୀବୀ ମହଲରେ ଆଲୋଚନା କରାଯାଏ- ଭାରତରେ ଅର୍ଥବଳରେ ଆଇନ ତିଆରି ହୁଏ ଓ ଆଇନ୍ ଭଙ୍ଗାଯାଏ । ଆମର ମାନ୍ୟବର ସାଂସଦ ତଥା ରାଜ୍ୟର ବିଧାୟକମାନେ ଯେଉଁ ଆଇନ୍ ମର୍ଯ୍ୟଦାବନ୍ତ ସଂସଦ ତଥା ବିଧାନସଭାରେ ତିଆରି କରନ୍ତି, ବ୍ୟକ୍ତିଗତ ଭାବରେ ସେମାନେ ସେ ଆଇନ୍‌ର ପରିସରଭୁକ୍ତ ନୁହନ୍ତି ବୋଲି ଦୈନଦିନ ଜୀବନଯାତ୍ରାରେ ପ୍ରମାଣିତ କରନ୍ତି । ଶାସନ ବ୍ୟବସ୍ଥା ମଧ୍ୟ ଆମ ଦେଶରେ କେବଳ ଗରିବ, ନିପାରିଲା ତଥା ନୀତିବାନ୍ ବ୍ୟକ୍ତିଙ୍କ ପ୍ରତି.ଅତିମାତ୍ରାରେ କଠୋର । ମାତ୍ର ରାଜନେତା ତଥା ଧନୀ ମାନଙ୍କ ପାଇଁ ଆଇନ୍‌ରେ ବହୁତ ଗଳିବାଟ ଅଛି ।

ଅତୀତରେ ଭାରତରତ୍ନଙ୍କୁ ନେଇ ବହୁବାଦ-ବିବାଦ ଆଲୋଚନା-ସମାଲୋଚନା କରାଯାଇଛି । ଭାରତରତ୍ନ ଯୋଗ୍ୟ ଲୋକଙ୍କ ପାଇଁ କଳା, ସାହିତ୍ୟ, ସମାଜସେବା, ବିଜ୍ଞାନ ଇତ୍ୟାଦି ପାଇଁ ଦିଆଯାଏ । ଏହି ରତ୍ନ-ଉପାଧି ପ୍ରଚଳିତ ହେବାପରେ ଉଦ୍ଦେଶ୍ୟ ମୂଳକ ଭାବରେ ପିଛିଲା ଦିନରୁ କାର୍ଯ୍ୟକାରୀ ହେଲା । ତେଣୁ ଜବାହରଲାଲ ନେହୁରୁ, ଆମ୍ବେଦକର, ରାଜେନ୍ଦ୍ର ପ୍ରସାଦ ଇତ୍ୟାଦି ଐତିହାସିକ ବ୍ୟକ୍ତି ମାନଙ୍କୁ ଦିଆଗଲାବେଳେ ମହାତ୍ମାଗାନ୍ଧିଙ୍କୁ ଛାଡିଗଲେ କାହିଁକି ? ପୁଣି ଐତିହାସିକ ବ୍ୟକ୍ତିମାନଙ୍କୁ ରତ୍ନ-ଉପାଧି ଦେଲାବେଳେ ଛତ୍ରପତି ଶିବାଜୀ, ରାଣୀ ଲକ୍ଷ୍ମୀବାଇ ଇତ୍ୟାଦିଙ୍କୁ ବାଦ୍ ଦିଆଗଲା କାହିଁକି ?

ବର୍ତ୍ତମାନ ଭାରତର ମହାନ୍ କ୍ରିକେଟ୍ ଖେଳାଳୀ ସଚୀନ୍ ତେନ୍ଦୁଲକରଙ୍କୁ ଦେବାକୁ ଦାବି ହେବା ଫଳରେ ସମ୍ବିଧାନ ସଂଶୋଧନ କରି କ୍ରୀଡାବିତ୍ ମାନଙ୍କୁ ମଧ୍ୟ ଦେବାକୁ ଆଇନ ପ୍ରଣୟନ କରାଗଲା । ଠିକ୍ ସେହି ଦୃଷ୍ଟିରୁ ମହାନ୍ ହକି ତାରକା ଧ୍ୟାନଚାନ୍ଦଙ୍କୁ କାହିଁକି ଉପେକ୍ଷା କରାଯିବ ? ତେଣୁ ଉଭୟଙ୍କୁ ମିଶାଇ ପ୍ରଦାନ କଲେ ଅନ୍ତତଃ ବହୁ କ୍ରୀଡାପ୍ରେମୀଙ୍କ ମନରେ ଅସନ୍ତୋଷ ରହିବ ନାହିଁ । ନଚେତ୍ କେବଳ ସଚୀନ ତେନ୍ଦୁଲକରଙ୍କୁ ଦୃଷ୍ଟିରେ ରଖି ସମ୍ବିଧାନ ବଦଳାଇବା ଆଗକୁ ଉତ୍ତମ ପରମ୍ପରା ସୃଷ୍ଟିକରିବ ନାହିଁ ।

ସେ ଦୃଷ୍ଟିରୁ ବିଚାରକଲେ କଳାକାର ଅମିତାଭ ବଚ୍ଚନଙ୍କ ବିଷୟ ମଧ୍ୟ ଆଲୋଚନାକୁ ଆସେ । ଜଣେ ମହାନ୍ କଳାକାର ରୂପେ ଅମିତାଭ ଯେ ଭାରତ ନୁହେଁ – ଭାରତ ବାହାରେ ମଧ୍ୟ ପ୍ରଭୂତ ସୁନାମ ଅର୍ଜନ କରିଛନ୍ତି, ସେଥିରେ ସନ୍ଦେହ ନାହିଁ । ଏତେ ସୁଖ୍ୟାତି ସତ୍ତ୍ୱେ ତାଙ୍କୁ ଭାରତରତ୍ନ ନଦିଆଯିବ କାହିଁକି ?

ପୁନଶ୍ଚ ପ୍ରଶ୍ନ ଉଠେ କ୍ରୀଡାବିତ୍‌ମାନଙ୍କ ପାଇଁ ଆମେ ଦେଶରେ ଅର୍ଜୁନ ପୁରସ୍କାର ଭଳି ଶ୍ରେଷ୍ଠ ପୁରସ୍କାର ଥାଉ ଥାଉ ପୁଣି ସେମାନଙ୍କ ପାଇଁ ଭାରତରତ୍ନ କାହିଁକି ? ଆମେ ଏହିଭଳି ଭାବରେ ଭାରତରତ୍ନ ଦେଇ ଚାଲିଲେ ଦିନ ଆସିବ, ଉକ୍ତ ରତ୍ନର ମର୍ଯ୍ୟାଦା ଆଉ ରହିବ ନାହିଁ । ପୁଣି ନେଲସନ୍ ମାଣ୍ଡେଲାଙ୍କୁ ଭାରତରତ୍ନ ଦିଆଗଲା । ଏହାର କାରଣ କଣ ? ଭାରତରତ୍ନ କେବଳ ଭାରତୀୟଙ୍କ ପାଇଁ ନା ବିଶ୍ୱର ବିଭିନ୍ନ କ୍ଷେତ୍ରରେ ସୁନାମ ଅର୍ଜନ କରିଥିବା ବ୍ୟକ୍ତି ବିଶେଷଙ୍କ ପାଇଁ ଉଦ୍ଦିଷ୍ଟ । ଏହା ପ୍ରଥମେ ନିର୍ଦ୍ଧାରିତ ହେବା ଉଚିତ୍ । ତା ନ ହେଲେ ଏହି ତାଲିକାରେ ବ୍ରହ୍ମଦେଶର ବିପ୍ଳବିଣୀ ନାରୀ ନେତ୍ରୀ ସୁ୍ୟକି, ବାରାକ୍ ଓବାମା, ଲେଡି ଗାଗା ଇତ୍ୟାଦିଙ୍କ ନାମ ଆସିବ । ପୁନଶ୍ଚ ଏହି ତାଲିକା ଆହୁରି ଲମ୍ବି ଚାଲିଲେ ସିନେତାରକା ଶ୍ରୀଦେବୀ, ମାଧୁରୀ ଦୀକ୍ଷିତ୍ ଓ ଐଶ୍ୱର୍ଯ୍ୟା ରାୟଙ୍କ ନାମ ଆସିବା ବିଚିତ୍ର ନୁହେଁ । ପୁଣି ଦିବଂଗତ ପପ୍ ଡ୍ୟାନସର ମାଇକେଲ୍ ଜ୍ୟାକସନ, ବୈଶାଳୀର ନଗରବଧୂ ତଥା ରାଜନର୍ତ୍ତକୀ ଆମ୍ରପାଲୀ ମଧ୍ୟ ମରଣୋତ୍ତର ଭାରତରତ୍ନ ପାଇବାକୁ ହକ୍‌ଦାର ବୋଲି ଯଦି ଦାବି କେଉଁ ସ୍ତରରୁ ଆସେ ତା ପାଇଁ କ'ଣ ପ୍ରତିକାର କରାଯିବ କିମ୍ବା କେଉଁ ଉତ୍ତର ଦିଆଯିବ ଏବେଠାରୁ ଚିନ୍ତା କରିବା ଦରକାର ନୁହେଁ କି ? ନଚେତ୍ ଦିନ ଆସିବ, ରାକ୍ଷୀ ସାୱନ୍ତ, ବିପାଶା ବସୁ ମଧ୍ୟ ଭାରତରତ୍ନର ହକ୍‌ଦାର ହେବେ ।

– ଅନୁପମ ଭାରତ ୧୬.୨.୨୦୧୨

# ଆନ୍ନା କ'ଣ ସଂସଦ ଉପରେ ?

ଏହି ପ୍ରଶ୍ନ ବହୁଲୋକ ବହୁଭାବରେ ପଚାରନ୍ତି, ବ୍ୟାଖ୍ୟା ମଧ୍ୟ କରନ୍ତି । ଏହାର ସରଳତମ ଉତ୍ତର-ନା, ସଂସଦ ଉପରେ ସାର୍ବଭୌମ ଭାରତରେ କେହି ନୁହନ୍ତି ।

ମାତ୍ର ଏହା ଏହି ପ୍ରଶ୍ନର ସମ୍ପୂର୍ଣ୍ଣ ଉତ୍ତର ନୁହେଁ । ପ୍ରଥମେ ଦେଖାଯାଉ ଆନ୍ନା ହଜାରେ କିଏ । ଆନ୍ନା ଜଣେ ନିଷ୍କଳଙ୍କ ବ୍ୟକ୍ତିତ୍ୱ ବିଶିଷ୍ଟ ସଚ୍ଚା ସମାଜସେବୀ । ଆଜିକାଲି ଲାଭ ଖାଇବାକୁ ସରକାରୀ ସମ୍ପତ୍ତି ମାୟାଜାଲରେ ଛନ୍ଦି ଲୁଣ୍ଠନ କରିବାକୁ ବହୁ ଧୂର୍ତ୍ତ ଲୋକ ଏନଜିଓ ମାନ ଗଠନ କରି ନିଜକୁ ସମାଜସେବୀ ବୋଲି ପରିଚୟ ଦେଉଛନ୍ତି । ଏମାନେ 'ଠକ' ପର୍ଯ୍ୟାୟଭୁକ୍ତ, କ୍ୱଚିତ୍ 'ଏନଜିଓ' ପ୍ରକୃତରେ ସମାଜସେବା କରୁଥିବା ବେଳେ, ପ୍ରାୟ ସମସ୍ତେ ଲୁଣ୍ଠନପଟୁ । ମୋର ନିଜ ଅଭିଜ୍ଞତାରୁ ମୁଁ ଜାଣେ, ଏକଦା ଜଣେ ଓକିଲ ଗୋଟିଏ ଏନଜିଓ ଗଠନ କରି ନିଜେ ତା'ର ସର୍ବେସର୍ବା ଥାଆନ୍ତି । ତାଙ୍କର କନ୍ଧମାଳରେ ଗୋଟିଏ ସ୍କୁଲ୍ କରି ଅଶିକ୍ଷା ଦୂରୀକରଣ କାର୍ଯ୍ୟ କରିବାର ଘୋଷଣା ଥାଏ । ମୁଁ ତାଙ୍କୁ ସବୁବେଳେ କଟକରେ ଥିବା ଦେଖି ଥରେ ପ୍ରଶ୍ନ କଲି-ତୁମ ସ୍କୁଲ୍ କନ୍ଧମାଳରେ ଅଥଚ ତୁମେ କ'ଣ ସବୁବେଳେ କଟକରେ ? ସେ ଉତ୍ତର ଦେଲେ-ଖଣ୍ଡିଏ ପଟା ମାତ୍ର ମୋର ବ୍ୟାନର । ମୁଁ ଏଠାରେ ରହିଲେ ତ ଟଙ୍କା ପଇସା ସରକାରଠୁ ଆଣିବି । କିଏ ଏ ଦେଶରେ କ'ଣ କେଉଁଠି କରି ପକାଉଛି ଯେ ମୁଁ କଲିନାହିଁ ?

ଆଉ ଜଣେ ଏନଜିଓ ବାଲା ଘରଭଡା ନେବାକୁ ଘର ଖୋଜି ମୋ ପାଖକୁ ଆସିଥିଲେ । ପ୍ରାୟ ୧୨ ବର୍ଷ ଆଗର କଥା । ଯୁବକ ଜଣକ କୋର୍ଟ, ପ୍ୟାଣ୍ଟ-ଟାଇ ପିନ୍ଧି ଗୋଟିଏ ଏସି କାରରେ ଆସିଥାନ୍ତି । ମୁଁ ପଚାରିଲି-ଆପଣ କଣ କରନ୍ତି ଆଜ୍ଞା ? ସେ ଉତ୍ତର ଦେଲେ-ମୁଁ ଗୋଟିଏ ଏନଜିଓ କରିଛି । ମୋ ଉତ୍ତର ଥିଲା-ଆପଣ ତ ଅନୁଷ୍ଠାନର ସବୁଟଙ୍କାକୁ ନିଜର ବିଳାସରେ ଖର୍ଚ୍ଚ କରୁଥିବେ-କି ଏନଜିଓ ଆପଣ କରିଛନ୍ତି ? ଏତିକିରେ ମୋ ମନୋବୃତ୍ତିର ପରିଚୟ ପାଇଁ ଭଦ୍ରଲୋକ ଚୁପ୍ କରି ଚାଲିଗଲେ ।

ଏହି କଥା କହିବାର ଉଦ୍ଦେଶ୍ୟ-ଏମାନେ ସମାଜସେବୀ । ଆମ ରାଜନେତାମାନେ ଦାବି କରନ୍ତି-ସେମାନେ ସମାଜସେବୀ । ମାତ୍ର ସମାଜରେ ରକ୍ତ ଶୋଷଣ କରି ଦେଶକୁ ଖୋଳ କରିବା ଜନସାଧାରଣଙ୍କ ଅର୍ଥକୁ ନିଜ ସ୍ୱାର୍ଥରେ ଲଗାଇବା ବ୍ୟତୀତ ଏମାନଙ୍କର ଦ୍ୱିତୀୟ ଚିନ୍ତା ନଥାଏ । ତେଣୁ ସେମାନେ ସଂକୀର୍ଣ୍ଣମନା, ସ୍ୱାର୍ଥପର ।

ସେ ଦୃଷ୍ଟିରୁ ବିଚାର କଲେ ଆନ୍ନା ହଜାରେ ବର୍ତ୍ତମାନ ଯୁଗର ଜଣେ ଦେବଦୂତ । ନିଜର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଦେଶପାଇଁ ତଥା ଦେଶର ଜନସାଧାରଣଙ୍କ ହିତ ପାଇଁ ଲଢ଼େଇ କରୁଥିବା ବ୍ୟକ୍ତିଙ୍କୁ ଆଉ କଣ ବୋଲି ଭାବିବା ? ଚାରିଆଡେ ସ୍ୱାର୍ଥନ୍ୱେଷୀ ମାନଙ୍କର ଚକ୍ରବ୍ୟୁହ । ଏ ଚକ୍ରବ୍ୟୁହକୁ ଭାଙ୍ଗିବାକୁ ପ୍ରାଣପାତ କରିବାକୁ ଯାଇ ଯେ ଆଜି ଭାରତର ଦୁଃସ୍ଥ ଜନତାର ପ୍ରତିନିଧି ରୂପେ ଦଣ୍ଡାୟମାନ ହୋଇଛନ୍ତ । ସେ ଭାରତର ନିଷ୍ପେଷିତ, ଲୁଣ୍ଠିତ ଜନତାର ପ୍ରତୀକ, କୋଟି କୋଟି ଲୋକଙ୍କର ହୃଦୟରେ ଅଧିଷ୍ଠିତ ଦେବଦୂତ । ଗଣତନ୍ତ୍ରର ପ୍ରକୃତ କ୍ଷମତାଧାରୀ ହେଲେ ଜନତା ଜନାର୍ଦ୍ଦନ । ତେଣୁ ଆନ୍ନାଙ୍କର ଡାକରାରେ ସ୍ୱତଃପ୍ରବୃତ୍ତ ଭାବରେ ଜନସାଧାରଣଙ୍କ ହୃଦୟରେ ଉଦ୍‌ବେଳନ ସୃଷ୍ଟି ହୋଇ ପାରୁଛି । ଆନ୍ନା ଆଜି ଆଉଜଣେ ବ୍ୟକ୍ତି ବିଶେଷ ନୁହନ୍ତି । ସେ ଏକ ଆନ୍ଦୋଳନ, ଏକ ଅନୁଷ୍ଠାନ । ତେଣୁ ଯେମିତି ଭାରତର ଜନତା ସଂସଦର ଉର୍ଦ୍ଧ୍ୱରେ, ସେମିତି ଆନ୍ନା ମଧ ସଂସଦର ଉର୍ଦ୍ଧ୍ୱରେ । କେବଳ ଜନମତକୁ ବିଭ୍ରାନ୍ତ କରିବାକୁ ତଥାକଥିତ କେତେକ କ୍ରୀତ-ବୁଦ୍ଧିଜୀବୀ ଏବଂ ଦଳେ ଚାଟୁକାର ଆଜି ପ୍ରଶ୍ନ କରୁଛନ୍ତି-ଆନ୍ନା କ'ଣ ସଂସଦ ଉପରେ ?

ଆଜି ସଂସଦରେ ସାଂସଦ ମାନଙ୍କର ନୈତିକତା ଉପରେ ଗଣମାଧମ ଠାରୁ ଆରମ୍ଭ କରି ଜନସାଧାରଣ ଆଙ୍ଗୁଠି ନିର୍ଦ୍ଦେଶ କରୁଛନ୍ତି କାହିଁକି ? ସଂସଦର ପବିତ୍ରତା ରକ୍ଷା କରିବାକୁ ଶପଥ ନେଇଥିବା, ସମ୍ବିଧାନ ଓ ଦେଶନାମରେ ଶପଥ ଗ୍ରହଣ କରିଥିବା ସାଂସଦମାନେ ପ୍ରଶ୍ନ ପଚାରିବାକୁ ଟଙ୍କା ନିଅନ୍ତି । ଭୋଟ୍ ନେବାକୁ ଗୋରୁହାଟରେ ଗୋରୁଗାଈ ଭଳି ବିକ୍ରୟ ହୁଅନ୍ତି । ଏହା ଦେଖିବା ପରେ, ଜାଣିବା ପରେ ଦେଶର ବୁଦ୍ଧିଜୀବୀମାନେ ପ୍ରକୃତ ସମାଜସେବୀମାନେ ନିଶ୍ଚିତରେ ମର୍ମାନ୍ତିକ ଦୁଃଖ ଅନୁଭବ କରୁଛନ୍ତି । ସଂସଦଭଳି ଗଣତନ୍ତ୍ରର ମହାନପୀଠର ପବିତ୍ରତା ରକ୍ଷା କରିବା ସାଂସଦମାନଙ୍କର ଦାୟିତ୍ୱ ନୁହେଁକି ?

ତେଣୁ ଆନ୍ନା ନିଃସ୍ୱାର୍ଥପର ଭାବରେ ଦେଶର ହିତ ପାଇଁ ଯେଉଁ ଦାବିମାନ ଉପସ୍ଥାପନ କଲେ-ତାକୁ ଏଡାଇ ଯିବାକୁ ସଂସଦରେ ଯେଉଁ ଛଳନାତ୍ମକ ବିଲ୍ ଉପସ୍ଥାପନ କରାଗଲା-ତାହା ଏକାନ୍ତ ମୂଲ୍ୟହୀନ ତଥା ଅବାନ୍ତର, ଅନ୍ତଃସାରଶୂନ୍ୟ । କେବଳ ଜନମତକୁ ବିଭ୍ରାନ୍ତ କରିବାକୁ 'ସଶକ୍ତଲୋକପାଳ ବିଲ୍' କରି ଜନତାକୁ ପ୍ରତାରଣା କରାଯାଉଛି । ସେହି ଚକ୍ରାନ୍ତକାରୀମାନଙ୍କର ମୁଖପାତ୍ର ସାଜିଥିବା ଦଳେ ଲୋକଙ୍କର ପ୍ରଶ୍ନ-ଆନ୍ନା କଣ ସଂସଦ ଉପରେ ? ଏହାର ଜବାବ ଭାରତର ଜନସାଧାରଣ ଅଚିରେ ଦେବେ ବୋଲି ଆଶା କରାଯାଏ ।

(ଅନୁପମଭାରତ)

# ଗଣତାନ୍ତ୍ରିକ ପରମ୍ପରା

ଅଧୁନା ରାଜନୀତିରେ ପରମ୍ପରା ଶବ୍ଦର ଏଭଳି ବ୍ୟାପକ ବ୍ୟବହାର ଓ ଅର୍ଥ, ଅର୍ଥାନ୍ତର କରାଗଲାଣି ଯେ ଏହାର ପ୍ରକୃତ ଅର୍ଥକୁ କେହି ସମ୍ମାନ ନ ଦେଇ ନିଜ ସୁବିଧାହାସଲ ପାଇଁ କେବଳ ଏହି ଶବ୍ଦଟି ବ୍ୟବହାର କରୁଛନ୍ତି । ବହୁ ବର୍ଷ ଆଗର କଥା-ନେହରୁଜୀ ପ୍ରଧାନମନ୍ତ୍ରୀ ଥାଆନ୍ତି । ଦଳପାଣ୍ଠି ପାଇଁ ଜଣେ ମନ୍ତ୍ରୀ କିଛି ଅର୍ଥ ଆଦାୟ କରିଥିବାର ଆଲୋଚନା ହେବାରୁ ନେହରୁଜୀ ତାଙ୍କୁ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେବାକୁ କହିଲେ । ତା ଛଡା ଶାସ୍ତ୍ରୀଜୀ ରେଳ ଦୁର୍ଘଟଣାର ଦାୟିତ୍ୱ ନିଜ ମୁଣ୍ଡକୁ ନେଇ ମନ୍ତ୍ରୀତ୍ୱରୁ ଇସ୍ତଫା ଦେଇଥିବାଭଳି ଉଚ୍ଚ ପରମ୍ପରା ଏହି ଦେଶରେ ରଖିଯାଇଛନ୍ତି ।

ଏହାକୁ ଦୃଷ୍ଟିରେ ରଖି ଆଜିର ନେତାମାନଙ୍କୁ ଦେଖିଲେ ଜଣେ ଲଜ୍ଜିତ ହେବ । ଟୁ-ଜି ଦୁର୍ନୀତିରେ ଏକଲକ୍ଷ ଚଉସ୍ତରୀ ହଜାର କୋଟି ଟଙ୍କାର ଦୁର୍ନୀତି ସିଏଜି ରିପୋର୍ଟ କଲା ପରେ ଓ ନିକଟରେ କୋଇଲା ଦୁର୍ନୀତିର ପର୍ଦ୍ଦାଫାସ କଲାପରେ ଆମ ମାନ୍ୟବର ମାନେ ସିଏଜିଙ୍କୁ ନିନ୍ଦା କରି ତାଙ୍କର କ୍ଷମତା ଉପରେ ପ୍ରଶ୍ନ ଉଠାଇଲେ । ଜଣେ ମନ୍ତ୍ରୀତ କହିଲେ ଟୁ-ଜିରେ ସରକାରଙ୍କର ଗୋଟିଏ ଟଙ୍କା ମଧ କ୍ଷତି ହୋଇନାହିଁ । ସୁପ୍ରିମ୍‌କୋର୍ଟଙ୍କ ତାଗିଦ୍‌ରେ ସେ ଚୁପ୍ ରହିଲେ । ଏଭଳି ସର୍ବଭକ୍ଷ ରାଜନେତା, ନିମ୍ନମାନର ପ୍ରବଞ୍ଚକ କେବଳ ଭାରତୀୟ ଗଣତନ୍ତ୍ରରେ ସମ୍ଭବ । କାରଣ ଆମ ପ୍ରଧାନମନ୍ତ୍ରୀ ଜଣେ ରୁଆ ପ୍ରଧାନମନ୍ତ୍ରୀ । ଯାହାଙ୍କର ମୂଳନାହିଁ କି ଚେର ମଧ ନାହିଁ । ସେ କେବଳ ମୂକ ଦର୍ଶକ । ଅନେକ ବର୍ଷ ତଳେ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା- କେହି ଜଣେ ମାନ୍ୟବର ସଦସ୍ୟ ଜଣେ ମନ୍ତ୍ରୀଙ୍କୁ ଚମ୍ବଲର ଡକାୟତ କହିଥିବାରୁ ଚମ୍ବଲର ଡକାୟତମାନେ ମାନହାନି ମକଦ୍ଦମା କରିବାକୁ ଧମକ ଦେଲେ । ଏଥିରେ ସତ୍ୟ ଥାଉ ବା ନଥାଉ ଏହି ଉକ୍ତିରେ ଆମ ମନ୍ତ୍ରୀମାନଙ୍କ ଲୁଟିବା ପ୍ରବୃତ୍ତି ଅନ୍ୟାୟ, ଅତ୍ୟାଚାରରେ ଚମ୍ବଲ ଡକାୟତମାନଙ୍କୁ ଟପି ଯାଇଥିବାର ଶ୍ଳେଷ ପ୍ରୟୋଗ କରାଯାଇଛି ।

ପ୍ରଶ୍ନ ଉଠେ, ଏଭଳି ଉକ୍ତି ପାଇଁ ଆମ ରାଜନେତାମନେ ଜନସାଧାରଣଙ୍କୁ ପ୍ରଲୋଭିତ କରୁଛନ୍ତି । ଲୋକସଭା, ରାଜ୍ୟସଭା ତଥା ବିଭିନ୍ନ ରାଜ୍ୟ

ବିଧାନସଭାମାନଙ୍କରେ ଯେଉଁ ହଟ୍ଟଗୋଳ ହେଉଛି, ଯେଉଁ ଭଙ୍ଗାଭଙ୍ଗି ହେଉଛି, ସେ ସମସ୍ତ ସେମାନଙ୍କର ପୈତୃକ ସମ୍ପତ୍ତି ନୁହେଁ । ଏ ଦେଶର ଦରିଦ୍ର ଜନସାଧାରଣଙ୍କଠାରୁ ଆଦାୟ ଟଙ୍କାରେ କିଣାଯାଉଛି । ଏତିକି ବିଚାର ଆମ ରାଜନେତାମାନଙ୍କର ଅଛି କି ? ଭଙ୍ଗାଭଙ୍ଗି କରିଥିବା ବ୍ୟକ୍ତିଙ୍କ ଦରମାରୁ ଯଦି ତାର ମୂଲ୍ୟ ଆଦାୟ କରାଯାଆନ୍ତା, ତେବେ ବୋଧହୁଏ ଏହାର ପୁନରାବୃତ୍ତି ହୁଅନ୍ତା ନାହିଁ ।

ଏହି ବ୍ୟାଧି ଲୋକସଭା, ବିଧାନସଭା ପରିସର ଅତିକ୍ରମ କରି କର୍ପୋରେସନ ଓ ମ୍ୟୁନିସିପାଲିଟି ମିଟିଂରେ ମଧ୍ୟ ପ୍ରତିଫଳିତ ହେଲାଣି । ମାତ୍ର ଅଳ୍ପ ଦିନ ତଳେ କଟକ ମହାନଗର ମିଟିଂରେ କର୍ପୋରେଟର ମାନଙ୍କର ବ୍ୟବହାର, ଫିଙ୍ଗା ଫୋପଡା ଓ ଭଙ୍ଗା ଭଙ୍ଗି ନାଟକରେ ଯେଉଁ କ୍ଷତି ହେଲା, ତାକୁ ସେମାନଙ୍କଠାରୁ ଭରଣା କରାଗଲେ ଗୋଟିଏ ପରମ୍ପରା ହୋଇ ରହନ୍ତା । କାରଣ କ'ଣ ? କାରଣ ହେଲା ନୂଆ ଜଣେ ଆଇଏଏସ କମିଶନର ଅର୍ଥବର୍ବାଦିର ତର୍ଜମା କଲେ । କର୍ପୋରେଟର ବା ସେମାନଙ୍କର ନିଜ ଲୋକଙ୍କ ଦ୍ୱାରା ହୋଇଥିବା ହେରଫେରର ତଦନ୍ତ କଲେ । ତା ସହିତ ମେୟରଙ୍କ ବିବୃତ୍ତି ସେ ସମ୍ପର୍କରେ କିପରି ହାସ୍ୟକର ଓ ଲଜ୍ଜାକର ଯେଉଁମାନେ ଟିଭିରେ ଦେଖିଥିବେ, ଶୁଣିଥିବେ, ସେମାନେ ଜାଣି ପାରିବେ ।

ଶୁଣାଯାଏ, କର୍ପୋରେଟର ମାନେ କଟକରେ ଅସାଧୁ ଉପାୟରେ ରାଜକୋଷ ଲୁଣ୍ଠନ କରିଛନ୍ତି । ସେ ସମସ୍ତ ଘଟଣାର ଭିଜିଲାନସ ତଦନ୍ତ ହେଲେ ପ୍ରକୃତ ସତ୍ୟ ପଦାକୁ ଆସିବ । ତା ଛଡା ଆମ ସରକାରଙ୍କର ନିର୍ମଳ ଭାବମୂର୍ତ୍ତିର ଗୋଟାଏ ଉଚ୍ଚ ପରମ୍ପରା ପ୍ରତିଷ୍ଠିତ ହେବ । ମହାନଗର ମାନଙ୍କର ଦୁର୍ନୀତିଗ୍ରସ୍ତ କର୍ପୋରେଟରଙ୍କର ସମ୍ପତ୍ତି ଭିଜିଲାନସ୍ ଦ୍ୱାରା ଯାଞ୍ଚ କରାଯାଉ । ପୁନଶ୍ଚ ଜନସାଧାରଣଙ୍କର ସେମାନେ ବିଶ୍ୱାସ ଭାଜନ ହୁଅନ୍ତୁ ।

(ଅନୁପମଭାରତ) ୨୬.୧୦.୨୦୧୨

# ଭୁବନେଶ୍ୱରରେ ଘରଭଡା

ସମ୍ବାଦପତ୍ରରେ ବେଳେବେଳେ ଦେଖିବାକୁ ମିଳୁଛି-କେହି କେହି ଭୁବନେଶ୍ୱରରେ ଘରଭଡା ଅତିରିକ୍ତ ବୋଲି କହି ତାର ପ୍ରତିକାର ପାଇଁ ସରକାରଙ୍କ ହସ୍ତକ୍ଷେପ ଲୋଡୁଛନ୍ତି । ଏହା ଏକ ଉତ୍ତମ ପରିକଳ୍ପନା । ଯେଉଁ ସରକାରଙ୍କ ପାଖରେ ଆମେ ଫେରାଦ ହେଉଛେ-ସେହି ସରକାର ମାତ୍ର ୨ ମାସ ଆଗରୁ ଇଲେକ୍ଟ୍ରି ବିଲ୍‌ରେ ପ୍ରାୟ ୨ ଗୁଣ ବୃଦ୍ଧି କରିଛନ୍ତି । ପୁନଶ୍ଚ ବର୍ଦ୍ଧିତ ହାର ୧ ବର୍ଷ ପୂର୍ବରୁ ଲଗାଇବାକୁ ସମ୍ମତି ଦେଇଛନ୍ତି ।

ମାତ୍ର କେତେଦିନ ପୂର୍ବରୁ କେନ୍ଦ୍ର ସରକାର 'ଆମ ଆଦ୍‌ମୀ'ର ତଣ୍ଟି ଚିପି ଲହୁ ନିଗାଡି ତେଲ କମ୍ପାନୀର ମାଲିକ ଓ ଅଫିସର ମାନଙ୍କ ପେଟ ବଢ଼ାଇବାରେ ସାହାଯ୍ୟ କରିଛନ୍ତି । ଡିଜେଲ୍ ଦର ଏକା ଥରକେ ୫ ଟଙ୍କା ବଢ଼ିବା ଦ୍ୱାରା ସବୁଜିନିଷର ଦର ସେହିଦିନଠାରୁ ବଢ଼ିଗଲା । ପୁଣି ଗ୍ୟାସ ସିଲିଣ୍ଡର ପରିବାର ପିଛା ୬ ଟା ବର୍ଷକୁ କରିବା ଦ୍ୱାରା ଓ ସେଥିରେ ଦର ବଢ଼ାଇବା ଦ୍ୱାରା ସାଧାରଣ ଜନତାଙ୍କୁ ତଳିତଳାନ୍ତ କରିଛନ୍ତି । ସେହି ହିସାବ ଭିତରେ ମନ୍ତ୍ରୀ, ସାଂସଦ, ବିଧାୟକମାନେ ଆସୁଛନ୍ତି କି ନାହିଁ- ସେ ବିଷୟରେ କିଛି ସୂଚନା ଦେଇ ନାହାନ୍ତି । ଏଥିରେ ଜଣେ ଚଳିବା ପାଇଁ ସବୁ ମହଙ୍ଗା ହେଲା ବେଳେ ଘରଭଡା ବଢ଼ିବ ନା ନାହିଁ ?

ପୁଣି ଘରଭଡା ବଢ଼ିବା କମିବା ଲୋକଙ୍କ ଚାହିଦା ଉପରେ ନିର୍ଭର କରେ । ଗ୍ରାମ ଗ୍ରାମାନ୍ତର ଲୋକେ ଯଦି ସହରାଭିମୁଖୀ ହୋଇ ଭିଡ ଜମାଇବେ, ତେବେ ତ ଘରଭଡା ବଢ଼ିବାକୁ ବାଧ୍ୟ । ଦିନଥିଲା, ଏହି ଭୁବନେଶ୍ୱରରେ ସବୁସାହିରେ, ସବୁ ୟୁନିଟ୍‌ରେ ଲେଖା ଝୁଲୁଥିଲା 'ଟୁ-ଲେଟ୍' । ମାତ୍ର ହଠାତ୍ ଅହେତୁକ ଭାବରେ ଇଞ୍ଜିନିୟରିଂ କଲେଜ ଗୁଡିଏ ବଢ଼ିଯିବାରୁ ଛାତ୍ରମାନଙ୍କ ପାଇଁ ଘରର ଆବଶ୍ୟକତା ପଡ଼ିଲା । ସହରରେ ଜଣେ କର୍ମଚାରୀ ଜୀବନ କାଳ ଭିତରେ ଋଣ କରଜ କରି ଘର ଖଣ୍ଡିଏ କରି ଅବସର ବେଳକୁ ନିଜେ ରହି, ଗୋଟିଏ ଅଂଶ ଭଡା ଲଗାଇ ନିଜର କୁଟୁମ୍ବ ପ୍ରତିପୋଷଣ କରେ । ଭଡା ନ ଲାଗିଲେ ଘରଟି ଖାଲି ରହିଲେ ସେତେବେଳେ

ତା'ର ଦୁଃଖ ଦୂର କରିବାକୁ କେହି ଦୌଡ଼ି ଆସେ କି ? ଅଥଚ ଆଜି ଯଦି ସେ ଘରଭଡାରୁ ଦି' ପଇସା ପାଇଲା-ସେଥିରେ କାହାରି ଗାତ୍ରଦାହ ହେବା ଉଚିତ୍ ନୁହେଁ ।

ବର୍ତ୍ତମାନ ଭୁବନେଶ୍ୱରରେ ଜମିଦର, ଇଟା, ବାଲି, ସିମେଣ୍ଟ ଦର ସାଙ୍ଗେସାଙ୍ଗେ ମିସ୍ତ୍ରୀ ଓ କୁଲି ମଜୁରୀ ଯାହା-ସାଧାରଣ ଗୃହସ୍ଥଟିଏ ସାମାନ୍ୟ ରିପାରିଂ କରିବାକୁ କୁଣ୍ଠିତ ହେଉଛି । କେହିକେବେ ଇଟାଖଣ୍ଡକୁ ୭ ଟଙ୍କା କାହିଁକି ହେଲା, ପଥର ଖଣ୍ଡକୁ ଶହେଟଙ୍କା, ସିମେଣ୍ଟ ବସ୍ତା ଟ. ୩୫୦ ଓ ବାଲି ଟ୍ରିପ୍‌ଟା ଦୁଇ ହଜାର, ଚିପ୍‌ସ ୮ ହଜାର ଟଙ୍କା କାହିଁକି ହେଲା ପ୍ରଶ୍ନ କରୁନାହିଁ । ଲୁହାଦର ତ ନ କହିଲେ ଭଲ । ସେଥିରେ ଆମେ ଶସ୍ତାରେ ଘରଟିଏ ପାଇବା କେମିତି ?

ଏହାର ପ୍ରତିକାର ପାଇଁ ସରକାର ନିଜେ ସୁଲଭ ମୂଲ୍ୟରେ ଘର ତିଆରି କରି ଆବଶ୍ୟକତା ଭିତ୍ତିରେ ଯୋଗାଇ ଦିଅନ୍ତୁ । ନତୁବା ସାମଗ୍ରୀ ମାନଙ୍କର ମୂଲ୍ୟ ନିର୍ଦ୍ଧାରଣ କରି ଯୋଗାଇବାର ବ୍ୟବସ୍ଥା କରନ୍ତୁ ।

ଘରଭଡା କମ୍ ବେଶୀ ଏକ ଆପେକ୍ଷିକ ଘଟଣା । ଆବଶ୍ୟକତା କମ୍ ଥିଲେ ଶସ୍ତାରେ ମିଳିବ । ଆବଶ୍ୟକତା ଅତ୍ୟଧିକ ହେଲେ ଭଡା ନିଶ୍ଚୟ ବଢ଼ିବ । କେବଳ କେତେଜଣ ଘରମାଲିକଙ୍କୁ ଆମେ ମନବୋଧ କରି ଗାଳିଦେଲେ ଘରଭଡା କମିବାରେ ତାହା ଆଦୌ ସାହାଯ୍ୟ କରିବ ନାହିଁ ।

ଏହି ଲେଖାରୁ କେହି ଯେମିତି ନ ବୁଝନ୍ତି ଯେ ମୋର ଗୁଡାଏ ଘର ଅଛି ଏବଂ ମୁଁ ବହୁତ ଭଡା ପାଉଥିବାରୁ ଘରଭଡା ବୃଦ୍ଧିକୁ ସପୋର୍ଟ କରୁଛି । ମୋର ଭୁବନେଶ୍ୱରରେ ମୁଣ୍ଡ ଗୁଞ୍ଜିବାକୁ ଖଣ୍ଡିଏ ଘର ମାତ୍ର ଅଛି । ମାତ୍ର କିଛି ଉଦ୍‌ବୃତ୍ତ ଅଂଶକୁ ଭଡାଦେଇ କିଛି ଟଙ୍କା ମାସିକ ପାଏ । ବେଳେ ବେଳେ ଘର ଖାଲିଥିଲେ ସେତକ ମଧ୍ୟ ମିଳେ ନାହିଁ । ଯୌକ୍ତିକତା ଦୃଷ୍ଟିରୁ ବିଚାର କରି ମୁଁ ମୋର ମତାମତ ପ୍ରକାଶ କରୁଛି ମାତ୍ର । ବାଙ୍ଗାଲୋର ଓ ବମ୍ବେରେ ଘରଭଡା ଭୁବନେଶ୍ୱର ଠାରୁ ଯଥା କ୍ରମେ ୨ ଗୁଣ ଓ ୪ ଗୁଣ ବେଶୀ ।

(ଅନୁପମଭାରତ)

# ଓଡ଼ିଆ ଓ ଓଡ଼ିଶା

ଆମ ମାତୃଭାଷା ଓଡ଼ିଆ ଗୋଟିଏ ପ୍ରାଚୀନ ମଧୁର ତଥା ସମୃଦ୍ଧ ଭାଷା । ଏହା ସଂସ୍କୃତର ବେଶ୍ ନିକଟତର । ଓଡ଼ିଆ ବ୍ୟାକରଣ ମଧ୍ୟ ସଂସ୍କୃତ ସହିତ ବହୁ ପରିମାଣରେ ସମ୍ବନ୍ଧିତ । ନିଜ ଭାଷାର ଗାରିମା ଓ ମହନୀୟତା ବିଷୟରେ ଅଜ୍ଞ ବହୁ ଅଶିକ୍ଷିତ ଅର୍ଦ୍ଧଶିକ୍ଷିତ ଏବଂ ହୀନମନ୍ୟତାର ଶରବ୍ୟ ହୋଇଥିବା ତଥା କଥିତ ଶିକ୍ଷିତ ବ୍ୟକ୍ତିମାନଙ୍କ ଆଚରଣ ଯେମିତି ହାସ୍ୟକର ତାଠାରୁ ଅଧିକ ଦୟନୀୟ ।

ପଡୋଶୀ ରାଜ୍ୟର ଭାଷା ଓ ଚାଲିଚଳଣିକୁ ନିଜର କରିବାକୁ ଅପଚେଷ୍ଟା କରି କେହି କେବେ ତଦ୍‌ବତ ହୋଇ ପାରିବନି । କେବଳ କବି ସୂର୍ଯ୍ୟଙ୍କ ଭାଷାରେ – ''ଜଗତେ କେବଳ, ଜନେ ହସିବେ ଏହି ତହୁଁ ଫଳ'' ସାରହୁଏ । ଆମ ଯାଜପୁର ଜିଲ୍ଲାର ଗାଁ ଗହଳିରେ ପିଲାବେଳେ ଆମେ ଦେଖୁଥିଲୁ, ପ୍ରାୟ ପ୍ରତ୍ୟେକ ପରିବାରରେ ପେଟପୋଷିବା ପାଇଁ କାମ ଧନ୍ଦା ଅନ୍ୱେଷଣରେ ଲୋକେ କଲିକତାକୁ ଯାଆନ୍ତି । ଦୁଇ ଚାରି ମାସ କଲିକତାରେ ରହି ଗାଁକୁ ଫେରି କେତେଟି ବଙ୍ଗଳା ଶବ୍ଦକୁ ବିକୃତରୂପେ କହି ଅନ୍ୟମାନଙ୍କଠାରୁ ନିଜକୁ ବେଶୀ ଜାଣିବାବାଲା ଓ ବୁଦ୍ଧିଆ ବୋଲି କେତେକ ଦେଖେଇ ହୁଅନ୍ତି । ଏପରିକି ଦଶପନ୍ଦର ବର୍ଷ କଲିକତାରେ ରହି ଆସିଲେ ନିଜ ଘରେ 'ଦାଦା', 'ଦିଦି' ଇତ୍ୟାଦି ଡାକର ପ୍ରଚଳନ କରାନ୍ତି । ସେମାନେ କେବଳ ତାଙ୍କ ସମକକ୍ଷ ବଙ୍ଗାଳୀମାନଙ୍କ ସହିତ ମିଶାମିଶି କରି କେତେଟା ବିକୃତ ବଙ୍ଗଳା ଶବ୍ଦକୁ ଆପଣେଇ ନିଜକୁ ଖୁବ୍ ଗୌରବାନ୍ୱିତ ମନେ କରନ୍ତି ।

ମୁଁ କଲିକତାରେ ପାଠ ପଢୁଥିବା ବେଳେ ମୋର ଜଣେ ସହଧ୍ୟାୟୀ ରାସ୍ତାଘାଟରେ ତାଙ୍କ ସହିତ ଓଡ଼ିଆରେ କଥା ନ ହେବାକୁ ତାଗିଦ୍ କରିଥାନ୍ତି । ସେ ସେତେବେଳେ କଳିଙ୍ଗ ଟିଉବସ୍ ଅଫିସରେ ସେଠାରେ ଚାକିରି ମଧ୍ୟ କରୁଥିଲେ । ମାତ୍ର ମୁଁ ସୁବିଧା ଦେଖି ତାଙ୍କୁ ଅପଦସ୍ତ କଲାଭଳି ଗହଳି ସ୍ଥାନରେ ପାଟିକରି କହେ- କିରେ ପ୍ରମୋଦ, ତୋର ଆଜି କ'ଣ ଏତେ ଡେରି ? ଏପରିକି କ୍ଲାସରେ ମଧ୍ୟ ଓଡ଼ିଆରେ କହେ । ତଦ୍ୱାରା ସେ ଘୋର ଅସନ୍ତୋଷ ପ୍ରକାଶ କରି କ୍ଷୁବ୍‌ଧ ହୁଅନ୍ତି ଓ ସେପରି ଆଉ

ନ କରିବାକୁ ମତେ ସାବଧାନ କରି ଦିଅନ୍ତି । ଲାଇବ୍ରେରୀରେ କିଛି ଓଡ଼ିଆ ବହି ଥିଲେ ହେଁ କଲେଜ ଲାଇବ୍ରେରୀରୁ ସେ କେବେ ଓଡ଼ିଆ ବହି ନିଅନ୍ତି ନାହିଁ । ମୁଁ ତାଙ୍କୁ ସେତେବେଳେ ଜଣେ ମାନସିକ ବ୍ୟାଧିଗ୍ରସ୍ତ ବୋଲି କହେ ।

ସେତେବେଳର କଥା ଅଲଗା ଥିଲା । ମାତ୍ର ବହୁ ଚରିତ୍ର ଭିତରେ ଏହି ଏକବିଂଶ ଶତାବ୍ଦୀରେ ଆଉ ଗୋଟିଏ ଚରିତ୍ର ଏହି ଭୁବନେଶ୍ୱରରେ ଭେଟିଲି । ମୋ ଘରେ ଜଣେ ମାରୁଓ୍ୱାଡି ଭଦ୍ରବ୍ୟକ୍ତି ଭଡାକୁ ଥାଆନ୍ତି । ଆଉ ଜଣେ ଗୋଟିଏ ସରକାରୀ କଲେଜର ବରିଷ୍ଠ ସଂସ୍କୃତ ଅଧ୍ୟାପିକା ମଧ୍ୟ ଭଡାକୁ ଥାଆନ୍ତି । ମାରୁଆଡି ଭଦ୍ର ମହିଳା ମୋ ସହିତ ହିନ୍ଦିମିଶା ଓଡ଼ିଆରେ କଥାହେଉଥିବା ବେଳେ ସେଠାରେ ଉପସ୍ଥିତ ଥିବା ଅଧ୍ୟାପିକାଟି ଓଡ଼ିଆ ମିଶା ହିନ୍ଦିରେ ତାଙ୍କ ସହିତ କଥା ହୁଅନ୍ତି । ମୁଁ ଏହାର କାରଣ ପଚାରିବାରୁ ସେ ମତେ ବୁଝାଇଦେଲେ ଯେ ହିନ୍ଦିରେ କହିଲେ ସେ ଭଲ ଭାବରେ ବୁଝି ପାରିବେ । ମୁଁ କେବଳ କହିଲି-ସେ ଆପଣଙ୍କର ଛାତ୍ରୀ ନୁହେଁ ଯେ ଆପଣ ତାଙ୍କୁ ଆପଣଙ୍କର ବକ୍ତବ୍ୟ ଭଲ ଭାବରେ ବୁଝାଉଛନ୍ତି । ସେହିଦିନଠାରୁ ମାଡାମ୍ ଜଣକ ଅପ୍ରତିଭ ହୋଇ ଓଡ଼ିଆରେ କଥାବାର୍ତ୍ତା କଲେ ।

ଅଳ୍ପଦିନ ତଳେ ଆମେ ୨ଟି ପରିବାର କେନ୍ଦୁଝର ବୁଲିବାକୁ ଯାଇଥିଲୁ । ମୋ ବନ୍ଧୁ ଜଣକ ଗୋଟିଏ ହୋଟେଲରେ ଖାଇବାକୁ ହିନ୍ଦିରେ ବରାଦ ଦେଉଥିବାର ଶୁଣିଲି । ମୁଁ ହୋଟେଲ ବାଲାକୁ ପଚାରିଲି-ତୁମେ କ'ଣ ଓଡ଼ିଆ ବୁଝନା ? ସେ କହିଲା ସାର ମୁଁ ଓଡ଼ିଆ ଲୋକ, ଓଡ଼ିଆ ବୁଝିବି ନାହିଁ କାହିଁକି ? ବନ୍ଧୁଙ୍କୁ ହିନ୍ଦି କହୁଥିବାର କାରଣ ପଚାରନ୍ତେ ସେ କହିଲେ-ତୁମେ ଜାଣିନା । ହିନ୍ଦିରେ କହିଲେ ଏମାନେ ବେଶୀ ରେସପେକ୍ଟ ଦିଅନ୍ତି । ମୁଁ ବନ୍ଧୁଙ୍କର ସେ ବିତଣ୍ଡାରେ ଆଦୌ ଏକମତ ହେଲିନାହିଁ । ଆମ ଶିକ୍ଷିତ ଲୋକମାନଙ୍କର ନିଜର ମାତୃଭାଷା ପ୍ରତି ଥିବା ସମ୍ମାନବୋଧ ନିତାନ୍ତ ନିମ୍ନରୁଚିର ।

ଏହାପରେ ଯେଉଁ ସମସ୍ୟାଟି ଦୃଷ୍ଟିକୁ ଆସେ ତାହାହେଲା ଇଂରାଜୀ ଭାଷାର ଆକ୍ରମଣ । ଏହା କେବଳ ଆମ ଓଡ଼ିଆ ଭାଷାପ୍ରତି ନୁହଁ, ବଙ୍ଗଳା ଭାଷାଭାଷୀମାନେ ମଧ୍ୟ ଇଂରାଜୀ ପ୍ରାଦୁର୍ଭାବରେ ଆତଙ୍କିତ । ଆନ୍ତର୍ଜାତିକ ମାଧ୍ୟମରୂପେ ସ୍ୱୀକୃତ ଇଂରାଜୀଭାଷା ନିଶ୍ଚିତରେ ସମୃଦ୍ଧ ଏବଂ ଗ୍ରହଣୀୟ । ମାତ୍ର ଇଂରାଜୀ ବ୍ୟତିରେକେ ଯେ ସଭ୍ୟତା ସ୍ଥାଣୁ ହୋଇଯିବ-ତାହା ଆଦୌ ସତ୍ୟନୁହେଁ । କାରଣ ପଡୋଶୀ ଫ୍ରାନ୍ସରେ ଇଂରାଜୀର ପ୍ରଚଳନ ସେତେଟା ନାହିଁ- ଯାହା ଅଛି ଭାରତରେ । ଜାପାନ,ଜର୍ମାନ,

ରୁଷ, ଚାଇନା ପ୍ରଭୃତି ଦେଶରେ ଇଂରାଜୀର ପ୍ରଚଳନ ଆଦୌ ନାହିଁ । ତା ସତ୍ତ୍ୱେ ସେ ଦେଶର ବିକାଶର ଧାରା ଆଦୌ ବ୍ୟାହତ ହୋଇନାହିଁ ।

ଭାରତ ଯେହେତୁ ଇଂରେଜମାନଙ୍କ ଦ୍ୱାରା ଶାସିତ ହେଉଥିଲା ଏବଂ ଇଂରାଜୀ ଶିକ୍ଷା ଏ ଦେଶରେ ସବୁଆଡେ ଶିକ୍ଷାନୁଷ୍ଠାନ ମାନଙ୍କରେ ପ୍ରଚଳିତ ଥିଲା ଏବଂ ଅଛି, ଆମକୁ ଲାଗୁଛି ବୋଧହୁଏ ଇଂରାଜୀ ବିନା ଦେଶ ଭୁଷୁଡି ପଡ଼ିବ । ତାହା ଆଦୌ ସତ୍ୟ ନୁହେଁ । ଇଂରାଜୀ ପଢ଼ିବା ସଙ୍ଗେ ସଙ୍ଗେ ନିଜର ମାତୃଭାଷାର ଗୌରବ ରକ୍ଷା କରିବା ପ୍ରତିଟି ଓଡ଼ିଆଙ୍କର କର୍ତ୍ତବ୍ୟ । ଏତକି କ'ଣ ଆଜିର ଶିକ୍ଷିତ ଓଡ଼ିଆମାନେ ଜାଣିପାରୁନାହାନ୍ତି ? ପରର କୋଠାଘର ଦେଖି ନିଜେ ଗୌରବାନ୍ୱିତ ହେବାଠାରୁ ନିଜର କୁଡିଆ ପ୍ରତି ମମତା ବଦ୍ଧ ହୋଇ ତା'ର ଉନ୍ନତି ସାଧନ କରିବା ଅଧିକ ଉଚିତ ନୁହେଁ କି ?

(ଅନୁପମଭାରତୀ)

# ବି.ଡି.ଏର ଘରଭଙ୍ଗା ଅଭିଯାନ

ରାଜଧାନୀକୁ ସୁ ସଂହତ ଓ ସୁନ୍ଦର କରିବା ପାଇଁ ବି.ଡି.ଏର ସୃଷ୍ଟି । ହେଲେ ସେଥିରେ ବାଧକ ସାଜିଛି ବେ-ଆଇନ ବସ୍ତିନିର୍ମାଣ, ବେ-ଆଇନ ଅପାର୍ଟମେଣ୍ଟ ଏବଂ ବିନା ପ୍ଲାନରେ ଗୃହ ନିର୍ମାଣ ସମେତ ବେ-ଆଇନ ଗୃହନିର୍ମାଣ । ସେଥିମଧ୍ୟରୁ ପ୍ରଥମେ ମୁଣ୍ଡବଥା ହେଲା-ବେ-ଆଇନ ବସ୍ତି । ଏହି ବସ୍ତି ଉଚ୍ଛେଦ ବେଳେ ବି.ଡି.ଏ ଓ ମ୍ୟୁନିସିପାଲିଟି କର୍ତ୍ତୃପକ୍ଷ ବାରମ୍ବାର ଅପଦସ୍ତ ହେବାର ସମ୍ବାଦ ପଢ଼ିବାକୁ ମିଳେ । ଉନ୍ନତ ବସ୍ତି ଯୋଜନାରେ ସମାନଙ୍କୁ ଅନ୍ତର୍ଭୁକ୍ତ କରି ଜବରଦଖଲକାରୀ ମାନଙ୍କୁ ସତ୍ୱ ଦେବାକୁ ସରକାର ଚିନ୍ତା କରୁଛନ୍ତି । ତାହା ଏକ ଉତ୍ତମ ବିଚାର ନିଶ୍ଚୟ । ଏଥିରେ ସନ୍ଦେହ ନାହିଁ ।

ଏହାପରେ ଆସେ ବିନା ପ୍ଲାନରେ ତିଆରିହୋଇଥିବା ବାସଗୃହ ସମସ୍ୟା । ପ୍ଲାନଟିଏ ବି.ଡି.ଏ ଅଫିସ୍‌ରେ ଦାଖଲ କରି ଆଇନ ଓ ବେ-ଆଇନ ପାଉଣା ଦେବାପରେ ଲୋକେ ବର୍ଷାଧିକ କାଳ ଅପେକ୍ଷା କରି ବିରକ୍ତ ହୋଇ ପ୍ରସ୍ତାବିତ ପ୍ଲାନ ମୁତାବକ ଘରଟିଏ କରିଥାନ୍ତି । ତେବେ ଏହି ଘଟଣାରେ କେବଳ ଘର ମାଲିକକୁ ଦାୟୀ କରି ତା ଘରଟିକୁ ଭାଙ୍ଗି ଦେବା ଘୋର ଅନ୍ୟାୟ । ଯାହାର ଖାମ୍‌ଖିଆଲି ପାଇଁ କିମ୍ବା ଅନ୍ୟାୟ-ଅତ୍ୟାଚାର ପାଇଁ ପ୍ଲାନ୍‌ଟି ଯଥାସମୟରେ ସ୍ୱୀକୃତି ଲାଭ କରି ପାରିଲାନାହିଁ, ପ୍ରଥମେ ତା ପ୍ରତି ଦଣ୍ଡ ବିଧାନ କରାଯାଉ । ଆଦୌ ପ୍ଲାନ ଦାଖଲ ନକରି କିମ୍ବା କୌଣସି 'ପ୍ରୋହିବିଟେଟ୍' ସ୍ଥାନରେ ଘର କରିଥିବା ବ୍ୟକ୍ତିକୁ ବରଂ ଉଚ୍ଛେଦ କରାଯାଉ କିମ୍ବା ମାତ୍ରାଧିକ ଜରମାନା କରି 'ରେଗୁଲାରାଇଜ' କରାଯାଉ । ଏ ସମସ୍ତ ପାଇଁ ଆଉଥରେ ସର୍ବକ୍ଷମା ଯୋଜନା କାର୍ଯ୍ୟକାରୀ କଲେ ଓଡ଼ିଶା ସରକାର ତଥା ବି.ଡି.ଏ ବହୁ ଅର୍ଥ ଲାଭ କରିପାରନ୍ତେ । ଟଙ୍କା ଖର୍ଚ୍ଚ କରି ବଳ ପ୍ରୟୋଗ କରି ବହୁ ଲୋକଙ୍କୁ ବେଘର କରିବାର ଅସୁସ୍ଥ ଚିନ୍ତା ଅପେକ୍ଷା ପୁଣିଥରେ ସର୍ବକ୍ଷମା ଯୋଜନାର ପ୍ରଚଳନ ପାଇଁ ଭୁବନେଶ୍ୱରର ତିନିଜଣଯାକ ବିଧାୟକ ମିଳିତ ଭାବରେ ପ୍ରଚେଷ୍ଟା କଲେ ପ୍ରଶଂସାଭାଜନ ହେବା ସଙ୍ଗେ ସଙ୍ଗେ ଭଙ୍ଗାରୁଜାର ଉଦ୍ଭଟ କଳ୍ପନାରୁ ଲୋକେ ରକ୍ଷା ପାଇ ପାରନ୍ତେ ।

ଅବଶ୍ୟ ଯେଉଁମାନେ ସରକାରୀ ଜାଗାକୁ ବେ-ଆଇନ ଭାବରେ କବ୍‌ଜା କରିଛନ୍ତି, ସେ ପରିସ୍ଥିତିରେ ଭାଙ୍ଗିବା ଛଡା ଅନ୍ୟଉପାୟ ନାହିଁ ।

ମାତ୍ର ନିଜ ଜମି ଉପରେ ପ୍ଲାନ ଥାଇ ଯେଉଁଘରମାନ ଗଢ଼ି ଉଠିଛି ଏବଂ ସେଥିରେ ପରବର୍ତ୍ତୀ କାଳରେ ଆବଶ୍ୟକତାନୁଯାୟୀ ପରିବର୍ତ୍ତନ କରାଯାଉଛି-ସେମାନଙ୍କୁ ସର୍ବକ୍ଷମାରେ ଅନ୍ତର୍ଭୁକ୍ତ କରାଗଲେ, ସରକାରଙ୍କ ରାଜକୋଷକୁ ବହୁ ଅର୍ଥ ଆସିବା ସଙ୍ଗେ ସଙ୍ଗେ ତ୍ରୁଟି ବିଚ୍ୟୁତି ସୁଧୁରିବା ନାମରେ ଭଙ୍ଗାଭଙ୍ଗି ଭଳି ଅପ୍ରୀତିକର କାର୍ଯ୍ୟରୁ ତ୍ରାହି ମିଳନ୍ତା । ଏଥି ସଙ୍ଗେ ସଙ୍ଗେ ସମସ୍ତ ଦୋଷତ୍ରୁଟିକୁ ଗୋଟିଏ ଦୃଷ୍ଟିରେ ତଉଲି ଦଣ୍ଡବିଧାନ ସ୍ୱରୂପ କାହାରିକୁ ବେଘର କରିବାର କଳାପାହାଡି ଚିନ୍ତା ଦୂର ହୋଇ ପାରନ୍ତା ।

ପ୍ରଥମେ ପଦକ୍ଷେପରେ କେବଳ ସରକାରୀ ଜାଗାକୁ ମୁକ୍ତ କରି ଅନ୍ୟାନ୍ୟ ଘଟଣାରେ ସର୍ବକ୍ଷମାର ପ୍ରୟୋଗ କରିବାକୁ ଲୋକେ ବିଧାୟକମାନଙ୍କୁ ନିବେଦନ କରୁଥିବାର ଜଣାଯାଏ । ତାହା ଏକ ଉତ୍ତମ ପଦକ୍ଷେପ ବୋଲି ବିଚାର କରାଯାଏ । ଏ କ୍ଷେତ୍ରରେ ନଗର ଉନ୍ନୟନ ମନ୍ତ୍ରୀ ସହୃଦୟତାର ସହିତ ବିଧାୟକ, ନାଗରିକ ପରିଷଦ, ବି.ଡି.ଏ ତଥା ମ୍ୟୁନିସିପାଲ କର୍ପୋରେସନଙ୍କ ସହିତ ପରାମର୍ଶ କରି ବିହିତ ପଦକ୍ଷେପ ଗ୍ରହଣ କରିବା ଶ୍ରେୟସ୍କର । ସରକାରଙ୍କ ଲୋକପ୍ରିୟତା ଏହା ଦ୍ୱାର ବଢ଼ିବା ସଙ୍ଗେ ସଙ୍ଗେ ଲୋକାଭିମୁଖୀ ଶାସନର ପରିଚୟ ମିଳନ୍ତା । ତତ୍ ସଙ୍ଗେ ସଙ୍ଗେ ଅପ୍ରୀତିକର ପଦକ୍ଷେପ ବିରୁଦ୍ଧରେ ସମ୍ଭାବ୍ୟ ଆନ୍ଦୋଳାନାତ୍ମକ ପରିବେଶ ଓ ପରିସ୍ଥିତିର ପରିସମାପ୍ତି ଘଟନ୍ତା । ସହରକୁ ଅଧିକ ସୁନ୍ଦର କରିବାକୁ ଯାଇ ଅସୁନ୍ଦର ହୁଅନ୍ତା ନାହିଁ । ରାଜକୋଷକୁ ମଧ୍ୟ ପ୍ରଚୁର ଅର୍ଥ ଆସିପାରନ୍ତା ।

(ଅନୁପମଭାରତ) ୨୯.୧୨.୨୦୧୧

# ଆମ ଭାଷାର ଦୁର୍ଗତି

ଯେଉଁ ଭାଷା ମଣିଷର ଭାବକୁ ଚିନ୍ତାକୁ ଯେତେ ସାବଲୀଳ ଭାବରେ ପରିପ୍ରକାଶ କରପାରେ ତାହା ସେତେ ସମୃଦ୍ଧ । ଭାରତର ସମୃଦ୍ଧି ପାଇଁ ସମାଜର ଚିନ୍ତାଶୀଳ ନାଗରିକ, ବୁଦ୍ଧିଜୀବୀ ତଥା ବିଜ୍ଞ ବ୍ୟକ୍ତିମାନଙ୍କର ପ୍ରଚେଷ୍ଟାର ଆବଶ୍ୟକତା ରହିଛି । ଭାଷାର ପ୍ରକାଶ ଓ ପ୍ରୟୋଗ ପାଇଁ କେତେକ ବିଧିବିଧାନ ଥାଏ । ଭାଷାକୁ ସୁଠାମ ଓ ତ୍ରୁଟୀଶୂନ୍ୟ କରିବା ପାଇଁ ବ୍ୟାକରଣ ଥାଏ । ସରଳ ବୋଧ ଗମ୍ୟ କରିବାକୁ ଅଭିଧାନ ଥାଏ । ଏହା ସମସ୍ତ ଭାଷାପାଇଁ ପ୍ରଯୁଜ୍ୟ ।

ଅଧୁନା ଆମ ଓଡ଼ିଆ ଭଷାରେ ବହୁ ଗୁଡିଏ ସାପ୍ତାହିକ, ମାସିକ, ତ୍ରୈମାସିକ ଅଥବା ବାର୍ଷିକ ପତ୍ରପତ୍ରିକା ମାନ ପ୍ରକାଶିତ ହୋଇ ପୁସ୍ତକ-ବିପଣୀକୁ ସମୃଦ୍ଧ କରୁଥିବାର ଦେଖାଯାଏ । ଭାଷାର ଉନ୍ନତି କଳ୍ପେ ଏହାର ପ୍ରସାର ତଥା ପ୍ରଚାର ପାଇଁ ପତ୍ର ପତ୍ରିକା ପ୍ରକାଶନ ଠାରୁ ପୁସ୍ତକ ପ୍ରକାଶନ ଯାଏ ଉଦ୍ଦିଷ୍ଟ । ଏହାଦ୍ୱାରା ସମସାମୟିକ ଚିନ୍ତାଧାରାରେ ବୈପ୍ଲବିକ ଚିନ୍ତନ ସୃଷ୍ଟି ହୁଏ, ସଂପ୍ରସାରିତ ହୁଏ । ପୁସ୍ତକ ପ୍ରକାଶନ ତଥା ପତ୍ର-ପ୍ରତିକା ପ୍ରକାଶନ ଗୋଟିଏ ସମୃଦ୍ଧ ସଂସ୍କୃତି ସହିତ ଓତପ୍ରୋତଃଭାବରେ ଜଡ଼ିତ । ସେ ଦୃଷ୍ଟିରୁ ପତ୍ରପତ୍ରିକାର ବହୁଳତା ନିଶ୍ଚିତରେ ଅଭିନନ୍ଦନୀୟ ।

ମାତ୍ର ବର୍ତ୍ତମାନ ଦେଖାଯାଉଛି ଯେ କେହି ବ୍ୟକ୍ତି ଅର୍ଦ୍ଧ ଶିକ୍ଷିତ, ସ୍ୱଳ୍ପଶିକ୍ଷିତ ହେଉ ପଛେ ପତ୍ରିକାଟିଏ ପ୍ରକଶ କରି ତାର ସଂପାଦନା କରୁଛନ୍ତି । ପୁନଶ୍ଚ ନିଜର କେଉଁଠି ଧାଡିଟିଏଲେଖା ନଥାଇ ପତ୍ରିକାଟିଏ ସଂପାଦନା କରୁଛନ୍ତି । କେତେକ ବିଜ୍ଞ ବ୍ୟକ୍ତି ମଧ୍ୟ ସଂପାଦନା କାଳରେ ମୁଦ୍ରଣ ତ୍ରୁଟି ପ୍ରତି ଦୃଷ୍ଟି ଦେଉ ନାହାନ୍ତି । ଏହା ଦ୍ୱାରା, ସେହି ପତ୍ରିକାଟି ଉତ୍କଳର ବାଣୀ-ଭଣ୍ଡାରକୁ କିଛି ଅବଦାନ ନଦେଇ ବରଂ ଅଧିକ କ୍ଷତି ପହଞ୍ଚାଉଛି ।

କେତେଗୁଡିଏ ନିତାନ୍ତ ପ୍ରୟୋଜନୀୟ ଶବ୍ଦର ବର୍ଣ୍ଣାଶୁଦ୍ଧି ପତ୍ରପତ୍ରିକାଠାରୁ ଆରମ୍ଭ କରି ଟିଭି ଓ କେତେକ ପୁସ୍ତକରେ ମଧ୍ୟ ଦେଖାଯାଉଛି । ଏହା ଦୃଷ୍ଟି କଟୁ ହେବା

ସଙ୍ଗେ ସଙ୍ଗେ ପାଠକ ମନରେ ଦ୍ୱନ୍ଦ୍ୱ ସୃଷ୍ଟି କରେ । ବହୁତ ଲେଖକ/ଲେଖିକାଙ୍କର ଲେଖାରେ କେତେଗୁଡିଏ ସାଧାରଣ ତ୍ରୁଟୀ ବାରମ୍ବାର ଦେଖିବାକୁ ମିଳୁଛି । ତେଣୁ ନିମ୍ନରେ କେତେଗୁଡିଏ ଶବ୍ଦର ଭୁଲ ପ୍ରୟୋଗ ଓ ଠିକ୍ ପ୍ରୟୋଗ ଦିଆଗଲା । ଏହାକୁ କେହି ଅନ୍ୟଥା ନ ବିଚାରିବାକୁ ଅନୁରୋଧ ।

| ଭୁଲ | ଠିକ୍ | ମାମୁଁ | ମାମୁ |
|---|---|---|---|
| ମାଁ | ମା', ମାଆ | ଦାବୀ | ଦାବି |
| ବନ୍ଦୀ | ବନ୍ଦି | ଚୌକୀ | ଚୌକି |
| କୋଠରୀ | କୋଠରି | ପାଚେରୀ | ପାଚେରି |
| ଚୋରୀ | ଚୋରି | ନାଁ | ନା (ନାହିଁ ଅର୍ଥରେ) |
| ସଂନ୍ଧ୍ୟା | ସନ୍ଧ୍ୟା ବା ସଂଧ୍ୟା | ଶାଢ଼ୀ | ଶାଢ଼ି |
| ଶିଘ୍ର | ଶୀଘ୍ର | ସବାନ୍ଧବେ | ସବାନ୍ଧବ |
| ଲଜ୍ୟା | ଲଜ୍ଜା | ସଶରୀରେ | ସଶରୀର |
| ଦମ୍ପତ୍ତି, ଦଂପତ୍ତି | ଦମ୍ପତି, ଦଂପତି | ନୀଚ୍ଚ | ନୀଚ |
| ପୂଣ୍ୟ | ପୁଣ୍ୟ | ଶାଶୁ | ଶାଶୂ |
| ମୂଖ୍ୟ | ମୁଖ୍ୟ | ଶ୍ରଦ୍ଧାଞ୍ଜଳୀ | ଶ୍ରଦ୍ଧାଞ୍ଜଳି |

ଆମ ଭାଷାର ପତ୍ର-ପତ୍ରିକା ମାନଙ୍କରେ ଶହ ଶହ ବର୍ଣ୍ଣାଶୁଦ୍ଧି ଦେଖିଲେ ମନରେ କ୍ଷୋଭ ଆସେ, ଆମର ସଂପାଦକ/ସଂପାଦିକା ମାନେ କ'ଣ ଅଜ୍ଞ ? ନା ସେମାନେ ଅଭିଧାନ ଦେଖିବାର ସାମାନ୍ୟ କ୍ଳେଶ ସ୍ୱୀକାର କରିବାରେ ପରାଙ୍ମୁଖ ? ଅଥଚ ପାଠକଟିଏ କେତେଥର ଭୁଲ ଶବ୍ଦଟିକୁ ଦେଖି ଦେଖି ତା ମନରେ ମଧ ଠିକ୍ ପ୍ରତି ସଂଶୟ ସୃଷ୍ଟି ହେବା ସ୍ୱାଭାବିକ । ଏହାବ୍ୟତୀତ ତଥ୍ୟଗତ ପ୍ରମାଦ ପ୍ରତି ମଧ ସାବଧାନ ରହିବା ଉଚିତ । ଯେପରି-"ଗଲାଣି ତ ଗଲା କଥାରେ ସଙ୍ଗାତ" ଉପେନ୍ଦ୍ର ଭଞ୍ଜଙ୍କ ଲେଖା "ମାତୃଭାଷା ମାତୃଭୂମିରେ ଶରଧା-" ଉତ୍କଳ ଗୌରବ ମଧୁସୂଦନ ଲେଖା ବୋଲି ଗୋଟିଏ ପତ୍ରିକାରେ ଜଣେ ଲେଖିଥିଲେ । ପ୍ରଥମଟିର ଲେଖକ କବିସୂର୍ଯ୍ୟ ବଳଦେବ ରଥ ଏବଂ ଦ୍ୱିତୀୟଟିର ଲେଖକ ଗଙ୍ଗାଧର ମେହେର । ଏହିଭଳି ତ୍ରୁଟୀ ପାଇଁ ଲେଖକଙ୍କ ଠାରୁ ସଂପାଦକ ଅଧିକ ଦାୟୀ ଓ ଉତ୍ତରଦାୟୀ ।

ଏବେ ଦେଖାଯାଉଛି କେତେକ ଲେଖକ/ଲେଖିକା ନିଜର ପାଣ୍ଡୁଲିପିଟିକୁ ବହି ଆକାରେ ନିଜେ ନିଜେ ଛାପି ଦେଉଛନ୍ତି । କୌଣସି ମତେ ଧରାଧରି କରି ରାଜା

ରାମମୋହନ ଫାଉଣ୍ଡେସନ ଦ୍ୱାରା ଗୃହୀତ କରାଇ ଦେଉଛନ୍ତି । ନିଜେ ଛାପିବା ପ୍ରଚେଷ୍ଟା ଉତ୍ତମ । ମାତ୍ର ସଂପୃକ୍ତ ବହିରେ ଶହ ଶହ ବର୍ଣ୍ଣାଶୁଦ୍ଧି ସହିତ ବହୁ ତ୍ରୁଟୀ ପ୍ରତିଦୃଷ୍ଟି ଦେଉ ନାହାନ୍ତି । କିନ୍ତୁ ପ୍ରକାଶକ ମାନଙ୍କ ବହିରେ ସେଭଳି ତ୍ରୁଟି କ୍ୱଚିତ ୍ ଦେଖାଯାଏ । ସେଭଳି ଲେଖକ/ଲେଖିକା ମାନଙ୍କୁ ଅନୁରୋଧ, ସେମାନେ କୌଣସି ଉତ୍ତମ ପ୍ରୁଫ୍ ରିଡର ଦ୍ୱାରା କିମ୍ବା ନିଜେ ଅଭିଧାନ ଦେଖି ବହିଟି ସଂଶୋଧନ କରାଇ ନିଅନ୍ତୁ । ନଚେତ୍ ସେମାନେ ଯେ ଆମ ଭାଷାର ବହୁତ କ୍ଷତି ସାଧନ କରୁଛନ୍ତି-ସେଥିପାଇଁ ନିଶ୍ଚୟ ନିନ୍ଦିତ ହେବେ ।

ପ୍ରତି ସ୍ତରରେ ଆମେ ଭାଷାର, ଆମ ସାହିତ୍ୟର ଆଙ୍ଗିକ ତଥା ଆତ୍ମିକ ଉତ୍ତରଣ ସାହିତ୍ୟିକମାନଙ୍କ ଧେୟ ହେଉ । ଏତିକି ଆଶା କରିବା ବୋଧହୁଏ ନିରର୍ଥକ ହେବ ନାହିଁ ।

(ଅନୁପମଭାରତ) ୮.୫.୨୦୧୨

# ଆନ୍ନା ହଜାରେ

ମହାରାଷ୍ଟ୍ରର ଗୋଟିଏ ନିତାନ୍ତ ଦରିଦ୍ର କୃଷକ ପରିବାରର ପିଲାଟିଏ ପରିଣତ ବୟସରେ ଯେ ଗୋଟିଏ ଦେଶର ଜନନାୟକ ହୋଇପାରିଲେ-ଏହା ଏକ ବିସ୍ମୟ । ବହୁ ମଧ୍ୟବିତ୍ତ, ନିମ୍ନ ମଧ୍ୟବିତ୍ତ ପରିବାରର ପିଲାଏ ଆମ ଦେଶରେ ରାଜନୀତିରେ ପ୍ରବେଶ କରି ଶହ ଶହ - କୋଟିପତି ହୋଇ ଥିବାର ଦୃଷ୍ଟାନ୍ତ ଅନେକ ରହିଛି । ତୃତୀୟ ଶ୍ରେଣୀର ଜଣେ ଓକିଲ ଜୟପ୍ରକାଶ ଆନ୍ଦୋଳନରେ ସାମିଲ ହୋଇ ହଜାର ହଜାର କୋଟି ଟଙ୍କାର ରାଜସ୍ୱ ଖାଇଦେଇ ଥିବାର ନଜିର ଅଛି । ସାମାନ୍ୟ ନିମ୍ନ ବେତନ ଭୋଗୀ ସଂରକ୍ଷଣର ସୁବିଧା ନେଇ ମାଷ୍ଟରାଣୀ ଚାକିରିଟିଏ କରିଥିବା ଅଧୁନା ଦୁର୍ନୀତି-ସାମ୍ରାଜ୍ଞୀ ମାୟାବତୀଙ୍କ କାରନାମା ସମସ୍ତେ ଜାଣନ୍ତି । ମାତ୍ର ଏମାନେ ସମସ୍ତେ କାଳବକ୍ଷରେ ଗୋଟାଏ ଗୋଟାଏ ବୁଦ୍‌ବୁଦ ମାତ୍ର । ଏମାନଙ୍କର ବ୍ୟକ୍ତିତ୍ୱ କେବଳ ରାଜସ୍ୱ-ଲୁଣ୍ଠନ କରି ଆତ୍ମସୁଖରେ ନିୟୋଜନ ଛଡା ଆଉ କୌଣସି ଆଭିମୁଖ୍ୟ ନାହିଁ ।

ମାତ୍ର ପ୍ରକୃତ ତ୍ୟାଗୀ କର୍ମବୀର ଆନ୍ନାହଜାରେଙ୍କ ତ୍ୟାଗ-ପୂତ ଜୀବନ, ତାଙ୍କର ସରଳ ନିରାଡମ୍ବର ଚଳଣି, ତାଙ୍କର କର୍ମନିଷ୍ଠା ତଥା ପରୋପକାର ତାଙ୍କୁ ଆଣି ଆଜି ଦେଶର ସର୍ବୋଚ୍ଚ ଜନନାୟକରେ ପରିଣତ କରିଛି । ଉପା ସରକାର କାରନାମା ଓ କାରସାଦୀ ଦେଖିଲେ ଜଣାଯାଏ ଯେପରି କଳେବଳେ କୌଶଳେ ଭାରତର ଜନସାଧାରଣଙ୍କର ଝାଳବୁହା ରାଜସ୍ୱକୁ ଲୁଣ୍ଠନ କରି ବିଦେଶୀ ବ୍ୟାଙ୍କରେ ଜମା ରଖିବାଠାରୁ ଅତ୍ୟନ୍ତ ବିଳାସୀ ଓ ସୌଖୀନ ଜୀବନଯାପନ କରିବା ରାଜନୈତିକ ମଙ୍ଗୁଆଳମାନଙ୍କର ଏକମାତ୍ର ଆଜେଣ୍ଡା । ଏ ସମସ୍ତ ଦୁର୍ନୀତି ଓ ବ୍ୟଭିଚାରରୁ ଆମର ସମ୍ମାନନୀୟ ପ୍ରଧାନମନ୍ତ୍ରୀ ଉର୍ଦ୍ଧ୍ୱରେ ଥିଲେ ହେଁ ତାଙ୍କର ଭୂମିକା ମହାଭାରତର ଧୃତରାଷ୍ଟ୍ରଙ୍କ ସହିତ ପ୍ରାୟତଃ ସମାନ । ମିଳିତ ସରକାରର ବାଧ୍ୟବାଧକତାରେ ସେ ସମସ୍ତ ଦୁର୍ନୀତି ପ୍ରତି ଆଖିବୁଜି ଦେବାଛଡା ତାଙ୍କର ଅନ୍ୟ ଉପାୟ ନଥିଲା । ତେଣୁ ସେ ନିଜେ ଦୋଷୀ ନ ହେଲେ ହେଁ ମନ୍ତ୍ରୀମଣ୍ଡଳରେ ମୁଖ୍ୟ ହିସାବରେ ସଂପୂର୍ଣ୍ଣ ଦୋଷମୁକ୍ତ ନୁହନ୍ତି ।

ଏହି ସମ୍ପର୍କକରେ ଜଣେ ସହଯୋଗୀ ମନ୍ତ୍ରୀଙ୍କ ଯୌନ କେଳେଙ୍କାରୀ ଯୋଗୁ ଇଂଲଣ୍ଡର ତତ୍କାଳୀନ ପ୍ରଧାନମନ୍ତ୍ରୀ ମ୍ୟାକମିଲାନ୍‌ଙ୍କ ଇସ୍ତଫା ପ୍ରଣିଧାନ ଯୋଗ୍ୟ ।

ଦେଶ ଯେତେବେଳେ ଭାଷାତୀତ ଦୁର୍ନୀତିରେ ଉବୁଟୁବୁ ହେଉଛି-ତାହା ସମସ୍ତ ବୁଦ୍ଧିଜୀବୀଙ୍କୁ ବାଧୁଛି ନିଶ୍ଚୟ । ସେଥିରେ ବ୍ୟଥିତ ହୋଇ ଆନ୍ନା ହଜାରେ ଦେଶରୁ ଦୁର୍ନୀତିର ଅପସାରଣ ପାଇଁ ଯେଉଁ ଡାକରା ଦେଲେ, ତାକୁ କଂଗ୍ରେସ ଚିରାଚରିତ ପନ୍ଥାରେ ଗୌଣ ମନେ କଲା । ଆଗକୁହା ନେତା ଦିଗବିଜୟ ସିଂହ, ପ୍ରଥମେ ଆନ୍ନାଙ୍କୁ ଆକ୍ରମଣ ଆରମ୍ଭ କଲେ । ତାପରେ ଭଦ୍ରସମାଜର ସଭ୍ୟମାନଙ୍କ ବିରୁଦ୍ଧରେ ଇଚ୍ଛାକୃତ ବିବୃତି ମାନ ସମ୍ବାଦପତ୍ରରେ ଦେଇ ଆନ୍ଦୋଳନକୁ ଭଣ୍ଡୁର କରିବାକୁ ଦେଖିଲେ । ତାପରେ ବାବା ରାମଦେବ ଭଳି ଅବସ୍ଥା ହେବ ବୋଲି ଧମକ ମଧ୍ୟ ଦେଲେ । ମାତ୍ର ଜଣେ ତ୍ୟାଗୀ, ସଚ୍ଚାକର୍ମୀ, ଦେଶପ୍ରେମୀ ଆନ୍ନା ସେସବୁ ଧମକ ଓ ପ୍ରତାରଣା ପୂର୍ଣ୍ଣ ପ୍ରହେଳିକାକୁ ଖାତିର ନକରି ନିଜର ଲୋକପ୍ରିୟତାରେ ସମଗ୍ର ଦେଶକୁ ସ୍ତମ୍ଭୀଭୂତ କରିଦେଲେ । ବ୍ୟକ୍ତିତ୍ୱ ଟଙ୍କାରେ ବା କ୍ଷମତାରେ ମପାଯାଏ ନାହିଁ ବୋଲି ବାବଦୂକ ମନୀଷ ତିୱାରୀ ଭଳି ଅନ୍ୟମାନେ ମଧ୍ୟ ବୁଝିଗଲେ ।

ଯଦି ସରକାରଙ୍କ ଆଭିମୁଖ୍ୟ ପ୍ରକୃତରେ ଦେଶରୁ ଦୁର୍ନୀତି ଦୂର କରିବା ଥାଏ- ତେବେ ଆନ୍ନାଙ୍କ ଜନଲୋକପାଳ ବିଲ୍‌କୁ ଗ୍ରହଣ କରିବାକୁ ଆପତ୍ତି କେଉଁଠି ? ପ୍ରଧାନ ମନ୍ତ୍ରୀ ଓ ରାଜନେତାମାନଙ୍କୁ ବାହାରେ ରଖି କେବଳ ଅଫିସରମାନଙ୍କୁ କଠୋର ହସ୍ତରେ ଦମନ କରିବାକୁ ଆଇନ ପ୍ରଣୟନର ଆବଶ୍ୟକତା କଣ ?

ଏ ଦେଶରେ ଜଣେ ଏ . ରାଜା, ଜଣେ ଲାଲୁ ଯାଦବ, ଜଣେ ମାୟାବତୀ, କାନିମୋଝି, ସୁରେଶ କାଲମାଡି ଯେତିକି ରାଜସ୍ୱ ଲୁଟ୍ କରି ଟଙ୍କା ଠୁଳେଇଛନ୍ତି ବୋଧହୁଏ ସାରାଭାରତର କର୍ମଚାରୀ ମାନେ ମିଳିତଭାବରେ ସେତିକି ଦୁର୍ନୀତି କରି ନଥିବେ । ହାତୀ ପେଟ ଓ ଠେକୁଆର ପେଟ ସମାନ ନୁହେଁ ବୋଲି ଦେଶବାସୀ ଜାଣିଗଲେଣି । ତଥାପି ଆନ୍ନାଙ୍କ ଡାକରାରେ ବାସ୍ତବତା ପ୍ରଣିଧାନ ଯୋଗ୍ୟ । ପ୍ରତିଟି ଅଫିସରେ କେଉଁ କାମ କେତେଦିନରେ ହେବ, ସେଥିପାଇଁ କେଉଁ କର୍ମଚାରୀ ଦାୟୀ ତାହାର ବିବରଣୀ ଟଙ୍ଗାଯାଉ । ଏବେତ ବ୍ୟାଙ୍କ ମାନଙ୍କର କେଉଁ କାମ କେତେ ସମୟରେ ବା ଦିନରେ ହେବ ଚାର୍ଟ ଟଙ୍ଗା ଯାଉଛି । ତେବେ ସରକାରୀ ଅଫିସରେ ନ ହେବ କାହିଁକି ?

ଦୁର୍ନୀତି ବର୍ତ୍ତମାନ ସମଗ୍ର ଦେଶକୁ କବଳିତ କରିସାରିଲାଣି । ଚିଠିଟିଏ ସରକାରୀ ଦପ୍ତରରୁ ପାଇବାକୁ ହେଲେ ଟଙ୍କା ଦିଅ । ଯିଏ ଷ୍ଟାମ୍ପ ଟାଏ ପିଟିବ ଦଶ ଟଙ୍କା ନଦେଲେ ନ ଚଳେ । ଲୋକେ ଦୁର୍ନୀତି-ପୀଡିତ, ଅତ୍ୟାଚାରିତ ହେଉଥିବା ବେଳେ ଆନ୍ନାମାନେ ଈଶ୍ୱର ପ୍ରେରିତ ନିଶ୍ଚୟ । ତେଣୁ ତାଙ୍କୁ କଳେବଳେ କୌଶଳରେ ବାଟବଣା କରାଇବା ଚେଷ୍ଟାରୁ କଂଗ୍ରେସ ଦୂରେଇ ନ ରହିଲେ ଆଗକୁ ବିପଦ ।

ରାମଦେବଙ୍କୁ ସଭାରେ ନିସ୍ତୁକ ପିଟିବା ପରେ ଦିଲ୍ଲୀର କଂଗ୍ରେସ୍ ସରକାର ନିଜର ସମାଧି ନିଜେ ତିଆରି କରିଛି । ବର୍ତ୍ତମାନର କ୍ରିୟା କଳାପ ଦେଖି ଲୋକେ ଏଭଳି ପ୍ରତିକ୍ରିୟା ପ୍ରକାଶ କରୁଛନ୍ତି ଯାହା କଂଗ୍ରେସ ପାଇଁ ଆଦୌ ଶୁଭଙ୍କର ନୁହେଁ । ଦୁର୍ନୀତି ଯେ ଏକା କଂଗ୍ରେସୀ ନେତା କରନ୍ତି ତା ନୁହେଁ ପ୍ରାୟ ୯୯% ରାଜନେତା ଦୁର୍ନୀତିପୁଷ୍ଟ ଧନରେ ପ୍ରଚଣ୍ଡ ଅହଙ୍କାରୀ ଏବଂ ଅତ୍ୟାଚାରୀ । ମାତ୍ର ଦୁର୍ନୀତି ଗଙ୍ଗୋତ୍ରୀ କୁହାଯାଉଥିବା କଂଗ୍ରେସ ସେଥିରେ ସମସ୍ତଙ୍କଠାରୁ ଆଗରେ । ହାତପାଣ୍ଠି ଉଚ୍ଛେଦ ପାଇଁ କମିଶନ ବସିଲା । କମିଶନ୍ ମତ ଦେଲେ-ହାତପାଣ୍ଠି ହେଉଛି ଦୁର୍ନୀତିର ମୂଳ, ତାକୁ ଉଠାଯାଉ । ମାତ୍ର ସରକାର ୨ କେଟିରୁ ୫ କୋଟିକୁ ହାତପାଣ୍ଠି ବଢ଼ାଇ ଦେଲେ । ବର୍ତ୍ତମାନ ବେଳ ଆସଛି-ସମଗ୍ର ଭାରତ ଆନ୍ନାଙ୍କ ପଛରେ । ବେଳହୁଁ ସାମଧାନ ନହେଲେ କଂଗ୍ରେସ ନିଜେ ଡୁବିଯିବ-ଏଥିରେ ସନ୍ଦେହ ନାହିଁ ।

-ଅନୁପମ ଭାରତ

# ସେଇ ଦରପୋଡା କାଠ

ନିକଟରେ ଆମ ରାଜ୍ୟରେ ଦୁର୍ନୀତି ନିବାରଣ ସପ୍ତାହ ପାଳନ କରାଗଲା । ସେହି ଦୁର୍ନୀତି ନିବାରଣ ସପ୍ତାହ ଭିତରେ ମଧ୍ୟ ଲାଞ୍ଚ ଗ୍ରହଣ କରୁଥିବା ଅପରାଧରେ ରାଜ୍ୟରେ କେତେ ସରକାରୀ କର୍ମଚାରୀ ଧରା ପଡ଼ିଲେ । ଆଜିର ସମ୍ବାଦପତ୍ରରେ ରାଉରକେଲାର ପାନପୋଷ-ଉପଜିଲ୍ଲାପାଳ ଜଣେ ଲୋକଠାରୁ ୧୦ ହଜାର ଟଙ୍କା ଲାଞ୍ଚ ନେଉଥିବା ବେଳେ ଭିଜିଲାନ୍‌ସ ହାତରେ ଧରା ପଡ଼ିଥିବା ସମ୍ବାଦ ପଢ଼ିଲୁ । ମାତ୍ର ଅଳ୍ପ କେତେ ମାସ ଆଗରୁ ଭୁବନେଶ୍ୱରରେ ଥିବା ଜି.ଇ.ଡ଼ି଼ର ଏକଜିକ୍ୟୁଟିଭ ଇଞ୍ଜିନିୟର ୨୫ ହଜାର ଟଙ୍କା ଲାଞ୍ଚ ନେଉଥିବା ବେଳେ ଧରାପଡ଼ିଲେ ।

ସରକାରଙ୍କ ଏହି ବଡବଡ କର୍ମଚାରୀମାନେ ମାସିକ ୫୦ ହଜାର ଟଙ୍କାରୁ ଅଧିକ ଦରମା ପାଆନ୍ତି । ତା ଛଡା ସରକାରୀ ବଙ୍ଗଳା ଓ ମାଗଣା ସରକାରୀ ଗାଡି ଚଢ଼ି ବୁଲନ୍ତି । ତଥାପି ସେମାନଙ୍କର ରକ୍ତପାନ ତୃଷ୍ଣା ମେଣ୍ଟି ନଥାଏ । ଜନସାଧାରଣଙ୍କ ସେବା ପରିବର୍ତ୍ତେ ସେମାନେ ଜନତାର ରକ୍ତପାନ କରିବାରେ ଲାଗିପଡ଼ନ୍ତି । ଏମାନଙ୍କୁ କଠୋର ରୁ କଠୋରତର ଦଣ୍ଡରେ ଦଣ୍ଡିତ କରିବା ଉଚିତ୍ ।

ଅତି କ୍ଷୋଭର ବିଷୟ ଏମାନଙ୍କର ଉର୍ଦ୍ଧ୍ୱରେ ଥିବା ଭାରତୀୟ ସେବାର ଅଫିସର ମାନେ ଯଥା ଆଇ.ଏ.ଏସ., ଆଇ.ପି.ଏସ., ଆଇ. ଏଫ.ଏସ. ଚାକିରିଆମାନଙ୍କ ମଧ୍ୟରୁ କେତେଜଣ ଲାଞ୍ଚ ନେଉଛନ୍ତି । ଏମାନଙ୍କର ବେତନ ଓ ଆନୁଷଙ୍ଗିକ ସୁଖସ୍ୱାଚ୍ଛନ୍ଦ ସାଧାରଣ ଜନତା କଥା ଛାଡନ୍ତୁ ସାଧାରଣ କର୍ମଚାରୀଟିଏ ଠାରୁ କାହିଁ କେତେଗୁଣରେ ଅଧିକ । ତା ସତ୍ତ୍ୱେ କେତେକ ଅଫିସର ଲାଞ୍ଚୁଆ ଅଭ୍ୟାସ ଛାଡି ପାରନ୍ତି ନାହିଁ । କେଉଁ ଅଜଣା ଆକର୍ଷଣ ଓ ଲୋଭର ବଶବର୍ତ୍ତୀ ହୋଇ ଲାଞ୍ଚ ପାଇଁ ହାତ ପତାନ୍ତି । କେବଳ ସେତିକି ନୁହେଁ, ବହୁ ବିଭାଗରେ ଉପରିସ୍ଥ ଅଫିସର ତଳିଆ କର୍ମଚାରୀ ମାନଙ୍କ ଠାରୁ ମାସିକିଆ ବଟି ଆଦାୟ କରନ୍ତି । ତାର କାରଣ ପାଇଁ ସେମାନେ କହନ୍ତି ଯେ ସେମାନଙ୍କୁ ମାସକୁ ମାସ ବିଭାଗୀୟ ମନ୍ତ୍ରୀଙ୍କୁ ଟଙ୍କା ଦେବାକୁ ପଡେ । କେତେକ ପୋଷ୍ଟିଂ ବେଳରେ ଟଙ୍କା ଦେଇ ଆସିଥାନ୍ତି; ସେହି ଟଙ୍କାର ଶହେଗୁଣ ପର୍ଯ୍ୟନ୍ତ ସେମାନେ ତଳିଆ କର୍ମଚାରୀ ମାନଙ୍କ ଠାରୁ ମାସିକିଆ ହିସାବରେ ଆଦାୟ କରିଥାନ୍ତି ।

ଯେଉଁ ବ୍ୟକ୍ତି ଟଙ୍କା ଦେବାକୁ ରାଜି ହୁଏନା ତାକୁ ସବୁଠାରୁ ଅସୁବିଧା ସ୍ଥାନରେ ପୋଷ୍ଟିଂ କରାଯାଏ । ତା'ର ଗୁପ୍ତ ଚରିତ୍ର ପଞ୍ଜିକାରେ ବିରୋଧାତ୍ମକ ମନ୍ତବ୍ୟ ଲେଖି ତାର ପ୍ରମୋସନରେ ଅନ୍ତରାୟ ସୃଷ୍ଟି କରାଯାଏ । ତଳିଆ କର୍ମଚାରୀଟି ସହିପାରେନା କିମ୍ବା କହିପାରେନା । କାରଣ ଏହି ଲାଞ୍ଚୁଆମାନେ ଲୁଣ୍ଠିତ ଅର୍ଥରୁ ପୁଳାଏ ପୁଳାଏ ଦେଇ ଚାରିଆଡେ ବହୁ ସୂତ୍ରକୁ ହାତରେ ରଖିଥାଆନ୍ତି । ଆବଶ୍ୟକ ପଡିଲେ ସେହି ସ୍ୱଚ୍ଛ-ସୁବିଧାପ୍ରାପ୍ତ ବ୍ୟକ୍ତିମାନେ ବହୁତ ସାହାଯ୍ୟ କରନ୍ତି ।

ଏହି ଦୁଃଖଦ ଅଭିଜ୍ଞତା ବର୍ତ୍ତମାନ ଅବସରପ୍ରାପ୍ତ ବହୁ କର୍ମଚାରୀଙ୍କର ଥିବ । ମାତ୍ର କାଳକ୍ରମେ ସେ ସବୁ କ୍ଷତ ଜନିତ ଯନ୍ତ୍ରଣାକୁ ଭୁଲି ଯିବାକୁ ପଡେ ।

୧୯୬୬ ମସହିର କଥା । ମୁଁ ସେତେବେଳେ ଗୋଟିଏ ନିପଟ ମଫସଲ ଗାଁ ଗୋଟିଏ ପଞ୍ଚାୟତ ଶିଳ୍ପରେ ପଞ୍ଚାୟତ ଇଣ୍ଡଷ୍ଟ୍ରୀଜ୍ ଅଫିସର୍ ଥାଏ । ଏହିସବୁ ପଞ୍ଚାୟତ ଶିଳ୍ପ କ୍ଷୁଦ୍ରଶିଳ୍ପ ନିଗମ ଅଧୀନରେ ଥାଏ । ଜେନେରାଲ୍ ମ୍ୟାନେଜର ସଦାନନ୍ଦ ପାଢ଼ୀ । ସେ ଜଣେ ଆଦର୍ଶ ଚରିତ୍ରର ବ୍ୟକ୍ତି ଥାଆନ୍ତି । ହଠାତ୍ ଦିନେ ସକାଳ ୧୧ଟାରେ ଜେନେରାଲ୍ ମ୍ୟାନେଜର ପୂର୍ବରୁ କୌଣସି ପ୍ରୋଗ୍ରାମ ନ ଦେଇ ମୋ କାରଖାନା ପରିଦର୍ଶନ ପାଇଁ ପହଞ୍ଚିଲେ । ଅଫିସ୍ କାମ ସରିବାକୁ ପ୍ରାୟ ୨ ଟା ହୋଇଯିବ । ପାଖଆଖରେ କୌଣସି ହୋଟେଲ୍ ନାହିଁ । ସେହି ଅବସ୍ଥାରେ ମୁଁ ମୋ କ୍ୱାଟର୍‌ରେ ତାଙ୍କର ମଧ୍ୟାହ୍ନ ଭୋଜନ ବ୍ୟବସ୍ଥା କରୁଛି ବୋଲି କହିଲି । ସେ ମଧ୍ୟ ସମ୍ମତି ଦେଲେ । ଖାଇ ସାରି ସେ ମତେ ଦଶଟଙ୍କା ଯାଚିଲେ । ମୋର ପିତୃତୁଲ୍ୟ ବ୍ୟକ୍ତିଙ୍କୁ ମୁଁ ହାତଯୋଡି କହିଲି- ସାର୍ ! ସାମାନ୍ୟ ଗୋଟିଏ ବେଳା ଆତିଥ୍ୟ ପାଇଁ ଆପଣ ଟଙ୍କା ଦେଲେ ମୁଁ ଦୁଃଖିତ ହେବି । ସେ କହିଲେ- ତୁମେ ୭ ଶହ ଟଙ୍କା ଦମା ପାଉଛ । ହେଲେ ମୁଁ ୧୭ ଶହ ଟଙ୍କା ଦରମା ପାଉଛି । ମୁଁ ତୁମକୁ ଖୋଇବି ସିନା । ତୁମେ ମତେ କେମିତି ଖୋଇବ ? ମୋର ସବିନୟ ପ୍ରତ୍ୟାଖ୍ୟାନକୁ ସେ ଗ୍ରହଣ କଲେ ।

ସେ ଭଳି ମହାନ୍ ଚରିତ୍ର ଉଭେଇ ଯାଇ ତଳିଆ କର୍ମଚାରୀଠାରୁ ବଟି ନେବା ଉପର କର୍ମଚାରୀର ହକ୍ ବୋଲି ଅଦ୍‌ଭୁତ ଯୁକ୍ତି ୧୯୮୦ ମସିହା ପରେ ପରେ ଓଡ଼ିଶାରେ ବିଭିନ୍ନ ବିଭାଗରେ ଶୁଣାଗଲା । ଦୁର୍ନୀତି ନିବାରଣ ବିଭାଗ ହାତରେ ପ୍ରାୟ ଦୈନିକ କେହି ନା କେହି ଧରାପଡ଼ି ଲାଞ୍ଛିତ ହେଉଥିବାର ସମ୍ବାଦ ଆମେ ଦେଖୁଛୁ । ତା ସତ୍ତ୍ୱେ ଦୁରାଶାର ବଶବର୍ତ୍ତୀ ହୋଇ କର୍ମଚାରୀମାନେ ସେହି ଲୋଭ ପରିତ୍ୟାଗ କରିପାରୁନାହାନ୍ତି । ଏ ସବୁ ଦେଖିଲେ ଲାଗେ ''ମତେ ଯେତେ ମାଠିବୁ ମାଠ, ମୁଁ ସେଇ ଦରପୋଡା କାଠ ।''

(ଅନୁପମଭାରତ) ୧.୧୨.୨୦୧୧

# ଭ୍ରଷ୍ଟାଚାରୀ କିଏ ?

ଏ ପ୍ରଶ୍ନର ସରଳ ଉତ୍ତର ପାଇବାକୁ ହେଲେ ଆମକୁ କଂଗ୍ରେସର ଜଣେ ଆତ୍ମଘୋଷିତ ନିର୍ମମ ଭାବମୂର୍ତ୍ତି ସଂପନ୍ନ ନେତାଙ୍କ ଟୀକା ଟିପ୍ପଣୀକୁ ଦୃଷ୍ଟି ଦେବାକୁ ହେବ । ସେ ହେଲେ ବାବୁ ଦିଗବିଜୟ ସିଂ । ଅଖଣ୍ଡ ମଧ୍ୟପ୍ରଦେଶର ଦୀର୍ଘଦିନ ଧରି ମୁଖ୍ୟମନ୍ତ୍ରୀ ଥିବା ଦିଗବିଜୟ ଙ୍କ ସୁଶାସନ ତଥା ନିର୍ମଳ ଭାବମୂର୍ତ୍ତି ଯୋଗୁ କଂଗ୍ରେସ ମଧ୍ୟପ୍ରଦେଶରୁ ମୂଳପୋଛ ହୋଇଗଲା । ସେଥିରେ ସେ ଲଜ୍ଜିତ ନୁହନ୍ତି । ନିଜର କୃତ କର୍ମର ଫଳ ସ୍ୱରୂପ ଶାସନଭାର ବିଜେପି ହାତକୁ ଚାଲିଯିବା ପରଠାରୁ ତାଙ୍କୁ ଶୟନେ ସ୍ୱପନେ ବିଜେପି ଭୂତ ଦେଖାଯାଉଛି ।

ତାଙ୍କର ସର୍ବଶେଷ ଥିଓରି ହେଲା - ସ୍ୱାମୀ ରାମଦେବ, ଆର.ଏସ.ଏସ ଓ ବିଜେପି ଦଳର ମୁଖପାତ୍ର ରୂପେ ଦୁର୍ନୀତି ବିରୁଦ୍ଧରେ ତାଙ୍କର କାର୍ଯ୍ୟକ୍ରମ ଆରମ୍ଭ କଲେ । ତାଙ୍କ ମତରେ ଦୁର୍ନୀତି ବିରୁଦ୍ଧରେ ଯେ କୌଣସି ବକ୍ତବ୍ୟ ଓ କାର୍ଯ୍ୟକ୍ରମ ଉପା ବିରୋଧୀ ତଥା କଂଗ୍ରେସ ବିରୋଧୀ । ତେଣୁ ଉପାସରକାର ଓ କଂଗ୍ରେସକୁ ସେ ଦୁର୍ନୀତିର ପୃଷ୍ଟପୋଷକ ରୂପେ ତାଙ୍କର ବାଚାଳତା ମଧ୍ୟରେ ପ୍ରତିପାଦନ କରିସାରିଥିଲେ ।

ତାପରେ ଦ୍ୱିତୀୟ ଭ୍ରଷ୍ଟାଚାରୀ ହେଲେ ଆନ୍ନା ହଜାରେ । ତାଙ୍କର ଜନ୍ମ ଦିନରେ କେବେ ପାଣ୍ଠି ହଡପ ହୋଇଥିବା ଠାରୁ ତାଙ୍କ ଏନ.ଜି.ଓରୁ ସେ ଟଙ୍କା ଖାଇଯାଇଛନ୍ତି ବୋଲି ପ୍ରଳାପ କରିବାକୁ ଲାଗିଲେ । ତାଙ୍କୁ ମଧ୍ୟ ଆର.ଏସ.ଏସ ଓ ବିଜେପି ଦ୍ୱାରା ପରିଚାଳିତ ଆଖ୍ୟା ଦେବାକୁ ପଛାଇଲେ ନାହିଁ । ଏବେ ମଧ୍ୟ ଦିଗବିଜୟ ଆନ୍ନା ଓ ତାଙ୍କ ଟିମ୍‌କୁ ଗୋଟିଏ ପରେ ଗୋଟିଏ ତୀର ମାରି ଚାଲିଛନ୍ତି । ସେହି ତୀରମାନ ଯେ ବୁମେରାଂ ହୋଇ କଂଗ୍ରେସର ପତିଆରା ନଷ୍ଟ କରୁଛି - ସେ ବୋଧହୁଏ ଜାଣିପାରୁନାହାନ୍ତି ।

ତାଙ୍କର ତୃତୀୟ ଟାର୍ଗେଟ୍ ହେଲେ ରବି ଶଙ୍କର ମହାରାଜ । ରବି ଶଙ୍କର ଯେଉଁଦିନଠାରୁ ଆନ୍ନା ହଜାରେଙ୍କୁ ସାକ୍ଷାତ କଲେ, ଯେଉଁ ଦିନଠାରୁ ଭାରତରୁ

ଭ୍ରଷ୍ଟାଚାର ଦୂରହେବା ଉଚିତ୍ ବୋଲି ବିବୃତି ଦେଲେ, ସେହିଦିନଠାରୁ ସେ କଂଗ୍ରେସର ଶତ୍ରୁ ହୋଇଗଲେ । ଅଦ୍ୟାପି ଦିଗବିଜୟଙ୍କୁ ସୋନିଆ ଗାନ୍ଧି ପରିବାରର ଜଣେ ଚାଟୁକାର ରୂପେ ଲୋକେ ଜାଣିଥିଲେ । ମାତ୍ର କଂଗ୍ରେସ ଭିତରେ ଜଣେ ବିଦୂଷକ ବୋଲି ବର୍ତ୍ତମାନ ସେ ପ୍ରଚୁର ଖ୍ୟାତି ଅର୍ଜିଲେଣି ।

ବର୍ତ୍ତମାନର ଘଟଣାବଳୀକୁ ଲକ୍ଷ୍ୟକଲେ ଦୁଃଖ ଲାଗେ ଯେ କଂଗ୍ରେସ ନୀତିଗତ ଭାବରେ ଭ୍ରଷ୍ଟାଚାର ଓ ଭ୍ରଷ୍ଟାଚାରୀଙ୍କୁ ସୁରକ୍ଷା ଦେଇ ଚାଲିଛି । ଫଳତଃ ଏହା ବର୍ତ୍ତମାନ ଗୋଟାଏ ବୁଡି ଯାଉଥିବା ଜାହାଜ ସଦୃଶ ହୋଇଛି । ଯେ କେହି ଭ୍ରଷ୍ଟାଚାରକୁ ବିରୋଧ କଲା, ଉପା ସରକାରଙ୍କ ଅସ୍ତ୍ର ସିବିଆଇ ତା ବିରୁଦ୍ଧରେ ଲାଗିଗଲା । ତେଣୁ ସିବିଆଇକୁ ତ କଂଗ୍ରେସ ବ୍ୟୁରୋ ଇନଭେଷ୍ଟିଗେସନ କୁହାଗଲାଣି ।

ସ୍ୱାମୀ ରାମଦେବଙ୍କ ବିରୁଦ୍ଧରେ ସି.ବି.ଆଇ, ଇ.ଡି ଓ ଯେତେ ସବୁ ବିଭାଗ ଅଛି ଲଗାଇ ଦିଆଗଲା । ତାପରେ ଆନ୍ନା ହଜାରେ ଓ ତାଙ୍କ ଟିମ୍ ବିରୁଦ୍ଧରେ ବିଭିନ୍ନ ଆରୋପ ଉତ୍‌ଥାପନ କରି ସେମାନଙ୍କୁ ଆନ୍ଦୋଳନରୁ ଦୂରେଇ ଯିବାକୁ ଯେପରି ଧମକ ଦିଆଗଲା । ଏହାପରେ ରବିଶଙ୍କରଙ୍କ ବିରୁଦ୍ଧରେ ସିବିଆଇ ନିଶ୍ଚୟ ପଡ଼ିଯିବ । ଏହି ସିବିଆଇ ବୋଫର୍ସ ମାମଲାରେ ରାଜୀବ ଗାନ୍ଧିଙ୍କୁ କ୍ଲିନ୍ ଚିଟ୍ ଦେଇ ମାମଲା ପ୍ରତ୍ୟାହାର କରିବାକୁ ଲେଖିଲା । ଏହି ଦିଗବିଜୟ ସିଂହ ଲକ୍ଷ ଲକ୍ଷ ପୀଡିତଙ୍କ ଚିତ୍କାର ନ ଶୁଣି ତାଙ୍କ ପ୍ରଭୁଙ୍କ ବଚସ୍କରରୂପେ ଆଣ୍ଡରସନ ନିରାପଦରେ ଭାରତରୁ ଚାଲିଯିବାରେ ସାହାଯ୍ୟ କରିଥିଲେ । ପୁଣି ୱାଇଏସ ଆରଙ୍କ ପୁତ୍ର ଜଗନ କଂଗ୍ରେସରୁ ବାହାରିଯିବା ପରେ ତାଙ୍କ ଘରେ ସିବିଆଇ ରେଡ ହେଲା । ଏ ସବୁ କ'ଣ କଂଗ୍ରେସ ଇଙ୍ଗିତରେ ହେଉନାହିଁ ?

କଂଗ୍ରେସର ଏହିଭଳି କୁଶାସନ ଫଳରେ ଓଡ଼ିଶାକୁ କଂଗ୍ରେସ ସରକାର ବିଦାୟ ନେବାର ୧୨ ବର୍ଷ ବିତିଗଲାଣି । ତଥାପି ଜନସାଧାରଣ କଂଗ୍ରେସର କୁ ଶାସନକୁ ଭୁଲି ପାରିନାହାନ୍ତି । ଯେତେ କୁସ୍ତିକସରତ କଲେ ମଧ୍ୟ କଳଙ୍କିତ-ଇମେଜ ନେଇ ଏତେ ବର୍ଷ ଧରି କଂଗ୍ରେସ ଓଡ଼ିଶାର ସିଧା ଠିଆ ହୋଇ ପାରୁନାହିଁ । ତେଣୁ ଦିଗବିଜୟ ସିଂହ ଅନ୍ୟକୁ ଆକ୍ଷେପ କରିବା ଛାଡି କଂଗ୍ରେସର ପୂର୍ବ ଗାରିମା କେମିତି ଫେରି ଆସିବ, ସେ ଦିଗରେ କାମ କରନ୍ତୁ । ମଧ୍ୟ ପ୍ରଦେଶରେ ପୁଣି କଂଗ୍ରେସର ଶାସନ ଫେରାଇ ଆଣନ୍ତୁ । ତେବେ ଯାଇ ତାଙ୍କର କଥାରେ କିଛି ମୂଲ୍ୟ ଅଛି ବୋଲି ଲୋକେ ବିଚାରିବେ । ନଚେତ୍ କ୍ଷେତକୁ ଜଗିବାକୁ ଚାଷୀପାଳଭୂତ ଜଗାଇଲା ପରି ତାଙ୍କର

ସ୍ଥିତି ହାସ୍ୟାସ୍ପଦ ବିବେଚିତ ହେଉଛି ଓ ହେବ । ପୁନଶ୍ଚ ଯଦି ସେ କଂଗ୍ରେସ ପାର୍ଟିର ପ୍ରରୋଚନାରେ ଏଭଳି ପ୍ରଳାପ କରୁଥାନ୍ତି, ତେବେ ଦଳର ବିପର୍ଯ୍ୟୟ ସୁନିଶ୍ଚିତ ।

ବର୍ତ୍ତମାନ ଭ୍ରଷ୍ଟାଚାର ଓ ଦୁର୍ନୀତି ସବୁଦଳରେ ଅଛି । ତେବେ ଯେହେତୁ କଂଗ୍ରେସ ସର୍ବ ପୁରାତନ ଦଳ ଏବଂ ବର୍ତ୍ତମାନ ଉପା ସରକାରର ମୁଖ୍ୟ କର୍ଣ୍ଣଧାର, ତେଣୁ ନିନ୍ଦାର ଅପଯଶର ବଡ ଭାଗ ମଧ୍ୟ ତାର ପ୍ରାପ୍ୟ । ତେଣୁ ବର୍ତ୍ତମାନ ସମଗ୍ର ଭାରତର ସଚେତନ, କ୍ଷୁବ୍‌ଧ ଜନତା ଆଗାମୀ ଦିନରେ କଂଗ୍ରେସର କ୍ରିୟା କଳାପକୁ ଚାହିଁ ରହିଛନ୍ତି । ଦରବୃଦ୍ଧି ପୀଡ଼ିତ ଅତିଷ୍ଠ ଜନସାଧାରଣ ଏହାର ପ୍ରତିକାର ପାଇଁ ସରକାରଙ୍କ ଆଡକୁ ଆଙ୍ଗୁଠି ନିର୍ଦ୍ଦେଶ କରିବା ସଙ୍ଗେ ସଙ୍ଗେ ଦେଶରୁ କଳା ଟଙ୍କାର ପ୍ରାଦୁର୍ଭାବ ଲୋପ କରିବାକୁ ନିର୍ବାଚିତ ପ୍ରତିନିଧି ମାନଙ୍କ ଉପରେ ଚାପ ପ୍ରୟୋଗ କରି ଚାଲିଛି । ସେ ଆନ୍ନା ହଜାରେ ହୁଅନ୍ତୁ ବା ଆଉ କେହି ହୁଅନ୍ତୁ, ପ୍ରଚଳିତ ବ୍ୟବସ୍ଥାରେ ଅତିଷ୍ଠ ଜନ ସାଧାରଣ ଯେ ଏକ ବୈପ୍ଳବିକ ପରିବର୍ତ୍ତନ ଆଶା କରନ୍ତି, ତାହା ଦିଗବିଜୟ ମାନେ ଯେତେ ଶୀଘ୍ର ବୁଝିପାରିବେ ଦେଶପାଇଁ ଓ ସେମାନଙ୍କ ପାଇଁ ମଙ୍ଗଳ । ନଚେତ୍ ପ୍ରତିବାଦ କରୁଥିବା ଲୋକଙ୍କ ବାହୁଚ୍ଛେଦନ କଲେ ଆଗାମୀ ଦିନରେ ଆଜିର ଶାସକଦଳ ଯେ ଦେଶରୁ ନିଶ୍ଚିହ୍ନ ହୋଇଯିବ, ତାହା ଜଳଜଳ ଦେଖାଯାଉଛି ।

(ଅନୁପମଭାରତ)

# ତୃତୀୟ ସାମ୍ମୁଖ୍ୟ-ଏକ ଉଭଟ ପରିକଳ୍ପନା

ମାତ୍ର ଅଳ୍ପ ଦିନ ତଳେ ଭାରତୀୟ ଗଣମାଧ୍ୟମରେ ଖୁବ୍ ଜୋରରେ ପ୍ରଚାରିତ ହେଲା ଯେ ଆସନ୍ତା ୨୦୦୪ ସାଧାରଣ ନିର୍ବାଚନରେ ୧୧ଟି ରାଜନୈତିକ ଦଳ ଏକତ୍ରିତ ହୋଇ କେନ୍ଦ୍ରରେ ଏକ ଅଣ କଂଗ୍ରେସ, ଅଣ ବିଜେପି ସରକାର ଗଢ଼ିବେ । ଏଭଳି କଳ୍ପନା-ବିଳାସ ଭାରତୀୟ ରାଜନୈତିକ ପ୍ରେକ୍ଷାପଟରେ କିଛି ନୂତନ ନୁହେଁ । ଏହା ପୂର୍ବରୁ ୨ ଥର ଏଭଳି ପ୍ରଚେଷ୍ଟାର ସୂତ୍ରପାତ ହୋଇଛି ଏବଂ ତାହା କେବଳ ସେହି ସୂତ୍ରପାତରେ ଅଟକି ରହିଛି ।

ଭାରତରେ ଛୋଟବଡ ଅସଂଖ୍ୟ ରାଜନୈତିକ ଦଳ ନିର୍ବାଚରେ ଅଂଶ ଗ୍ରହଣ କରନ୍ତି । ପୁଣି ୨/୪ ଟି ସାଂସଦଙ୍କୁ ଜିତାଇ ଆଣି ପାରିଲେ ଶାସକ ଦଳରେ ଗଳିପଶି ଅର୍ଥ ଉପାର୍ଜନର ବାଟ କରନ୍ତି । ଆମ ଦେଶରେ କଂଗ୍ରେସ, ବିଜେପି ଓ କମ୍ୟୁନିଷ୍ଟ ନାମରେ ମାତ୍ର ତିନୋଟି ରାଜନୈତିକ ଦଳରୁ କେନାମାନ ବାହାରି ବିଭିନ୍ନ ଦଳର ସୃଷ୍ଟି । ତେଣୁ ସେହି ଛୋଟ ଦଳମାନଙ୍କ ମଧ୍ୟରେ ମୁଖ୍ୟଦଳର ସମସ୍ତ ଦୁର୍ଗୁଣ ଓ କଳଙ୍କ ପୂରି ରହିଥାଏ । ସେମାନେ କେବଳ ସୁଯୋଗ ଅପେକ୍ଷାରେ ଥାଆନ୍ତି କେମିତି ମନ୍ତ୍ରୀ ହେବେ । ଉପା-୧ରେ ଲାଲୁ ଯାଦବଙ୍କ କାରନାମା ସମସ୍ତେ ଦେଖିଲେ । ଦୁର୍ନୀତିଗ୍ରସ୍ତ ବୋଲି କୋର୍ଟଦ୍ୱାରା ଦଣ୍ଡିତ ହୋଇ ଜେଲ୍‌ରେ ରହିବା ପରେ ଗାଲୁ ଭୁରୁଡି ମାରି କଂଗ୍ରେସର ଅସହାୟତାକୁ ପୁଞ୍ଜି କରି ରେଳବାଇମନ୍ତ୍ରୀ ହୋଇ ପାରିଲେ । ଅଜିତ୍ ସିଂହ ସେମିତି ବର୍ତ୍ତମାନ ଜଣେ କେନ୍ଦ୍ରମନ୍ତ୍ରୀ । ଡିଏମକେ ଦରଦସ୍ତୁର କରି ଉପା-୨ରେ ୬ ଟା ମନ୍ତ୍ରୀ ପଦବୀ ହାସଲ କଲା ।

ଏମାନେ କେହି ଦେଶପ୍ରେମୀ ନୁହନ୍ତି । ତାଙ୍କୁ ଯଦି କେହି ଦେଶ ଦ୍ରୋହୀ ବୋଲି କହେ ତାହା ମଧ୍ୟ ସଂପୂର୍ଣ୍ଣ ଭୁଲ ନୁହେଁ । ଏମାନେ ନିଜନିଜର ବ୍ୟକ୍ତିଗତ ସ୍ୱାର୍ଥପାଇଁ ଦେଶ ଓ ଜାତିକୁ ବିପଦଗ୍ରସ୍ତ କରିବାକୁ ପଛାନ୍ତି ନାହିଁ । ଏମାନେ ଆଖିବୁଜି ଦୁର୍ନୀତି କରୁଥିବାର ଜାଣି ମଧ୍ୟ ସରକାରକୁ ବଞ୍ଚାଇ ରଖିବାକୁ ତାକୁ ନ ଦେଖିଲାଭଳି ଅଭିନୟ କରିବାକୁ ପଡେ । ଟୁ-ଜି ମାମଲାରେ ଏ. ରାଜା ଓ କାନିମୋଝିଙ୍କ ସମସ୍ତ କଳାକାରନାମା ଜାଣିଲେ ମଧ୍ୟ ଭାଗବାଣ୍ଟି ଖାଇବା ନ୍ୟାୟରେ କଂଗ୍ରେସ ତୁନି ରହିଲା ।

ଏଭଳି ସ୍ଥିତିରେ ଯେଉଁ ୧ ୧ ଟି ଦଳମିଶି ସରକାର ଗଢ଼ିବାର ସ୍ୱପ୍ନ ଦେଖୁଛନ୍ତି- ସେମାନଙ୍କର ଭିତରେ ପରସ୍ପର ଶତ୍ରୁତା ଯୋଗୁ ଜଣେ ଆରଜଣକୁ ସହିପାରିବ ନାହିଁ । ତେଣୁ ଆରମ୍ଭରୁ ହିଁ ବିଭ୍ରାଟ ଦେଖା ଦେବହିଁ ଦେବ । ଯେପରି ମୁଲାୟମ-ମାୟାବତୀ ୟୁପିରେ କେହି କାହାକୁ ସହି ନ ପାରୁଥିବା ବେଳେ କେନ୍ଦ୍ରରେ କ'ଣ ଜଣେ ଆରଜଣର ଶକ୍ତି ବୃଦ୍ଧିକୁ ସହିବ ? ପଶ୍ଚିମ ବଙ୍ଗରେ କମ୍ୟୁନିଷ୍ଟ-ତୃଣମୂଳ କଂଗ୍ରେସ, ବିହାରରେ ନୀତିଶ-ଲାଲୁ-ଭୋଳା ପାଶ୍ୱାନ, ତାମିଲ୍ ନାଡୁରେ ଡି.ଏମ.କେ-ଏ.ଆଇ.ଡି.ଏମ.କେ ଇତ୍ୟାଦି ପରସ୍ପର ଘୋର ଶତ୍ରୁ ।

ତା ଛଡା ମିଶିବା ପ୍ରସ୍ତାବ ଉଠିବା ମାତ୍ରେ ଜୟଲଳିତା ଦାବି କଲେଣି ପ୍ରଧାନମନ୍ତ୍ରୀ ହେବେ । ଲାଲୁ ଗାଲୁମାରିଲେଣି ପ୍ରଧାନମନ୍ତ୍ରୀ ପଦ ପାଇଁ । ମୁଲାୟମ ତ ସବୁବେଳେ ପ୍ରଧାନମନ୍ତ୍ରୀ ହେବାର ସ୍ୱପ୍ନରେ ବିଭୋର । ମାୟାବତୀ ଓ ମମତା ଦିଦି ମଧ୍ୟ ସେ ଦୌଡରେ ପଛରେ ନାହାନ୍ତି । ନବୀନ ପଟ୍ଟନାୟକଙ୍କ ସୂତ୍ରରୁ ଜଣାଯାଏ ଯେ ସେ ହିଁ ତୃତୀୟ ସାମ୍ମୁଖ୍ୟର ନେତୃତ୍ୱ ନେବେ । ନୀତିଶ୍ କୁମାର ଜଣେ ମଧ୍ୟ ପ୍ରଧାନମନ୍ତ୍ରୀ ଆଶାୟୀ ପ୍ରାର୍ଥୀ । ତେଣୁ କେବଳ ଗୁଡିଏ ଇଞ୍ଜିନକୁ ଏକାଠି କରି ଦଉଡାଇଲେ ତାକୁ ରେଳଗାଡି କୁହାଯାଏ ନାହିଁ । ସେହିଭଳି ଏଗାରଟା ଯାତ୍ରା ପାର୍ଟିର ମୁଖ୍ୟଙ୍କୁ ଏକାଠି କରି ଗୋଟାଏ ଭଲ ପାର୍ଟି କରି ଗଢ଼ିବାର ସ୍ୱପ୍ନ ଅଦ୍ୟାବଧି କେଉଁଠାରେ ସଫଳ ହୋଇନାହିଁ । ଏହି ବହୁଧା ବିଭକ୍ତ ଛୋଟଛୋଟ ଦଳମାନଙ୍କ ମଧ୍ୟରୁ କେତେକ ଏନଡିଏ ରେ ଥିଲେ ତ କେତେକ ଏବେ ବି ଉପା-୨କୁ ଭିତିରିଆ ସହଯୋଗ ଦେଉଛନ୍ତି । କେବଳ କମ୍ୟୁନିଷ୍ଟ ଦଳଟି ଅଲଗା । ସେମାନେ ଏବେ ମଧ୍ୟ ଚାହିଁବସିଛନ୍ତି କି ଚାଇନା ଭାରତ ଦଖଲ କରିନେଲେ ତାଙ୍କର ପତିଆରା ବଢ଼ିବ । କାରଣ ୧୯୬୨ରେ ଭାରତ-ଚୀନ ଯୁଦ୍ଧ ଭଳି ଜାତୀୟ ବିପତ୍ତିରେ ସେମାନେ ଚୀନ୍ ସେନାକୁ ମୁକ୍ତି ଫଉଜ ଆଖ୍ୟା ଦେଇଥିଲେ । ଆଜି ମଧ୍ୟ ସେମାନଙ୍କର ମନୋଭାବରେ ପରିବର୍ତ୍ତନ ଆସିନାହିଁ ।

ବର୍ତ୍ତମାନ ଭାରତ ପାରିବାରିକ ତୋଷାମଦି ପରିତ୍ୟାଗ କରି ଜଣେ ବଳିଷ୍ଠ ନେତୃତ୍ୱ ଦେଇପାରୁଥିବା ବ୍ୟକ୍ତିକୁ ଚାହିଁ ରହିଛି । ସେ ହେଲେ ପ୍ରଚଣ୍ଡ ସ୍ୱାଭିମାନୀ, ଜାତୀୟବାଦୀ ନେତା ନରେନ୍ଦ୍ର ମୋଦି । ଭାରତକୁ ଏକତା ଡୋରିରେ ବାନ୍ଧି ରଖିବାକୁ ଜଣେ ସଫଳ, ସମ୍ବେଦନଶୀଳ ଦେଶପ୍ରେମୀ ନେତାର ଆବଶ୍ୟକତା ସେ ହିଁ ପୂରଣ କରିପାରିବେ । ବୋଲି ଲୋକେ ଆଶା କରୁଛନ୍ତି ।

(ଅନୁପମଭାରତ)

# ଆଶାର ଆଲୋକ-ଆପ

ଷାଠିଏ ବର୍ଷର କଂଗ୍ରେସ ଶାସନରେ ଆଉ କିଛି ହେଉ ନ ହେଉ ଗଣତନ୍ତ୍ରକୁ ପ୍ରତି ମୁହୂର୍ତ୍ତରେ ହତ୍ୟା କରିବା ଚାଲି ଆସିଛି । ପୁଣି ଦୁର୍ନୀତି ଦେଶର ପ୍ରତି ଧୂଳି କଣାକୁ ଗ୍ରାସ କରିଯାଇଛି । ଗଣତନ୍ତ୍ରର ମନ୍ଦିର କୁହାଯାଉଥିବା ଲୋକସଭା, ରାଜ୍ୟସଭା ଏବଂ ରାଜ୍ୟମାନଙ୍କର ବିଧାନସଭାରେ ଦେଶର ଶ୍ରେଷ୍ଠ ଦୁର୍ନୀତି ଗ୍ରସ୍ତ, କଳାବଜାରୀ ବାହୁବଳୀ ତଥା ଅପରାଧୀମାନଙ୍କର ଭିଡ ପ୍ରତ୍ୟେକ ଗଣତନ୍ତ୍ରପ୍ରେମୀଙ୍କୁ ଘୋର ବ୍ୟଥିତ କରିଛି ।

ଦେଶ ତଥା ଦେଶର ଜନତା ବିଷୟରେ ଚିନ୍ତା କରୁଥିବା ଆନ୍ନାହଜାରେ ଏହି ଦୁର୍ନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲାବେଳେ ପ୍ରଥମେ ତାଙ୍କୁ ବଦନାମ କରିବାକୁ କଂଗ୍ରେସର ଛାମୁଆ ପଦଲେହନକାରୀମାନେ ବହୁ ବିବୃତି ଦେଇ ତାଙ୍କୁ କଳଙ୍କିତ ଆଖ୍ୟା ଦେଇ ଆନ୍ଦୋଳନରୁ ଫେରାଇ ଦେବାକୁ ଚେଷ୍ଟା କଲେ । ମାତ୍ର ଆନ୍ନା ତଥା ତାଙ୍କ ଟିମ୍ ଅରବିନ୍ଦ କେଜରିଓ୍ୱାଲ୍ ପ୍ରଶାନ୍ତ ଭୂଷଣ ଇତ୍ୟାଦି ସେଥିରେ ଦବି ନଯାଇ ଆନ୍ଦୋଳନ ଜାରି ରଖିଲେ । ସେତେବେଳେ ଭ୍ରଷ୍ଟ କଂଗ୍ରେସୀ ଚାମଚାମାନେ ଆହ୍ୱାନ ଦେଲେ କି ତୁମେ ଭୋଟରେ ଜିତି ଆସ, ତାପରେ ଦୁର୍ନୀତି ବିରୁଦ୍ଧରେ କୁହ । ସେମାନଙ୍କର ଅଭ୍ୟାସକ୍ରମେ ବଦ୍ଧମୂଳ ଧାରଣା ଯେ କୋଟି କୋଟି ଟଙ୍କା ଖର୍ଚ୍ଚ କରି ଆସି ଶହେ ଗୁଣା ଅର୍ଜିବା ହିଁ ରାଜନୀତି ବିଶେଷତଃ ଭାରତୀୟ ରାଜନୀତି । ଏ ରାସ୍ତାରେ ହୋ ହାଲ୍ଲା କରୁଥିବା ଲୋକେ କେବଳ ହାଲ୍ଲା କରିବେ ସିନା ସଂଖ୍ୟାଧିକ ଭୋଟ ପାଇ ଅଧିକୃତ ବିଧାନ-ସୌଧର ମାଟି ମାଡି ପାରିବେ ନାହିଁ ।

ଏଭଳି ଚ୍ୟାଲେଞ୍ଜରୁ ଜନ୍ମ ଲାଭ କଲା ଆପ । ଆପ ଏକ ଝଡଝଞ୍ଜାର ଜାତ ନିର୍ଭୀକ ସନ୍ତାନ । ଆପ ଭାରତର ପଚାସଢ଼ା ଗଣତନ୍ତ୍ରରେ ଆଶାର ଆଲୋକ । ବିଜୟର ବାର୍ତ୍ତାବହ । ମାତ୍ର କେତେଟା ମାସ ତଳେ ଜନ୍ମ ନେଇଥିବା ଏହି ଦଳ ଦିଲ୍ଲୀରେ କଂଗ୍ରେସକୁ ଧୂଳିସାତ୍ କରିଦେଲା । ଅବଶେଷରେ ଅରବିନ୍ଦ କେଜରିଓ୍ୱାଲ୍ ଦିଲ୍ଲୀର ମୁଖ୍ୟମନ୍ତ୍ରୀ ରୂପେ ଶପଥ ଗ୍ରହଣ କଲେ । କେବଳ ବିଜେପିକୁ କ୍ଷମତାରୁ ଦୂରେଇ

ରଖିବା ପାଇଁ କଂଗ୍ରେସ ଉପରେ ପଡ଼ି ଆପକୁ ସମର୍ଥନ ଦେଇ ମନ୍ତ୍ରୀମଣ୍ଡଳ ଗଠନ କରାଗଲା । ମାତ୍ର ଆପର ଝାଡୁ ଯେତେବେଳେ କଂଗ୍ରେସ ଛାମୁଆ ନେତା, କେନ୍ଦ୍ରମନ୍ତ୍ରୀ ତଥା ଅନ୍ୟାନ୍ୟ ନେତୃବର୍ଗଙ୍କ ପିଠିରେ ବାଜିଲା, ପାହାର ଯେତିକି ସହିବାର ସୀମା ଅତିକ୍ରମ କଲା-ସେତେବେଳେ ଚିରାଚରିତ ଅଭ୍ୟାସ ମତେ କଂଗ୍ରେସ ତାର ଅସହଯୋଗ ଆରମ୍ଭ କରିଦେଲା ଏବଂ ଆପ ସରକାର ଦିଲ୍ଲୀରେ ଭୁଷୁଡି ପଡ଼ିବା ଆଗରୁ ମୁଖ୍ୟମନ୍ତ୍ରୀ ଇସ୍ତଫା ପ୍ରଦାନ କଲେ ।

ସେହି ଅଳ୍ପଦିନର ଶାସନରେ କେଜରିୱାଲ ଦିଲ୍ଲୀରେ ଭିଆଇପି ଷ୍ଟାଟସ ସବୁ ପ୍ରକାର କଂଗ୍ରେସୀ ଆଟୋପକୁ ହଟାଇ ଜନତାର ନିକଟତର ହୋଇପାରିଲେ । ପୁଣି ଦୁର୍ନୀତି ବିରୁଦ୍ଧରେ କଠୋର ପଦକ୍ଷେପ ନେଇଥିଲେ । କେନ୍ଦ୍ରମନ୍ତ୍ରୀ ସିନ୍ଦେଙ୍କ କଳାକାରନାମାର ମୁଖାଖୋଲି ଦେଲେ । ଭାରତୀୟ ଗଣତନ୍ତ୍ରର ସବୁଠାରୁ ଦୁର୍ନୀତିଗ୍ରସ୍ତ ଗୃହମନ୍ତ୍ରୀ ରୂପେ ସିନ୍ଦେଙ୍କ ମୁଖା ସାହସର ସହିତ ଖୋଲିଦେଲେ । କେନ୍ଦ୍ରମନ୍ତ୍ରୀ ମାନଙ୍କର ସଲାସୁତୁରାରେ ଗ୍ୟାସ ଦରବୃଦ୍ଧି ବିଜୁଳି ଦର ବୃଦ୍ଧିର ମୁଖା ଖୋଲିଦେଲେ । କ୍ଷମତା ଲୋଭଥିଲେ ସେ କଳେବଳେ କଉଶଳେ ତାଙ୍କ ମନ୍ତ୍ରୀମଣ୍ଡଳକୁ ବଞ୍ଚାଇ ପାରିଥାନ୍ତେ । ମାତ୍ର କ୍ଷମତା ଲୋଭ ଓ ଦେଶ ଲୁଣ୍ଠନ ତାଙ୍କର ସ୍ୱଭାବ ବିରୁଦ୍ଧ ଥିବାରୁ ସେ ମୁଖ୍ୟମନ୍ତ୍ରୀ ପଦବୀକୁ ପରିତ୍ୟାଗ କଲେ ।

ଏହାଫଳରେ ସାଧୁ ଓ ସଚ୍ଚରିତ୍ର ଲୋକେ ରାଜନୀତିରେ ପ୍ରବେଶ କରିବାର ଅନ୍ତତଃ ସାହସ ସଞ୍ଚୟ କରିପାରିବେ । ସେ ବିଦ୍ୟୁତ୍ କଂପାନୀ ଗୁଡିକର ତନଖି ସିଏଜି ଦ୍ୱାରା କରିବାକୁ ଆଦେଶ ଦେଇ ଦେଶବାସୀଙ୍କ ଆଖି ଖୋଲିଦେଲେ । ଅନ୍ୟାନ୍ୟ ରାଜ୍ୟରେ ମଧ ବିଦ୍ୟୁତ କଂପାନୀ ମାନଙ୍କର ପ୍ରକୃତ ଆୟ ବ୍ୟୟ ସହିତ ରାଜନେତାମାନଙ୍କର କୋଟି କୋଟି ଟଙ୍କା ନେଇ ଜନତା ଉପରେ ଦେୟ ଲଦି ଦେବା ବିରୁଦ୍ଧରେ ସ୍ୱର ଉତ୍ତୋଳନ ହେଲାଣି । ଆମ ଓଡ଼ିଶାର ମଧ ବିଦ୍ୟୁତ ଶୁଳ୍କ ସୀମା ଟପି ଯାଇଥିଲେ ହେଁ ସେଭଳି ଜନ ଆନ୍ଦୋଳନ ଅଭାବରୁ ଶୁଳ୍କ ଆହୁରି ବଢ଼ିବାକୁ ଯାଉଛି ।

ମାତ୍ର କେଜରିୱାଲଙ୍କ ୪୯ ଦିନ କାର୍ଯ୍ୟକାଳ ଭିତରେ ରବର୍ଟ ଭଦ୍ରାଙ୍କ ଦୁର୍ନୀତି ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ ନକରିବା ନିଶ୍ଚୟ ରହସ୍ୟମୟ ମନେହୁଏ । ସେ ନିଜେ ଯେଉଁ ଦୁର୍ନୀତିକୁ ଲୋକଲୋଚନକୁ ଆଣିଥିଲେ, ତା ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ ନ କରିବାର କାରଣ କ'ଣ ?

ଯେଉଁ କଂଗ୍ରେସର ଦୁର୍ନୀତି ବିରୁଦ୍ଧରେ ପ୍ରଚାର କରି ଆନ୍ଦୋଳନ କରି ତାକୁ ଜନତାର ପରମଶତ୍ରୁ ବୋଲି ପ୍ରଚାର କରି ଆପ୍ ୨୮ ଟି ସ୍ଥାନରେ ବିଜୟ ଲାଭ କଲା-ଶେଷରେ ମନ୍ତ୍ରୀମଣ୍ଡଳ ଗଠନ ସେହି କଂଗ୍ରେସର ଦ୍ୱାରାରେ କରିବାକୁ ବୁଦ୍ଧିଜୀବୀ ମହଲ ପସନ୍ଦ କରି ନଥିଲେ । ତା ଛଡା କଂଗ୍ରେସ ବିଜେପିକୁ ପାନେ ଦେବାକୁ ଯାଇ ନିଜର ଯଥେଷ୍ଟ କ୍ଷତି ସାଧନ କଲା ।

ଆସନ୍ତା ନିର୍ବାଚନରେ ଯେଉଁ ସରକାର ଆସୁନା କାହିଁକି ନିଜର ନିର୍ମଳ ଭାବମୂର୍ତ୍ତି ରକ୍ଷା କରିବାକୁ ଚେଷ୍ଟା କରିବା ସଙ୍ଗେ ସଙ୍ଗେ କେତେକ ଜନ ହିତକାରୀ ପଦକ୍ଷେପ ଗ୍ରହଣ କରିବାକୁ ବାଧ ହେବ । ଆଜିର ସମୟରେ ସମଗ୍ର ଭାରତର ଜନସାଧାରଣଙ୍କୁ ଆପ୍‌ର ସଚେତନତା ଅଭିଯାନ ଅଭିନନ୍ଦନୀୟ ।

(ଅନୁପମଭାରତ)

# ଲୋକଙ୍କ ସେବାରେ ଓଡ଼ିଶା ଶାସନ-୧- ତହସିଲ୍

ଆମର ଲୋକପ୍ରିୟ ମୁଖ୍ୟମନ୍ତ୍ରୀଙ୍କ ପ୍ରଚାର ଯେ ଲୋକଙ୍କ ସେବାରେ ଶାସନ ବିନିଯୋଗ ହେଉଛି । ଗରିବ ଓଡ଼ିଆ ନବୀନବାବୁଙ୍କୁ ପୁଣିଥରେ ଓଡ଼ିଶାରେ ସେବା କରିବାକୁ / ଓଡ଼ିଶାକୁ ଶାସନ କରିବାକୁ ଅକୁଣ୍ଠିତ ଅଧିକାର ଦେଲେ । ଜନସାଧାରଣ ଓ ସରକାରଙ୍କ ଭିତରେ ସମ୍ପର୍କ ସ୍ଥାପନର ମାଧ୍ୟମ ହେଲା ତହସିଲ୍, ବ୍ଲକ, ଥାନା ଓ ସବରେଜିଷ୍ଟର ଅଫିସ୍ । ସେଇଠୁ ଆରମ୍ଭ ସୁଶାସନ ଅଥବା କୁଶାସନର ପରିଦୃଶ୍ୟ ଦେହଳୀ । ଆସନ୍ତୁ ଦେଖିବା ଖୋଦ୍ ରାଜଧାନୀର ତହସିଲ୍ ଅଫିସ୍ କେମିତି ଚାଲିଛି ।

'କ' ବାବୁ ଗୋଟିଏ ମୌଜାରେ ଲାଗି ଲାଗି ୨ଟି ପ୍ଲଟ୍ କିଣିଲେ । ଜମି ରେଜିଷ୍ଟ୍ରେସନବେଳେ ଆବଶ୍ୟକୀୟ ଫର୍ମରେ ଦସ୍ତଖତ ସହ ମ୍ୟୁଟେସନ ପାଇଁ ଫିସ୍ ଦାଖଲ କଲେ । ମାତ୍ର ମ୍ୟୁଟେସନ ସେଭଳି କେବେ ହୁଏକି ? ଯଦି ନ ହେବ ତେବେ କିଣାବିକାବେଳେ କ୍ରେତା ଫର୍ମ କିଣି ଫିସ୍ ଦାଖଲ କରିବ କାହିଁକି ? ନିୟମ ହେଉଛି ଜମି କିଣାବିକାର ୬ ମାସ ଭିତରେ ମନକୁମନ ମ୍ୟୁଟେସନ ହୋଇ ପଟ୍ଟା କ୍ରେତା ନାମରେ ସଂଶୋଧନ ହେବ । ସେଥିପାଇଁ ଉପଯୁକ୍ତ ଫର୍ମରେ ଦସ୍ତଖତ ସହ ଫିସ୍ ନିଆଯାଇଥାଏ । ଏହା କେବେ କାର୍ଯ୍ୟକାରୀ ହେବ ? ଜନସାଧାରଣଙ୍କୁ ମୁଖ୍ୟମନ୍ତ୍ରୀ ଓ ରାଜସ୍ୱମନ୍ତ୍ରୀ ଉତ୍ତର ଦିଅନ୍ତୁ । ଏଇଠୁ ଆରମ୍ଭ ହେଲା ତହସିଲରେ ହଜାର ହଜାର ଟଙ୍କା ଲାଞ୍ଚ ଦିଆନିଆର ବାଟ । ଶହେ ଦୁଇ ଶହଥର ଦଉଡିବାଠାରୁ ଶହେ ଦୁଇଶହ ଲାଞ୍ଚ ଦେଇ କାମ କରାଇଦେବାକୁ ଜନତା ବାଧ୍ୟ ହୁଏ ।

ତାପରେ 'କ' ବାବୁ ମ୍ୟୁଟେସନ ଓ କନଭର୍ସନ ଫର୍ମ ପୂରଣ କରି ଦାଖଲ କଲେ । ଯଥା ସମୟରେ ଶହ ଶହ ଟଙ୍କା ଦାଖଲ କଲେ । ତା ପଛରେ ଥିବା କାହାଣୀ ଏତିକିରେ ଥାଉ । ତାରିଖ ଧାର୍ଯ୍ୟ ହେଲାପରେ 'କ' ବାବୁ ହାଜିରା ଦେଲେ ନିର୍ଦ୍ଦିଷ୍ଟ ତାରିଖରେ । ସେଥିରୁ ଗୋଟିଏ କେଶ୍ ଫଇସଲା ହେଲା ଓ ଆଉ ଗୋଟିଏ ଅଜଣା କାରଣରୁ 'ଅବଜେକସନ' ହେଲା । ୪ ମାସ ପରେ ପଟ୍ଟାପାଇଁ ଯାଇ ସେ କଥା 'କ' ବାବୁ ଜାଣିଲେ ।

ସେତେବେଳକୁ ନୂଆ ନିୟମ ଲାଗୁ ହେଲାଣି । ପୁଣି ଟଙ୍କା ଦାଖଲ କଲେ । ଷ୍ଟାମ୍ପପେପରରେ ରେଜେଷ୍ଟ୍ରି କଲେ । କମ୍ପ୍ୟୁଟର ଡିଡ୍ ପାଇଁ ୨୦ ଟଙ୍କା ଦେଲେ ।

ତାପରେ ତହସିଲ୍‌ରେ କେଶ୍ ଫଇସଲା ହୋଇ ରେକର୍ଡ ରୁମକୁ ଗଲା ବୋଲି ଶୁଣିଲେ ଓ ବୁଝିଗଲେ ଡିସେମ୍ବର ୨୦୦୩ରେ ।

'କ' ବାବୁ ଫେବୃୟାରୀ ୨୦୦୪ରେ ରେକର୍ଡ ରୁମ୍‌ରେ ପଟ୍ଟାପାଇଁ ପହଞ୍ଚିଲେ । ସେଠାରେ କୁହାଗଲା ୨ ମାସ ଛାଡି ଆସ । ପୁଣି 'କ' ବାବୁ ଏପ୍ରିଲ୍ ମାସରେ ଗଲେ । ସେତେବେଳେ କୁହାଗଲା ଏବେ ଇଲେକସନ ବେଳ, ପରେ ଆସନ୍ତୁ । ଜୁନ୍ ମାସରେ 'କ' ବାବୁ ସ୍ଲିପଟିଏ ଦେବାକୁ କୁହାଗଲା ତହସିଲ୍‌ରୁ କେଶ୍ ଆସିନାହିଁ । 'କ' ବାବୁ ପୁଣି ଗଲେ ତହସିଲ୍ ଡେସପାଚକୁ । ସେଠାରେ ରେକର୍ଡ ରୁମ୍‌କୁ କେଶ ଦସ୍ତଖତ କରି ଆଣିଥିବା ତାରିଖ ସହିତ ଲେଖି ଦେଖାଇଲେ । ତାପରେ କୁହାଗଲା-ତୁମର କରେକସନ ହୋଇଛି । ସାର୍ଟିଫାଏଡ କପି ପାଇଁ ଆପ୍ଲାଏ କର । କାରଣ ପଟ୍ଟା ଲେଖିବାକୁ କାଗଜ ତୁମେ ଦେଲ ନାହିଁ ।

'କ' ବାବୁ - ପଟ୍ଟା କାଗଜ କେଉଁଠି ମିଳେ ?

ତହସିଲ୍ ଷ୍ଟାଫ- ଆମ ଅଫିସରେ ମିଳେ । ଆପଣ କିଣିକି ଦେବେ ।

'କ' ବାବୁ - ମୁଁ ତ ୨/୩ ଥର ଆସି ଫେରିଲି । ଆଜି କିଣିଦେଲେ ହେବନାହିଁ ।

ତହସିଲ୍ ଷ୍ଟାଫ-ନା ହେବ ନାହିଁ । ଆପଣ ବରାବର ଆସି ଖବର ନେବେ । ଆପଣ ଥରେ ଦି'ଥର ଆସିଲେ ଚଳିବ ? ଇଏ ହେଲା ଆପଣଙ୍କ କାମ ।

ଏଇଭଳି ତହସିଲ୍ ସବୁ ଚାଲିଛି । ତେବେ ଶାସନ ଲୋକାଭିମୁଖୀ ହେଉଛି ନା ରାତି ପାହିଲେ ତହସିଲ୍ ଦୁଆରେ ଧାରଣା ଦେବାକୁ ଲୋକଙ୍କୁ ପ୍ରବର୍ତ୍ତାଯାଉଛି ।

ମାନ୍ୟବର ମୁଖ୍ୟମନ୍ତ୍ରୀ ଓ ରାଜସ୍ୱମନ୍ତ୍ରୀ ବୁଝିବେ କି ଜନସାଧାରଣ ତହସିଲ୍ କର୍ମଚାରୀମାନଙ୍କ ଦ୍ୱାରା କିଭଳି ଅତ୍ୟାଚାରିତ ତଥା ଲାଞ୍ଛିତ ହେଉଛନ୍ତି ?

ଏହାର ପ୍ରତିକାର ହେଲା-ଟଙ୍କା ଦିଅ । ସବୁ କାମ ହେବ । ନ ହେଲେ ଭୂଆଁ ବୁଲୁଥା । ଦଶଟଙ୍କା ଜାଗାରେ ଶହେଟଙ୍କା ଖର୍ଚ୍ଚ କର । ଥରେ ଜାଗାରେ ଶହେଥର ଆସ । ତେବେ ବି କାମ ହେବାର ଗ୍ୟାରେଣ୍ଟି ନାହିଁ ।

ଇଏ ହେଲା ଆମ ଲୋକାଭିମୁଖୀ ଶାସନର ଗୋଟିଏ ନମୁନା । ପ୍ରତିଦିନ ଏହିଭଳି ଆମ ରାଜ୍ୟରେ ଲକ୍ଷ ଲକ୍ଷ 'କ' ବାବୁ ନୟାନ୍ତ ହେଉଛନ୍ତି । ଏହାର ନିରାକରଣ ହେବ କେମିତି, ସରକାର ବିଚାର କରନ୍ତୁ ଓ ଜନତାଙ୍କୁ ଜଣାନ୍ତୁ ।

- ସାହାଣମେଳା (୧୬.୮.୨୦୦୪)

# ଶେଷର ଆରମ୍ଭ

ନିକଟରେ ଶେଷ ହୋଇଥିବା ୫ଟି ରାଜ୍ୟର ନିର୍ବାଚନ ଫଳାଫଳ ଦେଶକୁ ସଠିକ୍ ଦିଗରେ ଆଗେଇନେବାକୁ ନିର୍ଦ୍ଦେଶ ଦେଇଛି । କେତେକ ତୋଷାମଦିଆ ପତ୍ରିକା ଅଶୋକ ଘେଲଟଙ୍କୁ ଭାରତର ରାଜ୍ୟମାନଙ୍କର ସର୍ବଶ୍ରେଷ୍ଠ ମୁଖ୍ୟମନ୍ତ୍ରୀ ଭାବେ ଚିତ୍ରଣ କରିଥିବାବେଳେ ମୁଖ୍ୟ ବିରୋଧୀ ଦଳ ବିଜେପି ସେଠାର ସର୍ବକାଳୀନ ସର୍ବାଧିକ ଭୋଟରେ ଜୟଯୁକ୍ତ ହୋଇଛି । ବସୁନ୍ଧରା ରାଜେ ସିନ୍ଧିଆଙ୍କ ବିରୁଦ୍ଧରେ କଂଗ୍ରେସ ଶେଷ ମୁହୂର୍ତ୍ତରେ ବାଛିଥିବା ରମା ପାଇଲଟଙ୍କ ସ୍ଥିତି ଦୟନୀୟ ହୋଇଛି । ଏହାର କାରଣ ସ୍ୱରୂପ ମୁଖ୍ୟମନ୍ତ୍ରୀ ଖୁବ୍ ପାରିବାର ମାତ୍ର ବିଧାୟକମାନେ ନିକମା ବୋଲି ଦିଆଯାଇଥିବା କୈଫିୟତ୍ ମଧ୍ୟ ହାସ୍ୟାସ୍ପଦ । ଦଳର ବିଧାୟକମାନେ ନିକମା ହେଲେ ତାଙ୍କୁ ଠିକ୍ ବାଟରେ ପରିଚାଳନା କରି ନପାରୁଥିବା ମୁଖ୍ୟମନ୍ତ୍ରୀଙ୍କୁ ପାରିବାର ବୋଲି କହିବା ଏକ ଶୂନ୍ୟାର୍ଥବୋଧକ ଅଳଙ୍କାର ନୁହେଁ କି ? ତଥାପି ଜଣାଯାଏ ଯେ ଅଶୋକ ଘେଲଟ ଜଣେ ଉତ୍ତମ, ଚରିତ୍ରବାନ ତଥା ହୃଦୟବାନ ବ୍ୟକ୍ତି ଥିଲେ ।

ମଧ୍ୟପ୍ରଦେଶରେ ଦିଗବିଜୟ ସିଂଙ୍କର ସମସ୍ତ କୌଶଳ ଏଥର ପାଣି ଫାଟିଗଲା । ହିନ୍ଦୁ ଭୋଟ ଅକ୍ତିଆର କରିବାକୁ ଦିଗବିଜୟ ବହୁତ ଗୁଡିଏ ପଦକ୍ଷେପ ଗ୍ରହଣ କରିଥିଲେ ହେଁ ତାଙ୍କର ଚାଲ୍‌କୁ ଜନସାଧାରଣ ବୁଝି ପାରିଥିଲେ । ରାଜକୋଷକୁ ଶୂନ୍ୟ କରି ଦିଗ୍‌ବିଜୟ ବିପୁଳ ପାଣ୍ଠି ଠୁଳ କରିବାକୁ ତାଙ୍କର ମନ୍ତ୍ରୀ ଓ ସହକର୍ମୀମାନଙ୍କୁ ସୁଯୋଗ ଦେଇଥିଲେ । ରାଜ୍ୟର ଉନ୍ନତି ପ୍ରତି ଦୃଷ୍ଟି ଦେଇନଥିଲେ । ତେଣୁ ଉମାଭାରତୀଙ୍କ ସହିତ ସଂଗ୍ରାମରେ ସେ ଧରାଶାୟୀ ହେଲେ । ଉମାଙ୍କୁ ବିଜେପି ଦଳ ସମେତ ଦଳିତ ସମ୍ପ୍ରଦାୟର ନେତ୍ରୀ ହିସାବରେ ରାଜ୍ୟବ୍ୟାପି ବିପୁଳ ସମର୍ଥନ ମିଳିଲା । ତାଙ୍କର ଜ୍ୱାଳାମୟୀ ଭାଷଣ ସହିତ ନିତାନ୍ତ ସରଳ ଜୀବନ ଯାପନ ପ୍ରଣାଳୀ ତାଙ୍କର ଭାବମୂର୍ତ୍ତିକୁ ଜନତା ସମ୍ମୁଖରେ ଉନ୍ନତ କରିପାରିଥିଲା ।

ପୂର୍ବୋତ୍ତର ରାଜ୍ୟ ମିଜୋରାମରେ ଏନ.ଡି.ଏ ସମର୍ଥିତ ଏମ.ଏନ.ଏଫ, ପୁନର୍ବାର ସଂଖ୍ୟାଗରିଷ୍ଠତା ଲାଭ କରି ମନ୍ତ୍ରୀମଣ୍ଡଳ ଗଠନ କଲା ।

ଦିଲ୍ଲୀରେ ଏହି ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢ଼ିଲା । ଏହା କଂଗ୍ରେସର ଯେତିକି ନୁହେଁ ଶିଳା ଦୀକ୍ଷିତଙ୍କର ନିର୍ମଳ ଏବଂ ସହାନୁଭୂତିଶୀଳ ଶାସନର ପରିଣାମ । ତେଣୁ ଅନ୍ୟ କଂଗ୍ରେସ ଶାସିତ ରାଜ୍ୟ ମାନଙ୍କରେ ଯେ ଆଣ୍ଟି ଇନକମ୍ବେନସି ଫ୍ୟାକ୍ଟର କାମ କରିନାହିଁ, ତାହା ସାବ୍ୟସ୍ତ ହୋଇଗଲା ।

ସବୁଠାରୁ ଜଟିଳ ପରିସ୍ଥିତି ସୃଷ୍ଟି ହେଲା ଅଜିତ୍ ଯୋଗୀଙ୍କୁ ନେଇ । ପୂର୍ବ ଆଲୋଚନାରେ ଏହି ସ୍ତମ୍ଭରେ ମୁଁ ଲେଖିଥିଲି ଯେ ଯୋଗୀ ଗୋଟିଏ ନିରୀହ ଚେହେରା ତଳେ ସବୁଠାରୁ ଧୂର୍ତ୍ତ କଂଗ୍ରେସୀ ମୁଖ୍ୟମନ୍ତ୍ରୀ । ଯୋଗୀ ଦୁଇଜଣ କଲେକ୍ଟରଙ୍କୁ ଦଳୀୟ କର୍ମୀ ଭଳି ଉପଯୋଗ କରୁଥିବାର ଅଭିଯୋଗରେ ନିର୍ବାଚନ କମିଶନର ସେମାନଙ୍କୁ ବଦଳି କରିବାକୁ ଲେଖିଲେ । ମାତ୍ର ଯୋଗୀ ସେ ପରାମର୍ଶକୁ ବେଖାତିର କରି ବଦଳି କଲେନାହିଁ । ବରଂ ସେ ଦୁଇଜଣଙ୍କୁ ଟ୍ରିବ୍ୟୁନାଲ୍‌ରୁ ଷ୍ଟେ ଆଦେଶ ଆଣିବାକୁ ସୁଯୋଗ ଦେଲେ ଏବଂ ନିର୍ବାଚନ କମିଶନଙ୍କୁ ସେମାନଙ୍କର କିଛି ଦୋଷ ନଥିବାର ଲେଖିଦେଲେ । କ୍ଷୁବ୍ଧ ନିର୍ବାଚନ କମିଶନ ଅବଶେଷରେ କଂଗ୍ରେସ ସଭାପତିଙ୍କୁ ପତ୍ର ଲେଖି ଦଳର ସ୍ୱୀକୃତି କାହିଁକି ପ୍ରତ୍ୟାହାର କରାନଯିବ କାରଣ ଦର୍ଶାଇବାକୁ ନୋଟିସ୍ ଦେବାରୁ ଯୋଗୀ ସେମାନଙ୍କୁ ବଦଳି କଲେ ।

କେବଳ ସେତିକି ନୁହେଁ, ଯୋଗୀ ବିଭିନ୍ନ ଫୌଜଦାରୀ ଦଫାରେ ଅଭିଯୁକ୍ତ ହୋଇ କୋର୍ଟରୁ ସମନ୍ ପାଉଥିଲେ ମଧ୍ୟ ମୁଖ୍ୟମନ୍ତ୍ରୀତ୍ୱ ତ୍ୟାଗ ନକରି ଗଣତନ୍ତ୍ରରେ ନୂଆ ପରମ୍ପରା ସୃଷ୍ଟି କଲେ । ଅଜିତ୍ ଯୋଗୀଙ୍କର ସବୁଠାରୁ ସାଂଘାତିକ ଅପରାଧ ଏବେ ପଦାକୁ ଆସିଲା । ସେ ଜଣେ ବିଜେପି ସାଂସଦଙ୍କୁ (ବଳିରାମ କାଶ୍ୟପ) ୪୫ ଲକ୍ଷ ଟଙ୍କା ଲାଞ୍ଚ ଦେଇ ବିଜେପି ଦଳରେ ବିଭାଜନ ଘଟାଇ କ୍ଷମତାରେ ରହିବାକୁ ଚକ୍ରାନ୍ତ କରିଥିଲେ । ସମସ୍ତ ଲାଜ ସମ୍ମାନକୁ ବଳିଦେଇ ରାଜ୍ୟପାଳଙ୍କୁ ସେହି ମର୍ମରେ ଚିଠି ମଧ୍ୟ ଲେଖିଥିଲେ । ତାଙ୍କର ସେହି ସମସ୍ତ କୁକର୍ମକୁ କେନ୍ଦ୍ରର ଆଇନମନ୍ତ୍ରୀ ପଦାରେ ପକାଇଦେଲେ । ତାଙ୍କର କଥାବାର୍ତ୍ତାର ଟେପ ସହିତ ଚିଠିର ନକଲ ପ୍ରଘଟ ହେବାବେଳକୁ ଯୋଗୀ ମୁଖ୍ୟମନ୍ତ୍ରୀ ରହିବାର ଯୋଗ୍ୟତା ହରାଇ ସାରିଥିଲେ । ଛତିଶଗଡରେ କଂଗ୍ରେସ ହାରି ସାରିଥିଲା । ତାପରେ ତାଙ୍କୁ କଂଗ୍ରେସ ଦଳରୁ ନିଲମ୍ବିତ କରାଯାଇଛି ।

ଦଳର ଉର୍ଦ୍ଧ୍ୱରେ ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀଙ୍କ ନୀତି, ଆଦର୍ଶ ଓ ଲୋକପ୍ରିୟତା ପ୍ରତି ଭାରତର ଜନସାଧାରଣଙ୍କର ଅକୁଣ୍ଠ ସମର୍ଥନର ଏହା ଏକ ନମୁନା । ଯେ କୌଣସି ପରିସ୍ଥିତିରେ ଦେଶ ପ୍ରଥମ ଏବଂ ତାପରେ ଦଳ ବା ଯାହା କିଛି ।

ବିଗତ ୫୦ ବର୍ଷ ଭିତରେ କଂଗ୍ରେସ କେବଳ ଦଳ ଓ ଦଳର ବ୍ୟକ୍ତି ବିଶେଷଙ୍କ ସ୍ୱାର୍ଥ ପାଇଁ ଦେଶ ଓ ଦେଶର ଜନତାଙ୍କୁ ଭାଗ ଭାଗ କରିଛି । ବର୍ତ୍ତମାନ ସେହି କଂଗ୍ରେସ ଭେଳାଟି ଖଣ୍ଡ ବିଖଣ୍ଡିତ ହେବାକୁ ଆରମ୍ଭ କରିଛି ।

ବେଳହୁଁ ସାବଧାନ ନ ହେଲେ ଏହାକୁ କଂଗ୍ରେସ ଦଳର ଶେଷର ଆରମ୍ଭ ବୋଲି କୁହାଯାଇପାରେ ।

– ସାହାଣମେଳା (୧୫.୧.୨୦୦୪)

# ପ୍ରଧାନ ଓ ପ୍ରଧାନମନ୍ତ୍ରୀ

ଚତୁର୍ଦ୍ଦଶ ଲୋକସଭାପାଇଁ ଏଇ ନିକଟରେ ଭାରତରେ ନିର୍ବାଚନ ଶେଷ ହୋଇଛି । ତା ସହିତ କେତେକ ରାଜ୍ୟରେ ବିଧାନସଭା ପାଇଁ ନିର୍ବାଚନ ହୋଇଛି । ଏହାର ଫଳାଫଳରୁ ଖଣ୍ଡିତ ଜନାଦେଶ ମିଳିଥିବାର ଜଣାଯାଏ । ପୁଣି ଜନସାଧାରଣଙ୍କର ମନୋଭାବରୁ କୌଣସି ସ୍ୱଷ୍ଟଚିତ୍ର ମିଳିନଥିବାର ଜଣାଗଲା ।

ଏଥର କେନ୍ଦ୍ରରେ କଂଗ୍ରେସ ନେତୃତ୍ୱରେ ଏକ ମିଳିତ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ମିଳିତ ୧୪ଟି ଦଳ ଭିତରେ ସର୍ବବୃହତ୍ ଦଳରୂପେ କଂଗ୍ରେସ ସରକାର ଗଠନର ନେତୃତ୍ୱ ନେଲା । ମାତ୍ର ଅଳ୍ପ କେତୋଟି କ୍ଷୁଦ୍ର ଦଳକୁ ଛାଡିଦେଲେ ଅଧିକାଂଶ ଦଳ ନିର୍ବାଚନରେ ପରସ୍ପର ବିରୁଦ୍ଧରେ କୁତ୍ସାରଟନା କରିଛନ୍ତି, ଲଢ଼ିଛନ୍ତି । ତା ସତ୍ତ୍ୱେ ଗୋଟିଏ ସର୍ବନିମ୍ନ ଗ୍ରହଣଯୋଗ୍ୟ କାର୍ଯ୍ୟପନ୍ଥା ଉପରେ ସହମତିରେ ମନ୍ତ୍ରୀମଣ୍ଡଳ ଗଢ଼ାହେଲା । ଭାରତରେ କୌଣସି ଗୋଟିଏ ଦଳର ଶାସନ କରିବାର ସମୟ ଶେଷ ହୋଇଯାଇଛି । ଏଣିକି କେବଳ ମିଳିତ ସରକାର ଗଠନ ସମ୍ଭବ । ମାତ୍ର ରାଜ୍ୟମାନଙ୍କରେ କ୍ଷୁଦ୍ର ଦଳଗୁଡିକରେ ଶକ୍ତି ବୃଦ୍ଧି ଜାତୀୟ ରାଜନୀତି ପାଇଁ ସହାୟକ ନହୋଇ ବାଧକ ହେବାର ଦେଖାଯାଏ ।

କେନ୍ଦ୍ରରେ କଂଗ୍ରେସ ନେତୃତ୍ୱରେ ମନ୍ତ୍ରୀମଣ୍ଡଳ ଗଠିତ ହେଲେ ହେଁ କର୍ଣ୍ଣାଟକରେ ଲୋକେ କଂଗ୍ରେସକୁ ଚାହିଁଲେ ନାହିଁ । ସେଠାରେ ମିଳିତ ସରକାର ଗଠିତ ହେଲା । ଆନ୍ଧ୍ରରେ ଲୋକେ ଟି.ଡି.ପିକୁ ୯ ବର୍ଷ ସରକାରରେ ରହିବା ପରେ ହଟାଇଦେଲେ । ସେଠାରେ ବିସ୍ମୟକର ସଂଖ୍ୟାରେ କଂଗ୍ରେସ କ୍ଷମତାକୁ ଆସିଲା । ଓଡ଼ିଶାରେ କଂଗ୍ରେସର ସ୍ଥିତିରେ ପ୍ରାୟ ବିଶେଷ ପରିବର୍ତ୍ତନ ହେଲାନାହିଁ । ମାତ୍ର କେତୋଟି ବିଧାୟକ ଅଧିକ ଆସିଲେ ହେଁ ବିଜେଡି ବିଜେପିକୁ ଲୋକେ ପୁନରାୟ ନିର୍ବାଚିତ କରାଇଲେ ।

ମୋଟ ଉପରେ କଂଗ୍ରେସ ୨୦୦୦ ନିର୍ବାଚନଠାରୁ ମାତ୍ର ଅଳ୍ପ କେତୋଟି ସାଂସଦ ଅଧିକା ଆଣିପାରିବାବେଳେ ବିଜେପି ବେଶ୍ କେତୋଟି ସାଂସଦ ହରାଇଲା ।

ସବୁଠାରୁ ଲୋକସାନ ହେଲା ଟି.ଡ଼ିପି ଓ ତୃଣମୂଳ କଂଗ୍ରେସର । ସବୁଠାରୁ ଅଧିକ ଲାଭ ହେଲା ବାମପନ୍ଥୀ ଦଳ ଓ ଡି.ଏମ.କେ.ର ।

କେନ୍ଦ୍ରରେ ମନ୍ତ୍ରୀମଣ୍ଡଳ ଗଠନ ପରେ କେତେଗୁଡ଼ିଏ ଘଟଣା ପରିଷ୍କାର ହୋଇଗଲା । ଲାଲୁ ଯାଦବ ପରିଚାଳିତ ବିହାରର ସର୍ବାଧିକ ୧୧ ଜଣ ମନ୍ତ୍ରୀ ହୋଇଛନ୍ତି କେବଳ ଲାଲୁଙ୍କ ଜିଦ୍ ରକ୍ଷା ପାଇଁ । ସେତିକି ନୁହେଁ ସେ ମଧ୍ୟ କେନ୍ଦ୍ରକୁ ତାଙ୍କ ନିକଟରେ ନତଜାନୁ କରାଇ ରେଳବାଇ ବିଭାଗଟି ନେଇଛନ୍ତି । ତାଙ୍କ ଦଳର ୫ ଜଣ ମନ୍ତ୍ରୀଙ୍କର କ୍ରିମିନାଲ୍ ବ୍ୟାକ୍‌ଗ୍ରାଉଣ୍ଡ ଥିଲେ ମଧ୍ୟ ସଂଖ୍ୟା ଦୃଷ୍ଟିରୁ କଂଗ୍ରେସ ସେଠାରେ ଅସହାୟ । ତାପରେ ତାମିଲନାଡୁ ଭାଗ୍ୟରେ ଏକ ବୃହତ୍ ଭାଗ ପଡ଼ିଲା ।

ବହୁ ଆଡ ରୁଷା, ଭିଡା ଓଟରା ପରେ ଡିଏମ.କେ ମନ୍ତ୍ରୀମାନେ ଅଫିସ୍‌କୁ ଆସିଲେ । ଓଡ଼ିଶାରୁ କାହାରି ଭାଗରେ ମନ୍ତ୍ରୀତ୍ୱ ପଡିଲା ନାହିଁ । କଂଗ୍ରେସ ମନ୍ତ୍ରୀମଣ୍ଡଳରେ କେନ୍ଦ୍ରରେ ଓଡ଼ିଶା ପ୍ରତି ସର୍ବଦା ପାତର ଅନ୍ତର ଓ ଅନ୍ୟାୟ କରାଯିବା କିଛି ନୂଆକଥା ନୁହେଁ । ସବୁବେଳେ ପଡୋଶୀ ବିହାର, ପଶ୍ଚିମବଙ୍ଗ, ଉତ୍ତର ପ୍ରଦେଶ ଓ ମହାରାଷ୍ଟ୍ରରୁ ଅଧିକ ସଂଖ୍ୟାରେ ମନ୍ତ୍ରୀ ରହି ଆସିଛନ୍ତି । ସବୁ ଗୁରୁତ୍ୱପୂର୍ଣ୍ଣ ବିଭାଗ ମଧ୍ୟ ସେମାନଙ୍କର । ତଥାପି ପ୍ରତିବାଦ ନକରି, ଦୁଃଖ ପ୍ରକାଶ ନକରି କଂଗ୍ରେସ ଭବନରେ ବାଣଫୁଟାଗଲା, ଲଡୁ ବଣ୍ଟାଗଲା । ଧନ୍ୟରେ ଓଡ଼ିଆ ।

କମ୍ୟୁନିଷ୍ଟ ଦଳର ଚିନ୍ତା, ଚେତନା ଓ ସଂସ୍କୃତି ଭାରତୀୟ ନୁହେଁ । ସେମାନଙ୍କର ଦାବି ଓ ଜିଦକୁ ସମ୍ଭାଳି କେନ୍ଦ୍ର ମନ୍ତ୍ରୀମଣ୍ଡଳ କେତେକାଳ ସ୍ଥାୟୀ ହୋଇପାରିବ ତାହା ସମୟ କହିବ । କାରଣ ପ୍ରଧାନମନ୍ତ୍ରୀ ଡଃ. ମନମୋହନ ସିଂହ ଜଣେ ବିଦ୍ୱାନ, ଗୁଣୀ ତଥା ପ୍ରଖ୍ୟାତ ଅର୍ଥନୀତିଜ୍ଞ । ଉଦାରିକରଣ ଏବଂ ମୁକ୍ତ ଅର୍ଥନୀତି ତାଙ୍କର ଗୃହୀତ ଓ ଆଦୃତ ପନ୍ଥା । ଅପରନ୍ତୁ କମ୍ୟୁନିଷ୍ଟମାନେ ଉଦାରିକରଣର ଘୋର ବିରୋଧୀ । ଆଦର୍ଶବାଦର ବିରୋଧ ଦେଇ ଶାସନରେ ଟଣା ଓଟରା ଲାଗିରହିବା ସ୍ୱାଭାବିକ । ତାଛଡା ସମସ୍ତ କ୍ଷମତାର ଡୋର ବର୍ତ୍ତମାନ ସୋନିଆ ଗାନ୍ଧିଙ୍କ ପାଖରେ । ତେଣୁ ବହୁ ଦିଗରୁ ସୀମିତ ସୁଯୋଗ ଲାଭ କରୁଥିବା ନୂତନ ପ୍ରଧାନମନ୍ତ୍ରୀଙ୍କ ପାଇଁ ଆଗକୁ ଯେ ବହୁ ବନ୍ଧୁର ପଥ ଅତିକ୍ରମ କରିବାକୁ ପଡିବ ସେଥିରେ ସନ୍ଦେହ ନାହିଁ । କ୍ଷମତା ଦୃଷ୍ଟିରୁ ବର୍ତ୍ତମାନ ଜଣେ ପ୍ରଧାନ ଓ ଆଉ ଜଣେ ପ୍ରଧାନମନ୍ତ୍ରୀ । ଗୋଟିଏ ଦଳ ପ୍ରଧାନ ଓ ଆଉ ଗୋଟିଏ ଦଳର ପ୍ରଧାନମନ୍ତ୍ରୀ ।

- ସାହାଣମେଳା (୧.୬.୨୦୦୪)

## ଲେଖକଙ୍କର ଅନ୍ୟାନ୍ୟ କୃତି

**କାବ୍ୟ / କବିତା**
- ଯୋଜନାଗନ୍ଧା
- ପାଷାଣ କାବ୍ୟ
- ଘାସ ଫୁଲ
- ତମସା ତୀର୍ଥ
- ଗୋଧନ ହରଣ
- ମୁକ୍ତି ଯଜ୍ଞ

**କଥାକୃତି**
- ଆଉ ଏକ ବାଲ୍ମୀକି
- ଭିନ୍ନ ଏକ ପର୍ଶୁରାମ
- ବର୍ଣ୍ଣବିଭା
- ବର୍ଗବନ୍ଧନୀ

**ପ୍ରସଙ୍ଗ**
- ପୁନର୍ଜନ୍ମ ରହସ୍ୟ

**ବ୍ୟଙ୍ଗ ରଚନା**
- ରଙ୍ଗଲତା ଉବାଚ
- ଗୋବର ଗବେଷଣା
- ବେଙ୍ଗ ରଚନା
- ହସୁଆଳ ଜନ୍ତୁ
- ନବରନ୍ ସ୍ପେଶାଲ
- ଦାସେ ଯାଇଥିଲେ ଫାଣ୍ଡିକି (ବ୍ୟଙ୍ଗ କବିତା ସଂକଳନ)
- ସିଙ୍ଗଡ଼ା ବାବା ଓ ଅନ୍ୟାନ୍ୟ ଗଳ୍ପ

**ଶିଶୁ ସାହିତ୍ୟ**
- ପିଲାଙ୍କ ଗୋଦାବରୀଶ
- ଓଡ଼ିଶାର ପର୍ବପର୍ବାଣି
- ଭାରତର ପର୍ବପର୍ବାଣି
- ଓଡ଼ିଶାର ଗୌରବ ଗୋଦାବରୀଶ
- ଭୀମପୁରର ଭୀମ-କବି କୃଷ୍ଣଚନ୍ଦ୍ର ତ୍ରିପାଠ

**ଅନୁବାଦ**
- ଜାତିସ୍ମର କଥା
- ସମ୍ରାଟ ଓ ସୁନ୍ଦରୀ
- ଅନୁରାଗିଣୀ
- କାଳିନ୍ଦୀ
- ଅଷ୍ଟାଦଶୀ

**ଭ୍ରମଣ କାହାଣୀ**
- ବିଦେଶ ଭ୍ରମଣ

**ସଂପାଦନା**
- ସରସ ଗଳ୍ପ
- ସମକାଳୀନ ଶ୍ରେଷ୍ଠଗଳ୍ପ
- ସିଲେକ୍ଟ ଷ୍ଟୋରିଜ୍ ଫ୍ରମ୍ ଓଡ଼ିଶା
- ଆଜିର ନିର୍ବାଚିତ ଗଳ୍ପମାଳା
- ଚୁନୀହୁଇ ଓଡ଼ିଆ କହାନୀୟାଁ

ଶଙ୍କର୍ଷଣ ପଣ୍ଡା

୨୦, ଲୁଇସ୍ ରୋଡ଼, ରବିଟକିଜ୍ ସ୍କୋୟାର, ଭୁବନେଶ୍ୱର-୧୪

ଫୋନ୍ : ୦୬୭୪-୨୪୩୧୮୧୯, ୯୪୩୭୩୮୯୦୭୦

ପିତା : ୰ ସୁଦାମ ପଣ୍ଡା

ମାତା : ୰ ମଲ୍ଲୀ ଦେବୀ

ଜନ୍ମସ୍ଥାନ : ଅରଙ୍ଗବାଦ୍ (ବରୀ) ଯାଜପୁର

ଜନ୍ମ : ୩୧-୧-୧୯୪୦

ଶିକ୍ଷା : ବି.କମ୍, ଏମ୍.ଏ. (ଓଡ଼ିଆ)

ପଢ଼ିବା, ଲେଖିବା, ଦେଶ ବିଦେଶ ଭ୍ରମଣ କରିବା, ନୂଆନୂଆ ବନ୍ଧୁ ସୃଷ୍ଟି କରି ମାତୃଭାଷାର ପ୍ରଚ୍ଚର ଓ ପ୍ରସାର ନିମନ୍ତେ ପ୍ରଯତ୍ନ କରିବାରେ ଶ୍ରୀ ପଣ୍ଡାଙ୍କର ବିଶେଷ ରୁଚି । ସେ ଏକାଧାରରେ ଜଣେ କବି, ଗାଳ୍ପିକ, ବ୍ୟଙ୍ଗ ରଚନା ପଟୁ, ସ୍ତମ୍ଭକାର, ଅନୁବାଦକ ଓ ଶିଶୁସାହିତ୍ୟକ । ଏ ପର୍ଯ୍ୟନ୍ତ ତାଙ୍କର ୩୬ଟି ଗ୍ରନ୍ଥ ପ୍ରକାଶିତ ଏବଂ ବହୁ ଗ୍ରନ୍ଥ ପ୍ରକାଶନ ପ୍ରତୀକ୍ଷାରେ ରହିଛି । ବିଭିନ୍ନ ସ୍ଥାନ ଭ୍ରମଣ ଉଦ୍ଦେଶ୍ୟରେ ସେ ପ୍ରାୟ ସମଗ୍ର ଓଡ଼ିଶା, ପ୍ରାୟ ସମଗ୍ର ଭାରତ ସମେତ ବିଦେଶ ଭ୍ରମଣ ଅଭିଜ୍ଞତାକୁ ନେଇ 'ବିଦେଶ ଭ୍ରମଣ' ଗ୍ରନ୍ଥଟି ନିକଟରେ ପ୍ରକାଶିତ ହୋଇଛି ।

ସେ ମଧ୍ୟ 'ଚିରସମର୍ଥା' ସାହିତ୍ୟ ପତ୍ରିକାର ପ୍ରତିଷ୍ଠାତା ସମ୍ପାଦକ ଯାହାକି ୨୦୦୦ ମସିହାରୁ ଅଦ୍ୟାବଧି ନିରବଚ୍ଛିନ୍ନ ଭାବରେ ପ୍ରକାଶିତ ହୋଇ ଆସୁଛି ।

'ଶ୍ରୀ ଅବଧୂତ' ଛଦ୍ମ ନାମରେ 'ନିତ୍ୟନୂତନ' ପୃଷ୍ଠାରେ ଶ୍ରୀ ପଣ୍ଡାଙ୍କର ପ୍ରଚଳିତ ରାଜନୀତି ଓ ସାମାଜିକ ବ୍ୟବସ୍ଥା ଉପରେ ଶାଣିତ ଉପସ୍ଥାପନା ବିଶେଷ ପ୍ରଣିଧାନ ଯୋଗ୍ୟ ।

ସମୁଦ୍ରକୂଳ 'ପେଣ୍ଠ'ରେ
ଧର୍ମପତ୍ନୀଙ୍କ ସହିତ ଲେଖକ-୧୨.୩.୨୦୧୯